# ଆଧୁନିକ କବିତାର ଦିଗ୍‌ଦର୍ଶନ

ଶ୍ରୀ ଅପୂର୍ବ ରଂଜନ ରାୟ



# ଆଧୁନିକ କବିତାର ଦିଗ୍‌ଦର୍ଶନ

ସମ୍ପାଦନା
ଶ୍ରୀ ଅପୂର୍ବ ରଂଜନ ରାୟ

ଉଦୟ ଗୋଷ୍ଠୀ ଭଦ୍ରକ

# ଆଧୁନିକ କବିତାର ଦିଗ୍‌ଦର୍ଶନ

ସମ୍ପାଦନା
ଶ୍ରୀ ଅପୂର୍ବ ରଂଜନ ରାୟ

ପ୍ରଚ୍ଛଦ ଅଙ୍କନ
ଶ୍ରୀ ଅସୀତ ମୁଖାର୍ଜୀ

ପ୍ରଥମ ପ୍ରକାଶ : ୧୯୭୨

ପ୍ରକାଶନା
ସୁଖଦେବ ପ୍ରଧାନ
ଫ୍ରେଣ୍ଡ୍‌ସ ପବ୍ଲିଶର୍ସ
ବିନୋଦବିହାରୀ, କଟକ-୨

ମୁଦ୍ରଣ
ବ୍ରଜେନ୍ଦ୍ର ପ୍ରେସ
କଟକ-୧

Rs 10.00

# ଦିଗ୍‌ଦର୍ଶନ ଓ ଦିଗ୍‌ଦ[illegible]



●

# କୈଫିୟତ୍

ସାଂପ୍ରତିକ କବିତାର ସ୍ୱରୂପ ଉଦ୍‌ଘାଟନ କରି ସାହିତ୍ୟାନୁରାଗୀମାନଙ୍କୁ ତା'ର ଆଭିମୁଖ୍ୟ ଓ ଗତିପଥ ସମ୍ପର୍କରେ ଦିଗ୍‌ଦର୍ଶନ ଦେବା ପାଇଁ ଏହି ପୁସ୍ତକଟି ସମ୍ପାଦିତ ହୋଇଛି । ମୁଁ ଜାଣେନା, ସେହି ମହତ୍ ଉଦ୍ଦେଶ୍ୟ ସାଧନରେ ଏହି ପଦକ୍ଷେପ କେତେଦୂର ସଫଳ ହୋଇପାରିଛି । ତେବେ ସାଂପ୍ରତିକ କବିତା ସମ୍ପର୍କରେ ମାର୍ଜିତ ଓ ଉନ୍ନତ ଧାରଣ ଦେବା ଦିଗରେ ଚେତନଶୀଳ ସାହିତ୍ୟପ୍ରେମୀମାନଙ୍କୁ ଏହି ଆଲୋଚନା ଗ୍ରନ୍ଥଟି ଯଥେଷ୍ଟ ସହାୟତା କରି ପାରିବ ବୋଲି ମୋର ଆଶା ଓ ବିଶ୍ୱାସ ।

ଏହି ସଂକଳନ ସମ୍ପାଦନାରେ ଯେଉଁ ସହୃଦୟ ଆଲୋଚକମାନେ ମୋର ଅନୁରୋଧକ୍ରମେ ସେମାନଙ୍କ ସ୍ୱରଚିତ ଆଲୋଚନାମାନ ପ୍ରକାଶ କରିବାକୁ ଅନୁମତି ଦେଇ ସାହାଯ୍ୟ କରିଛନ୍ତି, ସେମାନଙ୍କ ମହାନୁଭବତା ନିକଟରେ ସାହିତ୍ୟାନୁଷ୍ଠାନ 'ଉଦୟଗୋଷ୍ଠୀ' ତରଫରୁ ମୁଁ କୃତଜ୍ଞତା ଜଣାଉଛି ।

ଏହି ପୁସ୍ତକ ସମ୍ପାଦନାର ଅନ୍ତରାଳରେ ଯେଉଁ କବି, ଆଲୋଚକ ଓ ସାହିତ୍ୟପ୍ରେମୀମାନଙ୍କର ଶୁଭେଚ୍ଛା ମୋତେ ପ୍ରେରଣା ଦେଇଛି, ସେମାନଙ୍କ ଉତ୍ସାହ ପ୍ରଦାନ ମୋର ଚିରଦିନ ସ୍ମରଣୀୟ ହୋଇ ରହିବ । ଫ୍ରେଣ୍ଡସ୍ ପବ୍ଲିଶର୍ସର ସ୍ୱତ୍ୱାଧିକାରୀ ଏହି ପୁସ୍ତକଟିର ପ୍ରକାଶ ଦାୟିତ୍ୱ ବହନ କରିଥିବାରୁ ତାଙ୍କୁ ମୋର ହାର୍ଦ୍ଦିକ ଧନ୍ୟବାଦ ଦେଉଛି ।

ଆମ ଓଡ଼ିଆ ସାହିତ୍ୟରେ ସାଂପ୍ରତିକ କବିତା ସଂପର୍କୀୟ ଉପାଦେୟ ଆଲୋଚନା ପୁସ୍ତକ ନାହିଁ । ଏ କ୍ଷେତ୍ରରେ, ଏହି ଆଲୋଚନା ଗ୍ରନ୍ଥଟି ସେହି ଅଭାବ ପୂରଣ ଦିଗରେ କିଞ୍ଚିତ୍ ସହାୟକ ହେଲେ ଆୟୋଜନ ସାର୍ଥକ ହେବ ।

ଏହି ପୁସ୍ତକର ପରବର୍ତ୍ତୀ ସଂସ୍କରଣ ପାଇଁ ସାହିତ୍ୟପ୍ରେମୀମାନଙ୍କ ଠାରୁ ସମାଲୋଚନାଜନିତ ଉପଯୁକ୍ତ ଉପଦେଶକୁ ଅପେକ୍ଷା କରି ରହିଲି ।

ଭଦ୍ରକ
୧୫ ଅଗଷ୍ଟ ୧୯୭୨

# ଦିଗ୍ ଦର୍ଶକ

ସୌରୀଂଦ୍ର ବାରିକ
ଚିତ୍ତ ରଂଜନ ଦାସ
ସୀତାକାଂତ ମହାପାତ୍ର

କ୍ଷମୀଂଦ୍ର ବର୍ମା
ନୀଳାଦ୍ରି ଭୂଷଣ ହରିଚଂଦନ
ଦାଶରଥି ଦାସ

ବେଣୁଧର ରାଉତ
ନରେଂଦ୍ର ନାଥ ମିଶ୍ର
କେଶବ ଚଂଦ୍ର ମେହେର

ପରେଶ ଚଂଦ୍ର ରାଉତ
ବିବେକାନଂଦ ଜେନା
କମଳାକାଂତ ଲେଂକା

ଅପୂର୍ବ ରଂଜନ ରାୟ

# ଆଧୁନିକତା ଓ ଆଧୁନିକ ଚେତନା

( ଏକ ).

'ଆଧୁନିକ' ଶବ୍ଦଟି ବ୍ୟବହାର କଲାବେଳକୁ ସ୍ୱତଃ ସ୍ୱତଃ ଆଉ ଦୁଇଟି ଶବ୍ଦ ମନକୁ ଆସେ । ସେ ଦୁଇଟି ହେଲା—'ସାଂପ୍ରତିକ' ଏବଂ 'ନୂତନ' । ନୂତନ ହେଉଛି ଯାହା'ର ଅତୀତ ସହ କିଛି ସମ୍ପର୍କ ନାହିଁ । ଅତୀତରୁ ଉଦାହରଣ ଦେଇ ଯା'ର ବର୍ଣ୍ଣନା କରାଯାଇପାରେ ନା । ଏକ ସମୟ-ଖଣ୍ଡରେ ସେ ନିଜେ ହିଁ ନିଜର ଉଦାହରଣ । ତେଣୁ 'ନୂତନ' ସହିତ କେମିତି 'ସ୍ୱାତନ୍ତ୍ର୍ୟ'ର ସମ୍ପର୍କ ଟିକିଏ ବେଶୀ ଏବଂ ତାର ମୂଲ୍ୟାଙ୍କ କେବଳ ବର୍ତ୍ତମାନର ପରିପ୍ରେକ୍ଷୀରେ ହିଁ ସମ୍ଭବ, ସେମିତି 'ସାଂପ୍ରତିକ' ମଧ୍ୟ ବର୍ତ୍ତମାନ ସହ ସମ୍ପୃକ୍ତ । ମାତ୍ର ଏହା ସହିତ 'ସ୍ୱାତନ୍ତ୍ର୍ୟ' ଏତେ ବେଶୀ ଜଡ଼ିତ ନୁହେଁ । ସାଂପ୍ରତିକ ଅର୍ଥାତ୍ ସମସାମୟିକ ସମୟର ବର୍ତ୍ତମାନତାରେ ଆବଦ୍ଧ । ଯଦିଓ ବର୍ତ୍ତମାନ ଦ୍ୱାରା ଏହା ପ୍ରଭାବିତ; ତଥାପି ଅତୀତଠାରୁ ଏହା ସମ୍ପୂର୍ଣ୍ଣ ବିଚ୍ୟୁତ ନୁହେଁ । ଅର୍ଥାତ୍ 'ସାଂପ୍ରତିକ' ଅତୀତର ପୁନରାବୃତ୍ତି ହୋଇପାରେ, ପୁଣି ନୂତନର ସ୍ୱୀକୃତି ବି ହୋଇପାରେ; ତେଣୁ ସାଂପ୍ରତିକ ସବୁବେଳେ ନୂତନ ନୁହେଁ । ସାଂପ୍ରତିକ କହିଲେ ଆମେ ତେଣୁ ବୁଝୁ ଏକ ନିର୍ଦ୍ଦିଷ୍ଟ ସମୟ-ଖଣ୍ଡର ଅନ୍ତର୍ନିହିତ ସ୍ୱର, ପୁଣି ନୂତନ କହିଲେ ବୁଝୁ ସେଇ ସମୟ-ଖଣ୍ଡରେ କୌଣସି ଆଖିଝଲସିଆ ସମ୍ପୂର୍ଣ୍ଣ ଭିନ୍ନ ଧରଣର ସୃଷ୍ଟି । ମାତ୍ର 'ନୂତନ' କହିଲେ ଆମେ ସବୁବେଳେ 'ଆଧୁନିକ' ବୁଝୁନାହୁଁ । ଯଦିଓ ଏ ଦୁଇଟି ଶବ୍ଦ ଭିତରେ ସମ୍ପର୍କ ଖୁବ୍ ଘନିଷ୍ଠ । ଏହି ଘନିଷ୍ଠତା ଜଟିଳତାର କାରଣ ଏବଂ ଏଇଥିପାଇଁ ହିଁ 'ଆଧୁନିକ'ର ବିଶ୍ଳେଷଣ ନିହାତି ପ୍ରୟୋଜନ । ବର୍ତ୍ତମାନ ପ୍ରଶ୍ନ ଉଠୁଛି ଆଧୁନିକ କଳା କହିଲେ ଆମେ କ'ଣ ବୁଝୁ ? ନୂତନ ନା ସାଂପ୍ରତିକ ? ଆଧୁନିକର ଅନ୍ୟ କିଛି ସ୍ୱତନ୍ତ୍ର ଅର୍ଥ ଅଛି କି ?

ତାହା ନୂତନ ହେବା ସଙ୍ଗେ ସଙ୍ଗେ ଆହୁରି କିଛି ଅଧିକ । ଅର୍ଥାତ୍ ଏକ ସମୟ-ଖଣ୍ଡରେ ସୃଷ୍ଟି ନୂତନ ହୋଇପାରେ, ମାତ୍ର ଆଧୁନିକ ନ ହୋଇପାରେ । ତେବେ ଆଧୁନିକତା କ'ଣ ? ଏହାର ନିଜସ୍ୱ କେଉଁଠି ? ଏହାହିଁ ଏ ପ୍ରବନ୍ଧର ଆଲୋଚ୍ୟ ବସ୍ତୁ ।

'ଆଧୁନିକ' କହିଲେ ଆମେ କେବଳ ନୂତନ ବୁଝୁନା କିମ୍ବା ସାଂପ୍ରତିକ ବି ବୁଝୁନା । ଏହାର ଅର୍ଥ ସ୍ୱତନ୍ତ୍ର । ନୂତନ ଶବ୍ଦରେ ଯେଉଁ 'ସ୍ୱାତନ୍ତ୍ର୍ୟ'ର ସୂଚନା ନିହିତ ତାହା 'ଆଧୁନିକ'ରେ ଅଧିକ ବ୍ୟାପ୍ତ । ନୂତନ ଐତିହ୍ୟ ସମ୍ପର୍କହୀନ ହୋଇ କେବଳ ଆକର୍ଷଣୀୟ ହୋଇପାରେ ଏବଂ ଅନେକ ସମୟରେ ବିପ୍ଳବର ସୂଚନା ନ ଦେଇ କେବଳ କ୍ଷଣିକ ଶିହରଣରେ ସମାପ୍ତି ଲଭିପାରେ । ମାତ୍ର ଆଧୁନିକ ଶବ୍ଦ ଦ୍ୱାରା ଏହି ସୀମିତ ଦୃଷ୍ଟିଭଙ୍ଗୀର ସୂଚନା ମିଳେନା । ଏଥିରେ 'ନୂତନ'ର ସମସ୍ତ ଲକ୍ଷଣ ଥାଇପାରେ କିମ୍ବା ନ ଥାଇପାରେ; ମାତ୍ର ଏହା ସବୁବେଳେ ବିପ୍ଳବାତ୍ମକ । ଏହା ଏକ ପରିବର୍ତ୍ତିତ ଦୃଷ୍ଟିଭଙ୍ଗୀର ପ୍ରକାଶ । ଏହା ଏକ ସମ୍ପୂର୍ଣ୍ଣ ଭିନ୍ନ ଧରଣର ଚେତନା । କଳାକାର ତାର ପରିବେଶର ନୂତନତାକୁ ହାଡ଼େ ହାଡ଼େ ଅନୁଭବ କରିବା ସଙ୍ଗେ ସଙ୍ଗେ ଆହୁରି ଅନୁଭବ କରେ ଯେ, ଗତାନୁଗତିକ ଦୃଷ୍ଟିଭଙ୍ଗୀ ନେଇ ଏହାର ପ୍ରକାଶ ସମ୍ଭବ ନୁହେଁ । ଫଳରେ ସେ ଗତାନୁଗତିକତା, ଅର୍ଥାତ୍ ଅତୀତକୁ ଅସ୍ୱୀକାର କରି ନୂଆ ପଥର ସନ୍ଧାନୀ । ଏ ସନ୍ଧାନ ଗତାନୁଗତିକତାକୁ ଅସ୍ୱୀକାର କଲାବେଳେ ଐତିହ୍ୟକୁ ଗ୍ରହଣ କରେ । ତେଣୁ ଏ ବିପ୍ଳବ ଏକ ବିରୋଧାଭାଷ ଉପରେ ପ୍ରତିଷ୍ଠିତ । ଏହି ପ୍ରସଙ୍ଗରେ ଐତିହ୍ୟର ବ୍ୟାଖ୍ୟା ପୁଣି ପୁରାଣ, ଆଉ ଇତିହାସ ସହ ତାର ସମ୍ବନ୍ଧର ବିଶ୍ଳେଷଣ ନିହାତି ପ୍ରୟୋଜନ । ଇତିହାସ କେବଳ ଘଟଣାବଳୀର ସମାହାର ନୁହେଁ । ଏହା ମଣିଷର ଜୀବନଯାତ୍ରାର ଅନୁଭୂତିକୁ ଧରି ରଖେ, ପୁଣି ସେଇ ସ୍ମୃତିର ଆଲୋକରେ ବର୍ତ୍ତମାନକୁ ବୁଝିବାରେ ସାହାଯ୍ୟ କରେ । ଇତିହାସ ଘଟଣାକୁ ଲିପିବଦ୍ଧ କରିବା ସଙ୍ଗେ ଜୀବନର ଗଭୀରତର ପୁଣି ସାମଗ୍ରିକର ପ୍ରକାଶ ସଂସ୍କୃତିକୁ ବର୍ତ୍ତମାନକୁ ଉପହାର ଦିଏ । ଜୀବନର ବୌଦ୍ଧିକ, ସାଂସ୍କୃତିକ, ଆଧ୍ୟାତ୍ମିକ ଦିଗଗୁଡ଼ିକରେ ଆଲୋକପାତ କରି ଅତୀତ ତା ଉପରେ ଆଲୋକ-ପାତ କରେ । ମାତ୍ର ମାନବଜୀବନର ଜଟିଳତାକୁ ଇତିହାସ ପୂରା ଧରି ପାରେନା । ମଣିଷର ଅନୁଭୂତି, ତା ବଞ୍ଚିବାର ଜଟିଳତାର ଇତିହାସ,

ଇତିହାସଠାରୁ ଅଧିକ ପୁରୁଣା । ତେଣୁ ଇତିହାସରେ ଯାହା ନାହିଁ, ତାହା ପ୍ରକାଶ ପାଉଛି ପୁରାଣ ଦ୍ୱାରା । ମଣିଷର ବିଶ୍ୱ ସହିତ, ତାକୁ ଘେରି ରହିଥିବା ପ୍ରକୃତି ସହ ସମ୍ପର୍କର ପ୍ରତ୍ୟକ୍ଷ ପ୍ରକାଶ ହେଉଛି ପୁରାଣ । ଏହା କେବଳ ବୌଦ୍ଧିକ ସ୍ତରରେ ଆମକୁ ସ୍ପର୍ଶ କରେନା । ଅବଚେତନ ମନର ସମସ୍ତ ରହସ୍ୟ ମଧ୍ୟ ପୁରାଣ ଭିତରେ ଦାନା ବାନ୍ଧିଛି । ଏଇ ପୁରାଣ ଏବଂ ଇତିହାସ ଐତିହ୍ୟ ଭାବରେ ମଣିଷର ସମ୍ପତ୍ତି । ତେଣୁ ଐତିହ୍ୟ ଘଟଣା, କାହାଣୀର ସମାହାର ନୁହେଁ; ଏହା କାଳକ୍ରମେ ମଣିଷର ଜ୍ଞାନର ସମଷ୍ଟି । ଆଧୁନିକ ଶିଳ୍ପୀ ଏଇ ସମଷ୍ଟିକୁ ଗ୍ରହଣ କରେ । ବର୍ତ୍ତମାନକୁ ଅତୀତ ଦ୍ୱାରା ଅଧିକ ବ୍ୟାପକ କରେ । ବର୍ତ୍ତମାନର ଆଲୁଅରେ ଅତୀତକୁ ନୂଆ ଅର୍ଥରେ ଉଦ୍‌ଘାଟନ କରେ । ଏଇ ଗ୍ରହଣରେ ବର୍ତ୍ତମାନଠାରୁ ପଳାଇ ଯିବାର ଇଚ୍ଛା ନାହିଁ ବରଂ ବର୍ତ୍ତମାନକୁ ଅତୀତ ଜରିଆରେ ଉପଲବ୍ଧି କରିବାର ଇଚ୍ଛା ନିହିତ । ତେଣୁ ଏହି ଦୃଷ୍ଟିଭଙ୍ଗୀରେ ଆସେ ସମନ୍ୱୟ । କେବଳ ବର୍ତ୍ତମାନର ବର୍ତ୍ତମାନତାରେ ତା'ର ଅନୁଭୂତିକୁ ସୀମିତ ନ କରି ଅତୀତ ଦ୍ୱାରା ଆଜିର ଅନୁଭୂତିକୁ ବ୍ୟାପକ କରିବାରୁ ଶିଳ୍ପୀ ଯେଉଁ ପୂର୍ଣ୍ଣତା ଲାଭ କରେ, ତାହା ଆଧୁନିକତାର ବିଶେଷତ୍ୱ । ଏହା ଅନ୍ଧାନୁକରଣ ନୁହେଁ, ଏକ ନୂଆ ଆବିଷ୍କାର ।

ସବୁ କଳାକାର ସବୁ ଯୁଗରେ ତାଙ୍କ ବର୍ତ୍ତମାନ ଓ ପରିବେଶ ପ୍ରତି ସଚେତନ । ଅନେକ ପୁଣି ଐତିହ୍ୟ-ସଚେତନ । ଏ ସଚେତନତାର ଦୁଇଟି ଧାରା । ଯେଉଁମାନେ ବର୍ତ୍ତମାନର ବର୍ତ୍ତମାନତାରେ ଆବଦ୍ଧ, ସେମାନେ ଅତୀତକୁ ଅସ୍ୱୀକାର କରି ନିଜ ଅନୁଭୂତିର ରୂପ ଦେବାକୁ ଚେଷ୍ଟା କରନ୍ତି । ଐତିହ୍ୟକୁ ଅସ୍ୱୀକାର କରି ସେମାନେ 'ନୂତନ' ପର୍ଯ୍ୟାୟଭୁକ୍ତ ହୋଇ ପଡ଼ନ୍ତି । ପୁଣି ଯେଉଁମାନେ ବର୍ତ୍ତମାନ ପ୍ରତି ଉଦାସୀନ ରହି ଐତିହ୍ୟକୁ ଗ୍ରହଣ କରି ତାକୁ ଅଧିକ ସାର୍ଥକରୂପେ ପ୍ରକାଶ କରିବାକୁ ଚେଷ୍ଟା କରନ୍ତି, ସେମାନେ 'ସାଂପ୍ରତିକ' ହୋଇ ପଡ଼ନ୍ତି । କାରଣ ଅତୀତର ଶୈଳୀ ତାଙ୍କ-ଠାରେ ମୁଖ୍ୟ । ଆଜିର ଅନୁଭୂତିକୁ ସେ ଶୈଳୀ ଜରିଆରେ ସେମାନେ ପ୍ରକାଶ କରନ୍ତି । ମାତ୍ର ଆଧୁନିକତା ବର୍ତ୍ତମାନ ଏବଂ ଐତିହ୍ୟ ସହ ଏକ ନୂଆ ସମନ୍ୱୟର ପ୍ରଚେଷ୍ଟା । ଏହା ଗୋଟିକୁ ଧରି ଅନ୍ୟକୁ ଛାଡ଼ିବା ନୁହେଁ, ଗୋଟିକ ଦ୍ୱାରା ବରଂ ଅନ୍ୟଟିକୁ ଅଧିକ ଶକ୍ତିଶାଳୀ, ଅଧିକ ବ୍ୟାପକ ଏବଂ ଅଧିକ ପ୍ରାଞ୍ଜଳ କରିବାର ଚେଷ୍ଟା । ଐତିହ୍ୟ ଏବଂ ବର୍ତ୍ତମାନର ଏହି ନୂଆ

ସଂବନ୍ଧର ସଚେତନତା ଆଧୁନିକତାର ମୂଳତତ୍ତ୍ୱ । ଏହା ଏକ ବିପ୍ଳବାତ୍ମକ ଚେତନା । ଐତିହ୍ୟ ସମ୍ପର୍କହୀନ ନୂତନତା କେବଳ ଚମକପ୍ରଦ ଶିହରଣ, ପୁଣି ବର୍ତ୍ତମାନ ପ୍ରତି ଉଦାସୀନ ଐତିହ୍ୟ ସଚେତନତା ରକ୍ଷଣଶୀଳ ମନୋବୃତ୍ତି । ମାତ୍ର ଆଧୁନିକତା କୌଣସିଟିକୁ ଗ୍ରହଣ କରେନା । ଦୁଇଟିଯାକ ତା'ଠାରେ ଅପୂର୍ଣ୍ଣ । ଆଧୁନିକତା ଆଣେ ଏଇ ଦୁଇ ଅପୂର୍ଣ୍ଣତା ଭିତରେ ସମନ୍ୱୟ । ଏ ଚେତନାର ଦୁଇଟି ଦିଗ । ପ୍ରଥମଟି ହେଉଛି ଅତୀତ ସହ ସାମଞ୍ଜସ୍ୟର ସ୍ୱୀକୃତି ଏବଂ ଦ୍ୱିତୀୟଟି ହେଉଛି ନୂଆ ଅନୁଭୂତିର ପ୍ରକାଶ ପାଇଁ ନୂଆ ଶୈଳୀର ସନ୍ଧାନ । ଫଳରେ ଏ ଚେତନାରେ ଅଛି ଆଭିଜାତ୍ୟର ରକ୍ଷଣଶୀଳତା ପୁଣି ବିପ୍ଳବୀର ରୋମାଞ୍ଚିତ ଉଦାରତା ।

ଐତିହ୍ୟ ଏବଂ ବର୍ତ୍ତମାନର ସମ୍ପର୍କ ପରେ ଏ ଚେତନାରେ ମିଳେ ଅନ୍ୟ ଏକ ସମ୍ପର୍କ । ଏ ସମ୍ପର୍କ ହେଉଛି କଳ୍ପନା ଏବଂ ଯୁକ୍ତି ଭିତରେ, ଚିନ୍ତା ଏବଂ ଆବେଗ ଭିତରେ । ବିଭିନ୍ନ ଯୁଗର କବିତାରେ ଏ ଦୁଇଟିର ବ୍ୟବହାର ଭିନ୍ନ ରୂପ ଗ୍ରହଣ କରିଛି । କବିତା ଆବେଗ ଏବଂ ଚିନ୍ତାରୁ ହିଁ ଜାତ; ମାତ୍ର ବିଭିନ୍ନ ଯୁଗରେ, ଦୃଷ୍ଟିକୋଣର ପରିବର୍ତ୍ତନ ଯୋଗୁ ଆବେଗ ଆଉ ଚିନ୍ତା ଭିତରେ ସମତା ରହେନା । ଯେତେବେଳେ କବିତା ଆବେଗ-ପ୍ରଧାନ ହୋଇଯାଏ, ସେତେବେଳେ ତାହା କେବଳ ଉଚ୍ଛ୍ୱାସର ପ୍ରକାଶ କରେ । ତାହା ଅନୁଭୂତିର ଜଟିଳତାକୁ ପ୍ରକାଶ କରିବାକୁ ସକ୍ଷମ ହୁଏନା, ପୁଣି ଯେତେବେଳେ କବିତା ଚିନ୍ତାପ୍ରଧାନ ହୋଇଉଠେ, ସେତେବେଳେ ତାହା ନୀରସ ହୋଇଯାଏ । କବିତା ତାର ଆବେଦନ ଶକ୍ତି ହରାଇ ବସେ । ସବୁ ସଫଳ ସୃଷ୍ଟିରେ ଏ ଦୁଇଟିର ସମନ୍ୱୟ ଘଟିଛି । କବିତା ହୋଇ ଉଠିଛି ଅନୁଭୂତିର ଆବେଗମୟୀ ପ୍ରକାଶ । ଆଧୁନିକ ଯୁଗ ବୌଦ୍ଧିକତାର ଯୁଗ । ଏ ଯୁଗରେ ଜୀବନର ସବୁ କ୍ଷେତ୍ରରେ ପ୍ରଜ୍ଞାର ପ୍ରାଧାନ୍ୟ ବେଶି ଏବଂ କଳାକାର ତା' ସୃଷ୍ଟିରେ ଏ ପ୍ରାଧାନ୍ୟକୁ ସ୍ୱୀକାର କରିଛି । ଆଧୁନିକ ଜୀବନର ଜଟିଳତା, ନବୀନତା ପୁଣି ତିକ୍ତତାକୁ ସେ ଚିନ୍ତା ଏବଂ ବୁଦ୍ଧି ଦ୍ୱାରା ବିଶ୍ଳେଷଣ କରି, ତାର ବୌଦ୍ଧିକ ସ୍ୱରୂପକୁ ହୃଦୟଙ୍ଗମ କରି ପ୍ରକାଶ କରିବାକୁ ଯାଇଛି; ମାତ୍ର ଏ ପ୍ରକାଶ କେବେ ଆବେଗକୁ ବଳିଦେଇ ନୁହେଁ ବରଂ କଳ୍ପନାକୁ ସ୍ୱୀକାର କରି ଆବେଗମୟୀ ହୋଇଛି । ଆଧୁନିକ ଚେତନାରେ କଳ୍ପନା ଏକ ବିଶିଷ୍ଟ ଭୂମିକା ଗ୍ରହଣ କରେ । କଳ୍ପନା ବର୍ତ୍ତନା ପାଇଁ ବ୍ୟବହୃତ

ହୁଏନ, ଏକ ସ୍ୱପ୍ନରାଜ୍ୟର ସୃଷ୍ଟି ପାଇଁ ବ୍ୟବହୃତ ହୁଏନ। ଆଜିର ସ୍ରଷ୍ଟା କଳ୍ପନାକୁ ସ୍ୱୀକାର କରେ ତା ବାସ୍ତବତାକୁ ଉପଲବ୍ଧି କରିବା ପାଇଁ। କାରଣ ଆଧୁନିକ କଳାକାର ଫଟୋଗ୍ରାଫର ନୁହେଁ। ସେ ତା ବାସ୍ତବତାକୁ ଉପଲବ୍ଧି କରିବାକୁ ଚାହେଁ। ଏ ଉପଲବ୍ଧି ପାଇଁ ଅନୁଭବର ସବୁ ଦ୍ୱାର ଖୋଲିରଖେ। ଚିନ୍ତା, ଯୁକ୍ତି, ପୋଥିଗତ ବିଦ୍ୟା, ଆବେଗ ଓ କଳ୍ପନା କୌଣସିଟି ତା ପାଖରେ ଅଦରକାରୀ ନୁହନ୍ତି। ସମସ୍ତେ ବରଂ ଅନୁଭୂତିର ଜଟିଳତାକୁ ଉପଲବ୍ଧି କରିବାରେ ସାହାଯ୍ୟ କରନ୍ତି। ଅତୀତରେ ଏକ ପରିବେଶକୁ ଉପେକ୍ଷା କରି ଏକ କାଳ୍ପନିକ ପରିବେଶକୁ ସୃଷ୍ଟି କରିବା ପାଇଁ କଳ୍ପନା ଥିଲି ଏକ ମାଧ୍ୟମ। ମାତ୍ର ଆଜିର ପରିବେଶ ଖଣ୍ଡିତ, ବିଭକ୍ତ। ଏକ ଧ୍ୱଂସମୁଖୀ କ୍ଷୟିଷ୍ଣୁ ପରିବେଶରେ ମଣିଷ ପ୍ରଥମ ଥର ପାଇଁ ଉପଲବ୍ଧି କରିଛି ଜୀବନର ଅସହାୟତା। ଏ ଅସହାୟତା ବ୍ୟକ୍ତିଗତ ଖିଆଲରୁ ସୃଷ୍ଟ ନୁହେଁ କିମ୍ବା ବ୍ୟକ୍ତିଗତ ସ୍ୱପ୍ନିଳ ଆଦର୍ଶର ଅନୁପସ୍ଥିତିରୁ ନୁହେଁ। ଏ ଅସହାୟତା ଜୀବନର ବିକଟତାରୁ ସୃଷ୍ଟ। ତେଣୁ ଏପରି ଏକ ବିଖଣ୍ଡିତ ପରିବେଶ ମଧ୍ୟରେ ସ୍ରଷ୍ଟା କଳ୍ପନାକୁ ସ୍ୱୀଁ ଅସ୍ତ୍ର ହିସାବରେ ଗ୍ରହଣ କରିଛି। ଆଦର୍ଶ, ମୂଲ୍ୟବୋଧ, ଏମିତି କି ଈଶ୍ୱରଙ୍କ ସ୍ଥାନ ଆଜିର ପୃଥିବୀରେ ସ୍ରଷ୍ଟା ନିଜର କଳ୍ପନା ଭିତରେ ହିଁ ଖୋଜୁଛି ବଞ୍ଚିବାର ଅର୍ଥ। ଏ ଅର୍ଥର ଅନ୍ୱେଷା-ବିଖଣ୍ଡିତ ଜୀବନକୁ ଏକ ରୂପ ଦେବାର ଚେଷ୍ଟା ଆଜିର ସ୍ରଷ୍ଟାର ଉଦ୍ଦେଶ୍ୟ। ତେଣୁ କଳ୍ପନା ଆଜି ବିଳାସ ନୁହେଁ। ଏହା ଏକ ନିଦ୍ଦୁର ପ୍ରୟୋଜନ। ଆଜିର ଚେତନାରେ କଳ୍ପନାଠାରୁ ଚିନ୍ତା ନିର୍ବାସିତ ନୁହେଁ ବରଂ ଚିନ୍ତା, ତର୍କ, ବୁଦ୍ଧି ପୁଣି କଳ୍ପନା ସବୁ ମିଶି ଆଜିର ସୃଷ୍ଟିରେ ଏକାକାର। ଆଜିର ସୃଷ୍ଟି ତେଣୁ ବୌଦ୍ଧିକ ସତ; ମାତ୍ର ତାର ଆବେଦନ ଆବେଗମୟୀ। ଚିନ୍ତା ଆଉ କଳ୍ପନା ଭିତରେ ଏଇ ସମନ୍ୱୟ ଆଧୁନିକ ଚେତନାର ଅନ୍ୟ ଏକ ବିଶିଷ୍ଟ ଗୁଣ।

ଐତିହ୍ୟ ଏବଂ ବର୍ତ୍ତମାନ ପ୍ରତି ଦୃଷ୍ଟିଭଙ୍ଗୀ, କଳ୍ପନା ଏବଂ ଚିନ୍ତା ପ୍ରତି ଦୃଷ୍ଟିଭଙ୍ଗୀ ପରେ ଆଧୁନିକ ଚେତନାର ଅନ୍ୟ ଏକ ବିଶିଷ୍ଟ ଦିଗ ହେଉଛି ମଣିଷର ନିଜ ପ୍ରତି ଦୃଷ୍ଟିଭଙ୍ଗୀ, ନିଜ ପରିବେଶ ପ୍ରତି ଦୃଷ୍ଟିଭଙ୍ଗୀ। ଆଜିର ପରିବେଶ ଏକ ଦୁଃସ୍ଥିତି। ଏ ଦୁଃସ୍ଥିତିର ବିକଟତା ଯେତେ ଯନ୍ତ୍ରଣାଦାୟକ, ଏହାର ନୂତନତା ତା ଠାରୁ ଅଧିକ ଭୟଙ୍କର। ଏମିତି ଏକ ପରିବେଶରେ ମଣିଷ ପ୍ରଥମ ଥର ପାଇଁ ମୋହମୁକ୍ତ ହୋଇଛି। ଏ ମୋହମୁକ୍ତ ତାକୁ

ପ୍ରଥମ ଥର ପାଇଁ ନିହାତି ନିସହାୟ କରିଦେଇଛନ୍ତି । ରତ୍ନାକର ପରି ସେ ତାର ପ୍ରତ୍ୟେକ ପରିଚିତ ଆଶ୍ରୟକୁ ଖୋଜୁଛି । କିନ୍ତୁ କେଉଁଠି ସେ ଆଶ୍ରୟ ପାଉନି । ସବୁ ଆଶ୍ରୟ ଆଜି ଅସହାୟ ଅଥବା ମୃତ ଅଥବା ଆଶ୍ରୟ ଦେବାକୁ ନାରାଜ । ତେଣୁ ମଣିଷ ମୋହମୁକ୍ତ ରତ୍ନାକର ପରି ନିହାତି ଏକାକୀ । ତା ଜୀବନ ଅର୍ଥହୀନ । ଏମିତି କି ନିଜ ପାଖରେ ସେ ନିଜେ ବିଦେଶୀ । ତା ପାଖରେ ପରମ୍ପରା ନାହିଁ, ଈଶ୍ୱର ମୃତ, ବିଜ୍ଞାନ ନିୟନ୍ତ୍ରିତ, ପୃଥିବୀ ଶ୍ମଶାନ ତ । ଏପରି ପରିବେଶରେ ମଣିଷର ନିଜ ପ୍ରତି ଦୃଷ୍ଟିଭଙ୍ଗୀ ସମ୍ପୂର୍ଣ୍ଣ ଭିନ୍ନ । ସମ୍ପୂର୍ଣ୍ଣ ନୂତନ । ଆଜି ନିଜପ୍ରତି ମଣିଷ ପୋଷଣ କରିଛି ଏକ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ । ପୁଣି ଜୀବନ ପ୍ରତି ଏକ ବିଷାଦମୟୀ ଆବେଗ । ଏ ବ୍ୟଙ୍ଗ ସାମାଜିକ ସ୍ତରରେ ନୁହେଁ ବରଂ ଦାର୍ଶନିକ ଓ ଆଧ୍ୟାତ୍ମିକ ସ୍ତରରେ । ଏହା କରୁଣାତ୍ମକ, ପୁଣି ଏହାର ପ୍ରକାଶ ଅନେକ କ୍ଷେତ୍ରରେ ଲୀଳକାଧର୍ମୀ । ଅନୁଭୂତିର ସମସ୍ତ ଦିଗରୁ ମଣିଷ ଅନୁଭବ କରିଛି ତା' ନିଜ ଅଧଃପତନ । ତା' ଆଗରୁ ରହସ୍ୟର ପର୍ଦ୍ଦା ଉଠିଯାଇଛି । ନିଜ ସୃଷ୍ଟି ଶ୍ମଶାନରେ ଲଙ୍ଗଳା ମଣିଷର ଅସହାୟ ଛବି ଆଗରେ ଛିଡ଼ା ହୋଇଛି । ଜୀବନ କେବଳ ବଞ୍ଚିବାରେ ହିଁ ସୀମିତ ହୋଇଛି । ତେଣୁ ତା ପାଖରେ ଆଜି ବଂଚିବାଟା ହିଁ ବଡ଼ । ଜୀବନର ଅର୍ଥ, ଆଦର୍ଶ, ଏମିତି କି ଉଦ୍ଦେଶ୍ୟ ଆଜି ଅଳୀକ ।

କେବଳ ବଂଚିବା ପାଇଁ ଜୀବନ ଏକ ନୂତନ ଦୃଷ୍ଟିକୋଣ । ଏହା ବାସ୍ତବତାର ଏକ ବିକଟ ସ୍ୱରୂପ ଆଣି ଦେଇଛି । ଏହି ବିକଟତାକୁ ଉପଲବ୍ଧି କରିଲାପରେ ଶିଳ୍ପୀର ନିଜ ମାଧ୍ୟମ ପ୍ରତି ଦୃଷ୍ଟିଭଙ୍ଗୀ ମଧ୍ୟ ବଦଳିଯାଏ । ଏ ଯୁଗରେ ଶିଳ୍ପୀ ପ୍ରଥମ ଥର ପାଇଁ ଅନୁଭବ କରେ, ପାରଂପରିକ ଶୈଳୀ ନୂତନ ଅନୁଭୂତିକୁ ପ୍ରକାଶ କରିପାରିବନି । ଏହା ବ୍ୟକ୍ତିତ ବିଜ୍ଞାନର ବିଭିନ୍ନ ଦିଗ ଅର୍ଥାତ୍ ମନସ୍ତତ୍ତ୍ୱ, ପଦାର୍ଥ ବିଜ୍ଞାନ, ଜୀବ ବିଜ୍ଞାନ ଇତ୍ୟାଦି ଜ୍ଞାନର ନୂତନ ଦିଗନ୍ତ ସୃଷ୍ଟି କରିଥିବାରୁ ତାର ପ୍ରଭାବ ଶିଳ୍ପୀ ଉପରେ ପଡ଼ିବା ନିଶ୍ଚିତ । ପୁଣି ବିଜ୍ଞାନ ଦ୍ୱାରା ଉଦ୍‌ଭାବିତ ଯାନ୍ତ୍ରିକ ଗଣ ମାଧ୍ୟମ ଅର୍ଥାତ୍ କେମେରା, ରେଡ଼ିଓ, ଟେଲିଭିଜନ, ସିନେମା ଇତ୍ୟାଦି ସହ ଶିଳ୍ପୀକୁ ନୂଆ ଧରଣର ସଂଗ୍ରାମ କରିବାକୁ ପଡ଼ୁଥିବାରୁ ତାର ଶୈଳୀରେ ମଧ୍ୟ ପରିବର୍ତ୍ତନ ଆସିବା ସ୍ୱାଭାବିକ । ତେଣୁ ଏକ ଦିଗରେ ଅନୁଭୂତିର ବିଭିନ୍ନତା, ଜଟିଳତା ଓ ଗମ୍ଭୀରତା ଏବଂ ଅନ୍ୟ ଦିଗରେ ପ୍ରକାଶର ଯାନ୍ତ୍ରିକ ମାଧ୍ୟମ ସହ ସଂଘର୍ଷରୁ

ଜାତ ଶୈଳୀ ଏକ ନୂଆ ରୂପ ଏବଂ ଢଙ୍ଗକୁ ଗ୍ରହଣ କରେ । ଏ ଢଙ୍ଗରେ ଆମେ ପାଉଁ ଏକ ସମନ୍ୱୟ । କେତେବେଳେ ଆଙ୍ଗିକ ଉପରେ ପ୍ରାଧାନ୍ୟ ତ କେତେବେଳେ ବିଷୟବସ୍ତୁ ଉପରେ ପ୍ରାଧାନ୍ୟ ଶିଳ୍ପୀ ଦେଇଆସିଛି । ମାତ୍ର ଆଜ କଳାର ଆଙ୍ଗିକ ଏବଂ ଆତ୍ମା ମଧ୍ୟରେ ସମନ୍ୱୟର ପ୍ରଚେଷ୍ଟା । ଆଜର ଶିଳ୍ପୀ ତା ମାଧ୍ୟମରେ କେବଳ ନୂତନତାକୁ ଗ୍ରହଣ କଲାନି, ବ୍ୟାପକତାକୁ ମଧ୍ୟ ଗ୍ରହଣ କଲା । ନୂତନତା ଏବଂ ବ୍ୟାପକତାରୁ ଜାତ ଶୈଳୀ ଆଙ୍ଗିକ ଏବଂ ଆତ୍ମା ସହ ଏକ ଜୀବନ୍ତ ସମ୍ପର୍କ ସୃଷ୍ଟିକରି ପାରିଲା । ଶୈଳୀ ଅତୀତର ସଫଳ ସ୍ରଷ୍ଟାମାନଙ୍କର କେବଳ ଅନୁକରଣ ହେଲାନି କିମ୍ବା କେବଳ ବ୍ୟକ୍ତିଗତ ଉଚ୍ଛ୍ୱାସର ସ୍ୱତଃ ପ୍ରକାଶ ହେଲାନି, ଶିଳ୍ପୀ ନିଜର ବ୍ୟକ୍ତିସ୍ୱାଧୀନତାକୁ ଗ୍ରହଣ କରି ଐତିହ୍ୟ ସହ ତାକୁ ସାମିଲ କଲା । ଫଳରେ ସୃଷ୍ଟି ହେଲା ଏକ ନୂତନ ଶୈଳୀ—ଏକ ସମନ୍ୱୟର ଶୈଳୀ, ଯେଉଁଠି ଶିଳ୍ପୀର ଆଙ୍ଗିକ ଏବଂ ଆତ୍ମା ଏକ ହେଲେ । ବ୍ୟକ୍ତିତ୍ୱ ଏବଂ ଐତିହ୍ୟ ଏକ ହେଲା, ପୁଣି ବିଭିନ୍ନ ଶିଳ୍ପୀର ସ୍ୱର ଏକାକାର ହୋଇ ଗୋଟିଏ ସ୍ୱର ସୃଷ୍ଟିକଲା । ଏ ଶୈଳୀର ପ୍ରଭାବ ଚିତ୍ର ଏବଂ କବିତାରେ ସବୁଠାରୁ ବେଶୀ ।

ଶୈଳୀର ଏ ପରିବର୍ତ୍ତନ (କବିତାରେ) ଭାଷାରେ ଅନେକ ପରିବର୍ତ୍ତନ ଆଣିଲା । କବିତାର ଭାଷା ପ୍ରତୀକଧର୍ମୀ ହେବା ସଙ୍ଗେ ସଙ୍ଗେ ପାରମ୍ପରିକ ବ୍ୟାକରଣକୁ ଅସ୍ୱୀକାର କଲା । ପୁଣି ସମସ୍ତ କୃତ୍ରିମତାକୁ ବାଦ୍ ଦେବାକୁ ଯାଇ କାବ୍ୟିକ ରୀତି ଏବଂ ଶବ୍ଦକୁ ତ୍ୟାଗ କରିବା ସଙ୍ଗେ ସଙ୍ଗେ କଥିତ ଭାଷାକୁ ଗ୍ରହଣ କରିନେଲା । ଭାଷା କେବଳ ବର୍ଣ୍ଣନା କଲାନି, ଉପମା ଆଦି ଜରିଆରେ କେବଳ ତୁଳନା କଲାନି, ଭାଷା ଭଙ୍ଗୀରେ ପରିଣତ ହେଲା । ଭାଷା ପରେ ପରିବର୍ତ୍ତନ ଆସିଲା ଛନ୍ଦରେ । କବିତାର ଛନ୍ଦ ବ୍ୟାକରଣ ନିୟମ ଦ୍ୱାରା ନିୟନ୍ତ୍ରିତ ନ ହୋଇ ଆବେଗ ଦ୍ୱାରା ନିୟନ୍ତ୍ରିତ ହେଲା । ସମୟ ଚେତନା, ଅଚେତନ ମନର ପ୍ରକ୍ରିୟାକୁ ପ୍ରକାଶ କରିବାକୁ ଯାଇ କବି ନିହାତି ବ୍ୟକ୍ତିଗତ ପ୍ରତୀକ, ଚିତ୍ରକଳ୍ପର ବ୍ୟବହାର କଲା । ଏମିତି କି ଅନେକ ସମୟରେ ଏସବୁ ଅର୍ଥହୀନ ହୋଇପଡ଼ିଲା । ଗୋଟିଏ ମୁହୂର୍ତ୍ତରେ ମାନସିକ ଅବସ୍ଥାକୁ ରୂପ ଦେବାକୁ ଯାଇ ସେ ବର୍ଣ୍ଣନା କଲାନି, ସୂଚନା ଦେଲା । ଗୋଟିଏ ପରିବେଶ ସୃଷ୍ଟି କଲା କିମ୍ବା ନାଟକୀୟତାକୁ ଗ୍ରହଣ କଲା । ଚିତ୍ର-କଳାରେ ମଧ୍ୟ ସେଇକଥା । ଶିଳ୍ପୀ ଅନ୍ତରୀସ୍ଥ ମନକୁ ରୂପଦେବାକୁ ଯାଇ ବାଧ୍ୟ

ବସ୍ତୁକୁ ନ ଆଙ୍କି ମନରେ ତାର ପ୍ରଭାବକୁ ରଙ୍ଗରେ ତୋଳି ଧରିବାକୁ ଚେଷ୍ଟା କଲା । ଅର୍ଥାତ୍ ଶୈଳୀ ସୂଚନାତ୍ମକ ହୋଇଗଲା । କବିତାରେ ଏଥିପାଇଁ ପ୍ରାଧାନ୍ୟ ଦିଆଗଲା ଶବ୍ଦ, ଧ୍ୱନି ଏବଂ ପ୍ରତୀକ ଉପରେ । ପୁଣି ବିଜ୍ଞାନ ଦ୍ୱାରା ସମୟ ପ୍ରତି ଆମର ଦୃଷ୍ଟିଭଙ୍ଗୀ ବଦଳିଥିବାରୁ ଚିନ୍ତାଧାରାର କ୍ରମବିକାଶ କିମ୍ବା ଅନୁଭୂତିର ଧାରାବାହିକ ବର୍ଣ୍ଣନା ନ କରି ଏକ କୁନ୍ତଳିତ ଗତିକୁ ଗ୍ରହଣ କଲା ।

ଭାଷାପ୍ରତି ଏହି ଦୃଷ୍ଟିକୋଣ ଅର୍ଥାତ୍ ଭାଷା ବର୍ଣ୍ଣନାର ମାଧ୍ୟମ ନ ହୋଇ ଅନୁଭୂତି ସହ ଏକାକାର ହେବା ଏକ ନୂତନତା । କାରଣ ଏହି ଦୃଷ୍ଟିକୋଣ ଅର୍ଥର ଅର୍ଥ ଖୋଜିବାକୁ ଚେଷ୍ଟାକଲା । ଶୈଳୀ କେବଳ ମାଧ୍ୟମ ନୁହେଁ ଏହା ଅନୁଭୂତି ପଥ । ଏହା ଖିଆଲ କିମ୍ବା ଅନୁକରଣ ନୁହେଁ, ଏହା ଏକ ଯୁଗର ଜୀବନ ପ୍ରତି ପ୍ରତିକ୍ରିୟା ଏବଂ ସେହି ପ୍ରତିକ୍ରିୟାର ବ୍ୟକ୍ତିଗତ ପ୍ରକାଶ । ଆଜିର ଶୈଳୀ ଜଟିଳ ଜୀବନ ପ୍ରତି ଆଧୁନିକ ମଣିଷର ପ୍ରତିକ୍ରିୟାର ପ୍ରକାଶ । ଏହା ଜଟିଳତା, ନୂତନତା, ଗମ୍ଭୀରତା, ବ୍ୟାପକତା ପୁଣି ଆନ୍ତରିକତାର ସୂଚକ ।

ତେଣୁ ଆଧୁନିକ ଚେତନା ଏକ ବୈପ୍ଳବିକ ଚେତନା । ଏହା ନୂତନ କିମ୍ବା ସାଂପ୍ରତିକ ନୁହେଁ । ଏକ ନୂଆ ପୃଥିବୀରେ ଏକ ନୂଆ ମଣିଷର ଅନ୍ତରତମ ଦୃଷ୍ଟିଭଙ୍ଗୀ ଏବଂ ଏହି ଚେତନାର ମୁଖ୍ୟ ସ୍ୱର ହେଉଛି ସମନ୍ୱୟ । ବର୍ତ୍ତମାନ ଓ ଐତିହ୍ୟ, ଆଙ୍ଗିକ ଓ ଆତ୍ମା ଏବଂ ଯୁକ୍ତି ଓ କଳ୍ପନା ଭିତରେ ସମନ୍ୱୟ ।

( ଦୁଇ )

"It is precisely our uncertainty which brings us a good deal closer to reality than was possible in former periods which had faith in absolute."

( Karl Mannheim )

ଆଧୁନିକ ଯୁଗରେ ଜନ୍ମହେଲା ଅସ୍ଥିରତା । ଏ ଅସ୍ଥିରତା ବୈଷୟିକ, ମାନସିକ, ପୁଣି ଆଧ୍ୟାତ୍ମିକ । ଏ ଯୁଗରେ ବିଜ୍ଞାନ ଯେଉଁ ଐନ୍ଦ୍ରଜାଲିକ ପରିବର୍ତ୍ତନ ଆଣିଛି, ତାର ପ୍ରଭାବ ଜୀବନର ପ୍ରତି ସ୍ତରକୁ ବିପୁଳ ଭାବରେ ଆନ୍ଦୋଳିତ କରୁଛି । ଅତୀତର ସମସ୍ତ ବିଶ୍ୱାସଠାରୁ ବିଚ୍ଛିନ୍ନ ହୋଇ ଆଜିର ପରିସ୍ଥିତି ସହ ମଣିଷର

ସମ୍ବନ୍ଧରେ ପରିବର୍ତ୍ତନ ଆସିଛି । ଫଳରେ ମାନବିକ ମୂଲ୍ୟ କ୍ଷେତ୍ରରେ ବିପର୍ଯ୍ୟସ୍ତ ସୃଷ୍ଟି ହୋଇଛି । ଗୋଟିଏ କଥାରେ ଜୀବନର ଦ୍ରୁତ ପରିବର୍ତ୍ତନ ସଙ୍ଗେ ସଙ୍ଗେ ଆଧୁନିକ ଦୁଃସ୍ଥିତି ଭିତରେ ନୂଆ ଚେତନା ପୁଣି ନୂଆ ଦୃଷ୍ଟିଭଙ୍ଗୀ ନେଇ ଗଢ଼ିଉଠିଛି ଏକ ନୂଆ ମଣିଷ । ଏହି ପରିବର୍ତ୍ତିତ ନୂଆ ମଣିଷ ପ୍ରତି ଚେତନାଶୀଳତା ହିଁ ଆଧୁନିକତା । କେବଳ ବାହ୍ୟିକ ପରିବର୍ତ୍ତନକୁ ହିଁ ଏତ ଗ୍ରହଣ କରିଛି ସମସାମୟିକ ଲେଖକ । ତା ମତରେ ହିଁ ଏଇ ମଣିଷ ମନ ଚିର ଆଦିମ । ବାହ୍ୟିକ ଆଲୋଡ଼ନ ଭିତରେ ସେ ରହେ ଚିର ଅପରିବର୍ତ୍ତନୀୟ ।, ମାତ୍ର ତଥାକଥିତ ମଣିଷର ଚିରନ୍ତନ ପ୍ରବୃତ୍ତିରେ ନୂଆ ତରଙ୍ଗ ଉଠିଲିଣି । ଏ ଆଧୁନିକ କଳାକାର ଏହା ଗ୍ରହଣ କରେ । ଏହି ସ୍ୱୀକୃତି ହିଁ ଆଧୁନିକତା ଏବଂ ଏହାର ବିଶ୍ୱସ୍ତ ପ୍ରକାଶ ପାଇଁ ଆନ୍ତରିକ ଅନ୍ୱେଷାହିଁ ଆଧୁନିକ କଳାର ଆଧୁନିକତମ ରୂପ ।

ବିଂଶ ଶତାବ୍ଦୀ ଆସିଲା ପରିବର୍ତ୍ତନର ବିପୁଳ ସମ୍ଭାର ନେଇ । ଏଇ ପରିବର୍ତ୍ତନର ପ୍ଳାବନ ଭିତରେ ଅତୀତର ଯା' କିଛି ସତ୍ୟ, ଯା' କିଛି ବିଶ୍ୱାସଯୋଗ୍ୟ ସବୁ କୁଆଡ଼େ ହଜିଗଲା । ମଣିଷକୁ ଯେଉଁ ଆଧ୍ୟାତ୍ମିକ ବିଶ୍ୱାସ ଧରି ରଖିଥିଲା, ଜ୍ଞାନର କ୍ରମବୃଦ୍ଧି ସଙ୍ଗେ ସଙ୍ଗେ ତା ଭାଙ୍ଗିଗଲା । ବିଜ୍ଞାନ ଯୁଗରେ ମଣିଷ ହୋଇଗଲେ ବୁଦ୍ଧିପ୍ରିୟ ମାତ୍ର ଆବେଗ ଦରିଦ୍ର । ଫଳରେ ମେନ୍ ହେମ୍ (Mannheim)ଙ୍କ କଥାନୁସାରେ ମଣିଷ ଆଗରେ ବାସ୍ତବତା ନିହାତି ନଗ୍ନ ହୋଇ ଦେଖା ଦେଲା । ଇନ୍ଦ୍ରିୟ ନିୟନ୍ତ୍ରିତ ବିଜ୍ଞାନ ଇନ୍ଦ୍ରିୟର ପ୍ରାଧାନ୍ୟ ବିସ୍ତାର କରି ମଣିଷ ମନରେ ଯେଉଁ ନଗ୍ନତମ ନଗ୍ନ .ବାସ୍ତବତାର ଦ୍ୱାର ଖୋଲିଦେଲା, ତା' ଭିତରେ ଧର୍ମ ପ୍ରତିଷ୍ଠିତ ମାନବିକତା ଅନେଶ୍ୱାସୀ ହୋଇଗଲା । ଫଳରେ ଏଇ ନୂଆ ବାସ୍ତବତାକୁ ବାସ୍ତବରୂପେ ପ୍ରତିଧ୍ୱନିତ କରିବା ବ୍ୟତୀତ ଶିଳ୍ପୀର ଅନ୍ୟ ଉପାୟ ନ ଥିଲା । ଏ ବାସ୍ତବତାଠାରୁ କଳାକାର ଦୂରେଇ ଯାଇ ପାରିଲାନି; କାରଣ କଳ୍ପନା-ଲୋକ ଅବାସ୍ତବ ବୋଲି ବିଜ୍ଞାନ ଘୋଷଣା କରି ସାରିଥିଲା । ଫଳରେ ବିଜ୍ଞାନୀୟ ବାସ୍ତବତା ଭିତରେହିଁ ସତ୍ୟର ସନ୍ଧାନ ହେଲା ଶିଳ୍ପୀର ଏକମାତ୍ର ପନ୍ଥା ।

ନୂତନତା ସହ ଏଇ ପରିଚୟ ପୁଣି ତାକୁ ପ୍ରକାଶ କରିବା ପାଇଁ ନୂଆ ମାଧ୍ୟମର ଅନ୍ୱେଷାରୁ ହିଁ ଆଧୁନିକ କଳା, ସାହିତ୍ୟ ଇତ୍ୟାଦିର ସୃଷ୍ଟି ।

ଊନବିଂଶ ଶତାବ୍ଦୀର ଚିତ୍ରଶିଳ୍ପୀ ଚିତ୍ରର ପ୍ରଚଳିତଧାରା କରିବାର ଭୂମିକା ଉପରେ ପ୍ରଶ୍ନ ତୋଳିଥିଲା । ବସ୍ତୁର ସାଧାରଣ ବାହ୍ୟିକ ରୂପ ଏବଂ ତା ଚିତ୍ର ମଧ୍ୟରେ ଥିବା ସମ୍ପର୍କ ଉପରେ ସନ୍ଦେହ ଆରୋପ କରିଥିଲା । ମାତ୍ର ଆଜିର କବି ଏବଂ ଚିତ୍ରଶିଳ୍ପୀ ଅଧିକ ସ୍ୱାଧୀନତା ଦାବୀ କରେ । ନୂଆ ବାସ୍ତବତାକୁ ରୂପ ଦେବାକୁ ଯାଇ ଶିଳ୍ପୀ ଅନୁଭବ କରେ, ପାରଂପାରିକ ମାଧ୍ୟମ ଗୁଡ଼ିକ କେମିତି ଅଚଳ ହୋଇପଡ଼ିଛି । ତେଣୁ ସେ ସମ୍ପୂର୍ଣ୍ଣ ନୂଆ ପଥର ସନ୍ଧାନୀ । ଫଳରେ ସେ ବିପ୍ଳବୀ — ବିନାଶକ ପୁଣି ସମ୍ପାଦକ । ଅନେକ ସମୟରେ ସେ ତାର ଚିରପରିଚିତ material କୁ ପରିତ୍ୟାଗ କରୁଛି । କେତେବେଳେ କଳାର ବିଭିନ୍ନ ବିଭାଗ ମଧ୍ୟରେ ଥିବା ସମ୍ବନ୍ଧ ନେଇ ପ୍ରଶ୍ନ ତୋଳୁଛି । ଆଜିର ଶିଳ୍ପୀ ଭାସ୍କର୍ଯ୍ୟ ଏବଂ ଚିତ୍ର ଭିତରେ ଥିବା ପାରଂପରିକ ପାର୍ଥକ୍ୟକୁ ଭାଙ୍ଗିଦେଇଛି । ଆଜିର ଭାସ୍କର୍ଯ୍ୟ କେବଳ କଠିନ ମାଧ୍ୟମରେ ବସ୍ତୁ ଜଗତର କଳାତ୍ମକ ପ୍ରକାଶ ନୁହେଁ; ବରଂ ଶିଳ୍ପୀ ଚେଷ୍ଟା କରେ ଶୂନ୍ୟରେ ରେଖା ଏବଂ ବିଭିନ୍ନ ଭୂମିର ଅନ୍ତର୍ନିହିତ ସମ୍ପର୍କ ସୃଷ୍ଟି କରିବା, ପୁଣି ବସ୍ତୁଜଗତର ଏକ କଠିନ ତରଙ୍ଗ ସୃଷ୍ଟି ନ କରି ବସ୍ତୁ ଜଗତଠାରୁ ସମ୍ପୂର୍ଣ୍ଣ ସ୍ୱାଧୀନ କିଛି ସୃଷ୍ଟି କରିବା । ସ୍ଥାପତ୍ୟରେ ମଧ୍ୟ ଏହି ବୈପ୍ଳବିକ ପରିବର୍ତ୍ତନ ପରିଲକ୍ଷିତ ହୁଏ । ଐତିହାସିକତାଠାରୁ ନିଜକୁ ମୁକ୍ତ କରି ଆଜିର ସ୍ଥପତି ଦ୍ରୁତ ପରିବର୍ତ୍ତନଶୀଳ Engineering ସହ ହାତ ମିଳାଇ ନୂଆ ଗଢ଼ଣର ସନ୍ଧାନୀ ।

କଳାର ବିଭିନ୍ନ ବିଭାଗରେ ଆସିଲା ଏକ ତୋଫାନୀ ବିପ୍ଳବ । ଏହାର ସୃଷ୍ଟି ପୁଣି ଉଦ୍‌ବୁଦ୍ଧ ହେଲା ବିଜ୍ଞାନ ଦ୍ୱାରା । ବିଜ୍ଞାନ ଜୀବନରେ ଆନ୍ଦୋଳନ ସୃଷ୍ଟି କଲା, ପୃଥିବୀର ରୂପ ବଦଳାଇ ଦେଲା, ଶିଳ୍ପୀର ଜ୍ଞାନରେ ବ୍ୟାପକତା ପୁଣି ଗଭୀରତା ଆଣିଲା, ଆଉ ତା ମାଧ୍ୟମରେ ଉନ୍ମୋଚିଲା ନୂତନ ସମ୍ଭାବନା । କିନ୍ତୁ ଅନ୍ୟ ଦିଗରେ ବିଜ୍ଞାନ ଦ୍ୱାରା ପରିବର୍ତ୍ତିତ ପୃଥିବୀରେ ବିଜ୍ଞାନ ଦ୍ୱାରା ଅନେକାଂଶରେ ପ୍ରଭାବିତ କଳାକାର ଅନୁଭବ କଲା ଯେ, ବିଜ୍ଞାନ ଯେଉଁ ସତ୍ୟର ସନ୍ଧାନ ଦେଇଛି, ତା ଏକ ମାତ୍ର ସତ୍ୟ ନୁହେଁ, ବିଜ୍ଞାନ ଯେଉଁ ସ୍ୱର୍ଗର ସୂଚନା ଦେଇଛି ତା ନର୍କର କେବଳ ନାମାନ୍ତର ମାତ୍ର । ଫଳରେ ବିଜ୍ଞାନ ସହ ହାତ ମିଳାଇ ମଧ୍ୟ ଶିଳ୍ପୀ ତାଁର ନିଜର ପନ୍ଥା ଖୋଜିଲା—ନିଜର ସତ୍ୟ ସନ୍ଧାନ କଲା ।

ଆଧୁନିକ କବିତା ମଧ୍ୟ ବିଜ୍ଞାନର ସାଧାରଣବାଦ (generalization) ଏବଂ ବ୍ୟକ୍ତିତ୍ୱର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠାର ସଂଘର୍ଷରୁ ହିଁ ସୃଷ୍ଟ, ବିଜ୍ଞାନ ଇନ୍ଦ୍ରିୟ ଏବଂ ଯୁକ୍ତି ଉପରେ ସମସ୍ତ ଗୁରୁତ୍ୱ ଦିଏ । ଇନ୍ଦ୍ରିୟ ବାହାରେ, ଯୁକ୍ତି ଏବଂ ଜ୍ଞାନର ବାହାରେ କୌଣସି ଅସ୍ତିତ୍ୱ ବିଜ୍ଞାନ ସ୍ୱୀକାର କରେନା । ମାତ୍ର ଆଜିର ସାହିତ୍ୟ ଏ ବୈଜ୍ଞାନିକ ଦୃଷ୍ଟିକୋଣରୁ ଜାତ ନୁହେଁ, କିମ୍ବା ଏହାର ସଂପୂର୍ଣ୍ଣ ବିରୋଧ ମଧ୍ୟ କରେନା । ମାତ୍ର ଯୁକ୍ତି, ପ୍ରଜ୍ଞା ଏବଂ ଅତୀନ୍ଦ୍ରିୟତା ଏ ସମସ୍ତର ଏକ ସମନ୍ୱୟ ଆଣିବାରେ ଆଜିର ସାହିତ୍ୟ ଚେଷ୍ଟିତ । ଫଳରେ ଆଜିର ସାହିତ୍ୟ ବିଜ୍ଞାନ ପ୍ରଭାବିତ ମାତ୍ର ତାର ନିୟନ୍ତ୍ରଣରୁ ସମ୍ପୂର୍ଣ୍ଣ ମୁକ୍ତ ।

ଆଜିର ଶିଳ୍ପୀ ଅତୀତର ବିଶ୍ୱାସଠାରୁ ଦୂରେଇ ଯାଇ ବାସ୍ତବତାକୁ ନୂଆ ଭାବରେ ଅନୁଭବ କରିବାକୁ ଚେଷ୍ଟିତ । କୌଣସି ଏକ ବାହ୍ୟ ଶକ୍ତିଠାରେ ନିଜକୁ ସମର୍ପଣ କରି ସେ ବାସ୍ତବତାକୁ କେବଳ କଳ୍ପନାର ରଙ୍ଗୀନ କାଚ ଦେଇ ଦେଖିବାକୁ ପସନ୍ଦ କରେନା । କିନ୍ତୁ ଅଷ୍ଟାଦଶ ଶତାବ୍ଦୀର ଶିଳ୍ପୀମାନଙ୍କ ପରି ସେ କେବଳ ଯୁକ୍ତି ଦ୍ୱାରା ପରିଚାଳିତ ହେବାକୁ ମଧ୍ୟ ପସନ୍ଦ କରେନି । ଫଳରେ ଆଜିର କବିତା କଳ୍ପନା ବିଳାସ ନ ହୋଇ କଳ୍ପନା ଦ୍ୱାରା ଋଦ୍ଧିମନ୍ତ ।

ଆଧୁନିକ କବିତାରେ କଳ୍ପନା ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ଦ୍ଦିଷ୍ଟ । ମାତ୍ର ଏହା ପାରଂପରିକ କଳ୍ପନାବିଳାସଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସେକ୍‌ସପିଅର (Shakespeare) ଙ୍କ ଭାଷାରେ କଳ୍ପନା—

> "The poet's eye, in a fine frenzy rolling
> Doth glance from heaven to earth, from earth
> to heaven
> And as imagination bodies forth
> The forms of things unknown the poet's pen
> Turn them to shapes,
> and gives to airy nothing
> A local habitation and a name."

ଊନବିଂଶ ଶତାବ୍ଦୀର କବିମାନେ ଏହି ଦୃଷ୍ଟିକୋଣକୁ ଗ୍ରହଣ କରି ନେଇଥିଲେ । ସେମାନଙ୍କଠାରେ କଳ୍ପନା ଏକ ସଂପୂର୍ଣ୍ଣ ସ୍ୱାଧୀନ ସୃଜନଶୀଳ

'କ୍ରିୟା ପ୍ରତିକ୍ରିୟା ପ୍ରଜ୍ଞା ଉପରେ ପ୍ରତିଷ୍ଠିତ ନ ହୋଇ ବ୍ୟକ୍ତିର ପ୍ରତିଭାଦ୍ୱାରା ସଂକୃତ । ଅଷ୍ଟାଦଶ ଶତାବ୍ଦୀର କବିମାନଙ୍କଠାରେ କଳ୍ପନା ଥିଲା କେବଳ ବୌଦ୍ଧିକ ଯୌକ୍ତିକତା—ଆଉ କବିତା ଅନୁଭୂତିର ପ୍ରାଜ୍ଞିକ ସଂମିଶ୍ରଣ । ମାତ୍ର କଲେରିଜ (Coleridge)ଙ୍କ ପାଖରେ ଏହା ଏକ ଶକ୍ତି, ଯା' ଦ୍ୱାରା ଗୋଟିଏ ଚିତ୍ରକଳ୍ପ ବା ଆବେଗ ଅନେକରେ ରୂପାନ୍ତରିତ ହୁଏ କିମ୍ବା ବହୁ ଅନୁଭୂତି ମିଶି ଏକ ହୁଏ କିମ୍ବା ବଦ୍‌ଲେୟାର (Baudelaire)ଙ୍କ ମତରେ ବିଶ୍ୱ ବ୍ରହ୍ମାଣ୍ଡର ଯେତେ ଛବି, ଯେତେ ଧ୍ୱନି, ସବୁଥିରୁ ଏକ ନୂଆ ଅର୍ଥ ଆରୋପ କରେ କଳ୍ପନା । ଏ ଛବିଳ ବ୍ରହ୍ମାଣ୍ଡ ଯେମିତି କଳ୍ପନାର ଖାଦ୍ୟ; ଯାହାକୁ ସେ ହଜମ କରି 'ନୂତନ'ରେ ରୂପାନ୍ତରିତ କରେ । ମଣିଷ ମନର ଯେତେ କ୍ରିୟା ପ୍ରତିକ୍ରିୟା ସବୁ ଯେମିତି କଳ୍ପନାର ଅଧୀନ । କଲେରିଜ (Coleridge) କିମ୍ବା ବଦ୍‌ଲେୟାର (Baudelaire) ସମସ୍ତେ କଳ୍ପନାର ଶକ୍ତିକୁ ଏବଂ ସ୍ୱାତନ୍ତ୍ର୍ୟକୁ ସ୍ୱୀକାର କରିଛନ୍ତି । ତାକୁ ଉଚ୍ଚ ସ୍ଥାନ ଦେଇଛନ୍ତି । ପ୍ରଜ୍ଞାଠାରୁ, ଯୁକ୍ତିଠାରୁ ଏପରି କି ଅନୁଭୂତିଠାରୁ ଯେ ଏହା ମହତ୍ତର, ଏହା ମଧ୍ୟ ସ୍ୱୀକାର କରିଛନ୍ତି । ଆଧୁନିକ କବିମାନେ ଯଦିଓ ଅନେକ କ୍ଷେତ୍ରରେ ରୋମାଣ୍ଟିକମାନଙ୍କ ବିରୁଦ୍ଧରେ ବିପ୍ଳବ କରି ଅନେକ classical ଗୁଣ ଗ୍ରହଣ କରିଛନ୍ତି; ତଥାପି ସେମାନେ କଳ୍ପନାର ଏ ବିଶେଷ ମୂଲ୍ୟକୁ ହୃଦୟଙ୍ଗମ କରିଛନ୍ତି । ସେମାନଙ୍କ ପାଖରେ ଏହା ଏକ ବିସ୍ମୟକର ରୂପେ ଦେଖା ଦେଇଛି । ଯେଉଁ ଯୁଗରେ ସମସ୍ତ ମୂଲ୍ୟବୋଧ ଭଗ୍ନାଂଶରେ ପରିଣତ ହୋଇଛି, ସେ ଯୁଗରେ ଭଗ୍ନସ୍ତୂପ ଭିତରେ ସମନ୍ୱୟ ଆଣି ପାରିବ କେବଳ କବିକଳ୍ପନା ।

କବି କଳ୍ପନା ଉପରେ ଜୋର ଦେଇଥିବା ଆଜିର କବିମାନଙ୍କ ଭିତରେ ରିଲ୍‌କେ (Rilke) ପ୍ରଧାନ । ତାଙ୍କ ମତରେ ଐତିହ୍ୟର ଅପହୃତ ସ୍ମୃତିକୁ ପୁଣି ଥରେ ପ୍ରାଣଦାନ କରି ପାରିବ ଏ କବି କଳ୍ପନା । ଫଳରେ ରୁକ୍ଷ ବର୍ତ୍ତମାନ ଅତୀତ ଦ୍ୱାରା ରୁଦ୍ଧିମନ୍ତ ହେବ, ନୂଆ ଅର୍ଥରେ ଦେଦୀପ୍ୟମାନ୍ ହୋଇ ନୂଆ ସତ୍ୟର ସୂଚନା ଦେବ । ଫଳରେ କଳ୍ପନା ତାଙ୍କଠାରେ ନୂଆ କରି ଉଦ୍ଭାବିତ ଅତୀତ ସହ ବର୍ତ୍ତମାନର ଏକ ଯୋଗସୂତ୍ର । ତାଙ୍କ ଏଞ୍ଜେଲ୍‌ମାନେ ଏଇ ଯୋଗସୂତ୍ରର କାମ କରିଥା'ନ୍ତି । ତାଙ୍କର ଧର୍ମବିଶ୍ୱାସ ବୋଧହୁଏ ସବୁଠାରୁ ତୀବ୍ର ଏବଂ ତାଙ୍କ କବିତାର ନିର୍ଯ୍ୟାସ ହେଉଛି ପ୍ରେମ । ଏଥିପାଇଁ ସେ ଐତିହ୍ୟ ଉପରେ ଏତେ ବେଶି ଜୋର ଦେଇଛନ୍ତି । କାରଣ ପରଂପରା ଭିତରେ ହିଁ ଭବିଷ୍ୟତ ଲୁକ୍କାୟିତ

ଏବଂ ଇନ୍ଦ୍ରିୟାତୀତ ପ୍ରକୃତ ବାସ୍ତବ ଜଗତର ସନ୍ଧାନ ମିଳେ ଏହି ପାର୍ଥିବ ଅଳୀକ ସଂସାର ଭିତରେ । ଏହି ସନ୍ଧାନ –ଅଳୀକ ମାଧ୍ୟମରେ ଚିରନ୍ତନର, ପାର୍ଥିବ ମାଧ୍ୟମରେ ସ୍ୱର୍ଗୀୟର –କେବଳ କଳ୍ପନା ଦ୍ୱାରା ହିଁ ସମ୍ଭବ ।

ରିଲ୍‌କେ (Rilke) କଳ୍ପନା ଉପରେ ଜୋର ଦେଇଥିଲେ ସାମଞ୍ଜସ୍ୟ ଆଣିବା ପାଇଁ । ବ୍ୟକ୍ତିଗତ ସ୍ତରରେ ସତ୍ୟର ସନ୍ଧାନ ପାଇଁ । ମାତ୍ର ରିଚାର୍ଡ୍‌ସ (Richards) କଳ୍ପନା ଉପରେ ଜୋର ଦେଇଥିଲେ ସମ୍ପୂର୍ଣ୍ଣ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ । ତାଙ୍କ ମତରେ କବିତା ମନ ଭିତରର ଆଲୋଡ଼ନକୁ ଶାନ୍ତ କରେ । ତୀବ୍ର, ଜଟିଳ ଅନୁଭୂତି ଧୀରେ ଧୀରେ ଶାନ୍ତ ହୋଇ ଗୋଟିଏ ରୂପ ନିଏ । ଏଇ ବାହ୍ୟ ଜଟିଳ ଅନୁଭୂତି ଶେଷରେ ଆତ୍ମିକ ହୋଇଉଠେ । ମାତ୍ର ଇଲିଅଟ (Eliot), ଆଡେନ୍ (Auden) ଏହି ମତକୁ ବିରୋଧ କରିଛନ୍ତି । ରିଚାର୍ଡ୍‌ଙ୍କ ନିହାତି ବାସ୍ତବ ଦୃଷ୍ଟିକୋଣ ପରିବର୍ତ୍ତେ ସେମାନେ ମଧ୍ୟ ପରବର୍ତ୍ତୀ ରହସ୍ୟବାଦୀ ହୋଇପଡ଼ିଛନ୍ତି । ଏଲିଅଟ୍‌ଙ୍କ 'Four Quarters' ଏହି ପରିବର୍ତ୍ତନର ସୂଚନା ଦିଏ ।

ଆଧୁନିକ କବିତାରେ କଳ୍ପନା ଦ୍ୱିମୁଖୀ କାର୍ଯ୍ୟ କରିଛି । ଫଳରେ ଆଜିର କବିତା କଳ୍ପନା ଜରିଆରେ ତା ନିଜ ସୃଷ୍ଟି ଭିତରେ ମଧ୍ୟ ପୃଥକ୍ ରହିପାରେ, ପୁଣି ତା କଳା ମାଧ୍ୟମରେ ପୃଥିବୀର ବିଛିନ୍ନ ମୂଲ୍ୟବୋଧକୁ ପୁଣି ଥରେ ପୁନରୁଦ୍ଭାବନ କରିପାରେ । ଆଧୁନିକ ଯୁଗରେ ଯେତେବେଳେ ସମସ୍ତ ମୂଲ୍ୟବୋଧ କବି ଆଗରେ ଭାଙ୍ଗିପଡ଼ୁଛି, ସେତେବେଳେ କବି ସ୍ୱ-କଳ୍ପନା ଉପରେ ହିଁ ଜୋର ଦିଏ । କାରଣ ଏହି କଳ୍ପନା ହିଁ ନୂଆ ମୂଲ୍ୟବୋଧ ସୃଷ୍ଟି କରେ । ଏହିଠାରେ ହିଁ ଅଷ୍ଟାଦଶ ଶତକ ଏବଂ ଆଧୁନିକ କବି ମଧ୍ୟରେ ପାର୍ଥକ୍ୟ । ୧୮ଶ ଶତାବ୍ଦୀର କବି ଯେତେବେଳେ ସାଧାରଣ ଚେତନା ଏବଂ ଯୌକ୍ତିକତା ଉପରେ ଅତି ବେଶୀ ଗୁରୁତ୍ୱ ଦେଉଥିଲା, ଆଜିର କବି କଳ୍ପନା ଉପରେ ପୁଣି ଥରେ ଜୋର ଦେଉଛନ୍ତି । ବଂଚି ରହିବା ପାଇଁ ଧ୍ୱଂସ ଭିତରେ ପୁଣି ଥରେ ସୃଜନ ବେଣୁ ବଜାଇବା ପାଇଁ କଳ୍ପନା ଉପରେ ଏ ଗୁରୁତ୍ୱ ଆରୋପ ଆଧୁନିକ କବିତାର ଏକ ବିଶିଷ୍ଟ ଦିଗ ।

ବର୍ତ୍ତମାନର ନଗ୍ନ ବାସ୍ତବତାକୁ କଳ୍ପନାର ସ୍ପର୍ଶ ଦେଇ ପ୍ରକାଶ କରିବା ଆଧୁନିକ କବିର ପ୍ରଧାନ ଲକ୍ଷ୍ୟ । ଏହି ଉଦ୍ଦେଶ୍ୟ ନେଇ ସେ

ଅନୁଭୂତିର ପୂର୍ଣ୍ଣତାକୁ ଗ୍ରହଣ କରେ । ଏ ପୂର୍ଣ୍ଣତା କେବଳ ବର୍ତ୍ତମାନ ସୃଷ୍ଟ ସମସ୍ତ ସମସ୍ୟାର ସମଷ୍ଟି ନୁହେଁ, ଅତୀତର ମୂଲ୍ୟବୋଧ ମଧ୍ୟ ଏହା ଭିତରେ ନିହିତ । ଏହି ବ୍ୟାପକ ଦୃଷ୍ଟିକୋଣରେ ହିଁ ଆଧୁନିକ ଏବଂ ସମସାମୟିକ ଭିତରେ ପାର୍ଥକ୍ୟ । ସମସାମୟିକ କବି ଆଧୁନିକ ସମସ୍ୟା ବିଷୟରେ ହୁଏତ ସଚେତନ; ମାତ୍ର ଅତୀତ ବର୍ତ୍ତମାନର ସାମଗ୍ରିକତା ବିଷୟରେ ସେ ସଚେତନ ନୁହେଁ । ଆଧୁନିକ କବି ବିଶ୍ୱାସ କରେ ଯେ, ଆଜିର ଐନ୍ଦ୍ରଜାଳିକ ପରିବର୍ତ୍ତନ ମଣିଷକୁ ଅତୀତଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ କରିଛି । ମାତ୍ର ସେଥିପାଇଁ ବର୍ତ୍ତମାନକୁ ଭୁଲି ସେ କେବଳ ଅତୀତ ପାଇଁ ବ୍ୟାକୁଳତା ପ୍ରକାଶ କରେ ନାହିଁ । ସେ ତାର ଅସ୍ତିତ୍ୱକୁ କେବଳ ବର୍ତ୍ତମାନର କେତୋଟି ବିନ୍ଦୁରେ ସୀମିତ ନ କରି ଅତୀତକୁ ମଧ୍ୟ ବ୍ୟାପ୍ତ କରେ । ଫଳରେ ବର୍ତ୍ତମାନର ଦୁଃସ୍ଥିତିକୁ ଅତୀତର ଅନୁଭୂତିରେ ବେଶୀ ହୃଦୟଙ୍ଗମ କରେ । ସ୍ପେଣ୍ଡର (Spender) ଙ୍କ ଭାଷାରେ "The modern in the past become conscious at certain points, which are ourselves living in the present." ଫଳରେ ଆଧୁନିକ କବିର କୃତୀରେ ଅତୀତ, ବର୍ତ୍ତମାନ ସବୁ ଏକାକାର ହୁଏ । 'ଭବିଷ୍ୟତବାଦ' ସମସାମୟିକ ହୋଇପାରେ; ମାତ୍ର ଆଧୁନିକ ନୁହେଁ । ଏଥିପାଇଁ କାରଣ ଏହା ଐତିହ୍ୟକୁ ଅସ୍ୱୀକାର କରେ । ବର୍ତ୍ତମାନକୁ ଅତୀତ ଏବଂ ଭବିଷ୍ୟତଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ କରି ବିଚାର କରେ । ମାତ୍ର ଜୟେସ (Joyace) ଙ୍କ ଉପନ୍ୟାସ, ଏଲିଅଟଙ୍କ କବିତାରେ ପୁରାଣର ବ୍ୟବହାର ପୁଣି ପିକାସୋ (Picasso) ଙ୍କ ଚିତ୍ରରେ ଅତୀତ ଏବଂ ବର୍ତ୍ତମାନର ଐକ୍ୟ ସାଧନ କରି ବର୍ତ୍ତମାନର ସାମଗ୍ରିକତା ଆଣିବା ପାଇଁ ପ୍ରଚେଷ୍ଟା ।

ତେଣୁ କଳ୍ପନାର ନୂତନ ପ୍ରୟୋଗ ଅନୁଭୂତିର ସାମଗ୍ରିକତା ପାଇଁ ଅତୀତ ଓ ବର୍ତ୍ତମାନର ସମନ୍ୱୟ ଯଦି ଆଧୁନିକତା, ତେବେ ଏହାର ପ୍ରକାଶ ପାଇଁ ଆଧୁନିକ କବି ନୂଆ ପନ୍ଥା ଗ୍ରହଣ କରେ । ଏହି ପନ୍ଥା ନିର୍ବାଚନରେ ମଧ୍ୟ ଆଧୁନିକ ଦୃଷ୍ଟିକୋଣ ନିହିତ । ଆଧୁନିକ ଜୀବନର ନୂତନତା ପ୍ରକାଶ ପାଇଁ ଭାଷା ନିର୍ବାଚନ ଏକ ପ୍ରଧାନ ସମସ୍ୟା । ଆଧୁନିକ ଜୀବନର ବକ୍ରତା, ଜଟିଳତା ସର୍ବୋପରି ତାର ନଗ୍ନତାକୁ ଅତି ନିଖୁଣ ଭାବରେ ରୂପ ଦେବାପାଇଁ ଏବଂ ଯେତେଦୂର ସମ୍ଭବ ଆଡ଼ମ୍ବରବିହୀନ କରି ନିଜ

ପ୍ରତି ବିଶୃଙ୍ଖଳ ଏବଂ ସତ୍ୟଶୀଳ ହେବାପାଇଁ ଆଜିର କବି ତାର ଭାଷା ସୃଷ୍ଟି କରିଛି । ତା ଭାଷାର ଛନ୍ଦ ଆବେଗ ଏବଂ ରୁକ୍ଷତା କେବଳ ଆଧୁନିକ ଜୀବନର ବିଶୃଙ୍ଖଳ ପ୍ରତିଧ୍ୱନି ।

ଶିଳ୍ପୀର ନୂଆ ଭାଷା ପ୍ରସଙ୍ଗରେ ସ୍ୱେବୋ, ମେଲ୍ଲେମ (Rimand)-ଙ୍କଠାରୁ ଆରମ୍ଭ କରି ଏଲିଅଟ୍ (Eliot), ଜୟେସ୍ (Joyace) ଏବଂ ଚିତ୍ର ଶିଳ୍ପୀ ପିକାଶୋ (Picasso)ଙ୍କ କଥା ଉଲ୍ଲେଖ କରାଯାଇପାରେ । ମେଲ୍ଲମେ (Mellavme) ଯେତେବେଳେ ଶବ୍ଦକୁ ରହସ୍ୟାବୃତ କରିଥିଲେ ର୍ଯାଁବୋ (Rimand) ତାଙ୍କର ଉଦ୍ଦେଶ୍ୟ ପାଇଁ ବ୍ୟାକରଣ, ଅନ୍ୱୟ ସବୁ ତ୍ୟାଗ କରିଥିଲେ । ଏପରିକି ଶବ୍ଦର ଆଭିଧାନିକ ଅର୍ଥ ମଧ୍ୟ ତ୍ୟାଗ କରିଥିଲେ । ଏହି ସବୁ ତଥାକଥିତ ବିଶୃଙ୍ଖଳା ଭିତରେ ଦେଇ ସେ ଆଧୁନିକ ଜୀବନର ଛବି ଆଙ୍କିବା ପାଇଁ ଚେଷ୍ଟିତ । ତାଙ୍କ ଲେଖାରେ ପ୍ରଥମ ଥର ପାଇଁ ନଗର ଜୀବନର ବିକଟତା ରୂପ ପାଇଛି । ପିକାଶୋ (Picasso)ଙ୍କର 'ବ୍ଲୁ ପିରିଅଡ଼୍' (Blue-period) ରେ ଜୀବନ ଦୁଃଖର ବିଦୁଷକୀ ପ୍ରକାଶ ଦେଖିବାକୁ ମିଳେ ।

ଏହା ବ୍ୟତୀତ ଆଧୁନିକ ଶିଳ୍ପୀ ତାର ବିକୃତ ଅନୁଭୂତିକୁ ସତ୍ୟର ରୂପ ଦେବାପାଇଁ 'ବିକୃତି'ର ଆଶ୍ରୟ ନେଇଛି । ଏ ବିକୃତି ଫଳରେ ସ୍ୱାତନ୍ତ୍ର୍ୟ ଏବଂ ବର୍ତ୍ତମାନର ଅର୍ଥରେ ଏକ ନୂଆ ଦିଗନ୍ତ ସୃଷ୍ଟି କରେ । ପୁଣି ମାଧ୍ୟମ ବ୍ୟବହାରରେ ସେ ନୂଆ ସ୍ୱାଧୀନତା ହାସଲ କରେ । କିନ୍ତୁ ଏହା ବ୍ୟତୀତ ଏ 'ବିକୃତି' ଆତ୍ମକୈନ୍ଦ୍ରିକ ଶିଳ୍ପୀର ବାହାର ବାସ୍ତବତା ସହ ପ୍ରତିକ୍ରିୟାର ସୂଚନା ଦିଏ । ଶିଳ୍ପୀ ନିଜ ଛବିରେ ନିଜକୁ ଆରୋପ କରେ । ଫଳରେ ବାହାରର ବାସ୍ତବତାର ବୈଂକ୍ତିକ୍ତଧାର ରୂପାନ୍ତରିତ ହୁଏ । ଶିଳ୍ପୀର ଅହଂ ଏବଂ ବାସ୍ତବତାର ସମ୍ପର୍କରୁ ଏଇ ଜାତୀୟ ଚିତ୍ରର ସୃଷ୍ଟି । ସ୍ପେଣ୍ଡରଙ୍କ ଭାଷାରେ—'The element of distortion in the factor of the relationship of subjective self to objective reality multiplied by the present moment of time' ଏହି ବିକୃତି ଚିତ୍ରକଳା ଏବଂ ଭାସ୍କର୍ଯ୍ୟରେ ବିଶେଷ ରୂପେ ଲକ୍ଷିତ ହୁଏ । ଏହି ପ୍ରସଙ୍ଗରେ ମନେ ପଡ଼ନ୍ତି ପିକାଶୋଙ୍କ ଛବି, ପୁଣି ହେନେରି ମୁର୍ (Henry Moore)ଙ୍କ ଭାସ୍କର୍ଯ୍ୟ । ମାତ୍ର ସାହିତ୍ୟରେ ମଧ୍ୟ ଏହାର ଉଦାହରଣ ବିରଳ ନୁହେଁ । ଜୟେସ୍‌ଙ୍କ ୟୁଲିସିଜ କିମ୍ବା ୟେଟସ (Yeats)ଙ୍କର ଶେଷ କାଳର କେତୋଟି ଚିତ୍ର-କଳ୍ପରେ ଏହାର ଉଦାହରଣ ସ୍ପଷ୍ଟ ।

ଫଳରେ ଆଧୁନିକ କଳାକାର ଆଜିର ବାସ୍ତବତାକୁ ପ୍ରକାଶ କରିବାରେ ପ୍ରୟାସୀ । ମାତ୍ର ଆଜିର ବାସ୍ତବତା କେବଳ ଫଟୋଗ୍ରାଫିକ୍ ବାସ୍ତବତା ନୁହେଁ, ଯା'କି କେବଳ ତଥ୍ୟ ଚୟନ, ବର୍ଣ୍ଣନାଦ୍ୱାରା ପ୍ରକାଶ କରିବା ସମ୍ଭବ । ବିଜ୍ଞାନଦ୍ୱାରା ଉନ୍ମୁକ୍ତ ଜ୍ଞାନର ସମସ୍ତ ସାହାଯ୍ୟ ନେଇ ସୁଦ୍ଧା ଆଜିର କଳାକାର ବାସ୍ତବତାକୁ ପ୍ରକାଶ କରିବାରେ କେମିତି ଅସହାୟ । 'ଭ୍ରାନ୍ତ ବାସ୍ତବତା', କ୍ୟୁବ ଇତ୍ୟାଦି ତାର ଆନ୍ତରିକତା ପ୍ରତି ଅସହାୟତାର ସୂଚନା ଦିଏ । ଦୁର୍ବୋଧତା ପୁଣି ବିକୃତି ମଧ୍ୟ ଏହାର ପରିପୂରକ । ଫଳରେ ପ୍ରତ୍ୟେକ କଳାକାର ଏ ପରିବର୍ତ୍ତନଶୀଳ ଯୁଗରେ ବାସ୍ତବତାକୁ ନୂଆ ଅର୍ଥରେ ରୂପ ଦେବାକୁ ବ୍ୟକ୍ତିଗତ ଉପାୟ ଖୋଜି ବୁଲୁଛନ୍ତି । ସମସ୍ତେ ଏକ ଚଳମାନ ଉପାୟ ଖୋଜିବାରେ ବ୍ୟସ୍ତ । ଏଥିପାଇଁ ସେମାନେ ଅବାସ୍ତବ, ଅବାନ୍ତର ରୁକ୍ଷ ପୁଣି କ୍ଲିଷ୍ଟ ହୋଇ ପଡ଼ୁଛନ୍ତି ସତ; ମାତ୍ର ଏହାହିଁ ବାସ୍ତବତାକୁ ବୁଝିବାର ଏକମାତ୍ର ପନ୍ଥା, ଏବଂ ବାସ୍ତବତାକୁ ବୁଝିବାକୁ ଯାଇ ଅବାସ୍ତବତାକୁ ଗ୍ରହଣ କରିବା, ନିହାତି ପ୍ରାଞ୍ଜଳ ହେବାକୁ ଯାଇ ନିହାତି ବ୍ୟକ୍ତିଗତ ହୋଇ ପଡ଼ିବାହିଁ ଆଧୁନିକତା । ଆଧୁନିକ କଳା ନୂଆ ଅର୍ଥର ସ୍ୱୀକୃତି — ସାର୍ଥକ ମାଧ୍ୟମର ସନ୍ଧାନ ।

# ଆଧୁନିକ କବି : ଆଧୁନିକ କବିତା

It is not our deserts thats matter, but our love.
—Francois Mauriac

ଖାଲି କବିତା ଲେଖିଲେ ହିଁ କବି ହୋଇଯିବାକୁ ବୁଝାଏ ନାହିଁ । ହୁଏତ ଆଗେ ଅନ୍ୟ କେଉଁ ଯୁଗରେ ବୁଝାଉଥିଲା; ମାତ୍ର ଆମର ଏହି ଯୁଗରେ କବି ହେବା କହିଲେ ଆହୁରି ଅନେକ କଥାକୁ ବୁଝାଏ, ଆହୁରି ଅନେକ କିଛି ହେବାକୁ ବୁଝାଏ । କବି କହିଲେ ମୂଳତଃ କବିର ଆଖିକୁ ବୁଝାଏ,—କବିର ଆଖିରୁ ଅର୍ଥାତ୍ ତାର ସ୍ୱକୀୟ ଦୃଷ୍ଟିଟିରୁହିଁ ତାକୁ ଚିହ୍ନିବା ସମ୍ଭବ ହୁଏ, ତାକୁ ଅନ୍ୟମାନଙ୍କଠାରୁ ବାରି ମନେରଖିବା ସମ୍ଭବ ହୁଏ; ତାହାକୁ ଆଦୌ ଜଣେ କବି ବୋଲି କୁହାଯାଇ ପାରିବ କି ନାହିଁ, ସେକଥାଟି ମଧ୍ୟ ଧୀରସ୍ଥିରରେ ମୀମାଂସା କରି କହିପାରିବା ସମ୍ଭବ ହୁଏ । କବି କହିଲେ କବିର ଦୃଷ୍ଟିକୁ ବୁଝାଏ । ଆମ ଶାସ୍ତ୍ରରେ କବିକୁ କ୍ରାନ୍ତଦର୍ଶୀ ବୋଲି କହିବାର ଆସ୍ପର୍ଦ୍ଧା କରାଯାଇଛି । କ୍ରାନ୍ତଦର୍ଶୀ, ଅର୍ଥାତ୍ ଯିଏ ଆମର ଏଇ ଆଖି ଦୁଇଟାକୁ ଦିଶୁଥିବା ଦିଗରେଖାଗୁଡ଼ାକର ସେପାଖକୁ ମଧ୍ୟ ଅନାଇ ଦେଖିପାରେ, ଏଇ କ୍ଷଣଟାର ସେପାଖକୁ ବି ସଞ୍ଚରି ଯାଇପାରେ; ଯିଏ ଅଳପ ଗୃହେ ନାହିଁ, ଅଳପରେ ସନ୍ତୁଷ୍ଟ ହୋଇ ରହି ଯାଏନାହିଁ, ଅଳପକୁ ବହୁତ ବୋଲି କହେ ନାହିଁ କିମ୍ବା ଅଳପର ବଦଳରେ ବହୁତ ଦାବୀ କରେ ନାହିଁ । ଏଇଟି, ଅର୍ଥାତ୍ କେବଳ ଏନ୍ଦ୍ରିୟବୁ ସୀମା ଭିତରେ ଯାହା ସବୁ ରହିଛି, ଯେତିକି ଦିଶୁଛି, ଯେତିକିର ଆଘାତ ଆସି ଅନୁଭୂତ ହେଉଛି, କେବଳ ସେତିକି ମାତ୍ରକୁ ନେଇ ଅବଶ୍ୟ ଶବ୍ଦ ଝଞ୍ଜା ଯାଇପାରେ, ଚମତ୍କାର ଅକ୍ଷରବସାଣ ହୋଇପାରେ, ସଭାର ଆପ୍ୟାୟନ ବି ବେଶ୍ କରାଯାଇ ପାରେ;

ମାତ୍ର ତଥାପି ଶବ୍ଦ ଖଞ୍ଜୁଥିବା ଅଥବା ଅକ୍ଷର ବସାଉଥିବା ସଙ୍ଗମୁର୍ହା କାରିଗର କେବଳ ଜଣେ କାରିଗର ହୋଇ ରହିଯାଏ, ତା' ଭିତରେ କବିର ଜନ୍ମ ସମ୍ଭବ ହୋଇପାରେ ନାହିଁ ।

ତେଣୁ କବି କେବଳ ବାହାରଟାକୁ ହିଁ ଦେଖିବ ନାହିଁ, ଭିତରକୁ ଅନାଇ ଦେଖିବାର ସାହସ ବି କରି ପାରୁଥିବ; ଭିତରେ ଅଗ୍ରସର ହେବାର ଯେତିକି ଯେତିକି ଅଧିକାର ଲାଭ କରୁଥିବ, ତଥାକଥିତ ବାହାରଟାକୁ ମଧ୍ୟ ସେ ସେତିକି ସେତିକି ଅଧିକ ସମ୍ପୂର୍ଣ୍ଣ ଭାବରେ ଦେଖି ପାରିବାର କୌଶଳ ପାଇ ଯାଉଥିବ । ସେ ଜଗତ ଭିତରକୁ ଅନାଇ ଦେଖି ପାରୁଥିବ, ଆପଣାର ଭିତରକୁ ମଧ୍ୟ ଅନାଇ ଦେଖି ପାରୁଥିବ । ଦେଖିବାର ଏହି କଳାଟି ଅଧିକରୁ ଅଧିକ ସମ୍ପୂର୍ଣ୍ଣତା ଲାଭ କରିବା ସଙ୍ଗେ ସଙ୍ଗେ ସେ ଜଗତଟାକୁ ବି ଆପଣା ଭିତରେ ଦେଖିବାକୁ ପାଉଥିବ ଓ ଆପଣାକୁ ଜଗତ ଭିତରେ ଦେଖି ପାରୁଥିବ । ବିଭେଦ ଘୁଞ୍ଚି ଯାଉଥିବ, ସେତୁ ପଡ଼ିପଡ଼ି ଯାଉଥିବ, ଅଦୃଶ୍ୟ ହୋଇ ରହିଥିବା ଅନେକ ଡୋରର ଆବିଷ୍କାର ଲାଗି ରହିଥିବ । ତେଣୁ କବି ଖାଲି ଗାଳି ଦେବନାହିଁ, ଖାଲି ବାହୁନି ବସିବ ନାହିଁ । ସେ ବୁଝିବ । ବାହାରଟାକୁ ଯେମିତି ବୁଝିବ, ଭିତରଟାକୁ ବି ସେମିତି ବୁଝିବ । ଆପଣାକୁ ଯେମିତି ବୁଝିବ, ଅନ୍ୟ ସମସ୍ତଙ୍କୁ ତଥା ସବୁକିଛିକୁ ମଧ୍ୟ ସେମିତି ବୁଝିବ ଏବଂ ଏହି ବୁଝିବା ସଙ୍ଗେ ସଙ୍ଗେ ସଂସାରର ଏହି ବିରାଟ ତଥା ଅନେକ ସମ୍ଭାବନାମୟ ଘରଟି ଭିତରେ ସେ ଆପଣାର ସ୍ଥିତିଭୂମିକୁ ମଧ୍ୟ ଆବିଷ୍କାର କରି ନେଉଥିବ । ତେଣୁ ସେ ରୁଷି ବସିବ ନାହିଁ, ଲଢ଼ିବ ନାହିଁ, ଖେଳନା ଭାଙ୍ଗିବାର ଦୌରାତ୍ମ୍ୟ ବି ଦେଖାଇବ ନାହିଁ । ଏଠୁ ଅଲଗା ହୋଇପାଇ କେବଳ ଦ୍ୱୀପ ଏବଂ ସ୍ୱସର୍ବସ୍ୱ ହୋଇ ରହିବାର ଗେହ୍ଲାପଣିଆରେ ସେ ଆପଣା ଅବସାଦ ଅଥବା ଅଭିମାନର ଖଣ୍ଡାରେ ପଡ଼ିଥିବା ଗୋଟାଏ ସ୍ନେହରେ ଜୀବନ ସହିତ, ଜଗତ ସହିତ ଅର୍ଥାତ୍ ସଭିଙ୍କ ସହିତ ଲାଗି ରହିଥିବା ତା'ର ନାହିନାଡ଼ିଟିକୁ କଦାପି କାଟି ପକାଇବାକୁ ବାହାରିବ ନାହିଁ ।

ଠିକ୍ ଏହି ଯୁଗରେ ମୋର ଜନ୍ମ ହୋଇଛି ବୋଲି ମୋତେ ଯେ ଆଧୁନିକ ବୋଲି କୁହାଯିବ, ତାହାର ଆଦୌ କୌଣସି କାରଣ ନାହିଁ । ମୋ' ଜୀବନର ମୂଳ ଦୃଷ୍ଟିଟି ପ୍ରକୃତରେ କ'ଣ ହେବ ବା ନହେବ, ମୋର ବୟସ କଦାପି ତାହାର ନିରୂପଣ କରିବ ନାହିଁ । ଅଳପ ବୟସରେ ମଧ୍ୟ ମୁଁ ଭିତରେ

ଗୋଟାସୁଦ୍ଧା ବୁଢ଼ା ହୋଇ ବସିଥାଏରେ ଏବଂ ବୟସରେ ବୁଢ଼ା ହେଲେ ମଧ୍ୟ ମୁଁ ତଥାପି ଆଧୁନିକ ଯୁଗ ସହିତ ଅତ୍ୟନ୍ତ ଜୀବନ୍ତ ଓ ସଚଳ ଭାବରେ ଆପଣାକୁ ସଂଯୁକ୍ତ କରି ରଖିପାରେ । ଆଧୁନିକତା କହିଲେ ସର୍ବପ୍ରଥମେ ଏକ ଆଧୁନିକ ଦୃଷ୍ଟିକୁ ବୁଝାଏ । କବି କହିଲେ ଯେମିତି କବିର ଆଖିରେ ଜୀବନକୁ ନେଇଡ଼ି ପାରିବାର ଏକ ଦୃଷ୍ଟିକୁ ବୁଝାଏ, ଠିକ୍ ସେହିପରି । ଆଧୁନିକ ପୃଥିବୀର ଉଚ୍ଚାଟତମ, ଶୁଭତମ ତଥା ମହତ୍ତମ ଭୂମିଗୁଡ଼ିକୁ, ତାହାର ଭୁଙ୍ଗତମ ଆକୂତି ଓ ଆକାଙ୍କ୍ଷା ଗୁଡ଼ିକୁ ଆପଣାର ଦୃଷ୍ଟି ମଧ୍ୟରେ ସମ୍ଭାରିଧରି ରଖିପାରିବା ଓ ସେହି ଅନୁସାରେ ଆପଣାର ବାସନା ଓ ବ୍ୟାକୁଳତା ଗୁଡ଼ିକୁ ସଚଳ କରାଇ ପାରିବା ହେଉଛି ଆଧୁନିକତା । ଆଧୁନିକ ଆକୂତି ଗୁଡ଼ିକୁ ଆପଣାର ଆକୂତିରୂପେ ଅନୁଭବ କରିପାରିବା ଲାଗି ଯେକୌଣସି ଯୁଗରେ ଅନେକ ସାହସ ଦରକାର । ପଛଟା ସହିତ ଲାଗିଥିବା ଅନେକ ଦଉଡ଼ିକୁ ଛିଣ୍ଡାଇ ପାରିବା ଦରକାର, ଅନେକ ସ୍ଥାଣୁତା ଓ ତାତ୍କାଳିକତାର କାନ୍ଥ ଗୁଡ଼ାକୁ ଡେଇଁ ବାହାରି ଆସିପାରିବା ଦରକାର । ଆପଣାର ମୁହଁଟା ଉପରୁ ଅନେକ ସ୍ୱୀକୃତ ମୁଖାକୁ ଖସାଇ ପକାଇବା ଲାଗି ସମର୍ଥ ହେବା ଦରକାର, ଅନେକ ଭେକ ଓ ଅନେକ ନିର୍ମୋକର ମୋହରୁ ମୁକ୍ତ ହୋଇପାରିବା ଦରକାର । ଏଗୁଡ଼ାକ ଆଦୌ ସହଜ ନୁହେଁ; କୌଣସି ଯୁଗରେ ସହଜ ନଥିଲା କିମ୍ବା ଆମର ଏ ଯୁଗରେ ମଧ୍ୟ ସହଜ ନୁହେଁ । ଜୀବନଚରଣା ଓ ଜୀବନସର୍ଜନାର କୌଣସି କ୍ଷେତ୍ରରେ ସହଜ ନୁହେଁ, ସାହିତ୍ୟର କ୍ଷେତ୍ରରେ ମଧ୍ୟ ଆଦୌ ସହଜ ନୁହେଁ ।

ଯିଏ ଆଧୁନିକ ହେବ, ସିଏ ଆପଣାକୁ ସକଳପ୍ରକାର ପ୍ରାଦେଶିକତାର ଗମ୍ଭୀର ଭିତରୁ ବାହାର କରି ଆଣିବ;—ଯେକୌଣସି କାଳ କିମ୍ବା କୌଳିକତା ଏବଂ ଦେଶ ତଥା ଦେଶୀୟତାର ଆସ୍ଥତନଟି ଭିତରେ ଆପଣାର ଚମ୍ପୁଟିକୁ ଖଟାଇ ରଖିଥିଲେ ମଧ୍ୟ ତାକୁ ତଥାପି ସାରା ଭୁବନଟାକୁ ଆପଣାର ଆସ୍ଥାନଟି ଉପରେ ଅନୁଭବ କରିପାରିବା ଲାଗି ଆପଣାର ସକଳ ଗବାକ୍ଷକୁ ଉନ୍ମୁକ୍ତ କରି ରଖିବାକୁ ପଡ଼ିବ । ଆପଣାର ନିଶ୍ୱାସ ମଧ୍ୟରେ ସେ ଆଗତ ତଥା ଅନାଗତ ଉଭୟକୁ ଗ୍ରହଣ ଓ ଅନୁଭବ କରି ପାରୁଥିବ, ସ୍ଥିତି ତଥା ସମ୍ଭାବନା ଉଭୟକୁ ଆପଣାର ମୂଳଗତ ଯାବତୀୟ ନକ୍ସାରେ ସ୍ଥାନ ଦେଇ ପାରୁଥିବ । ସ୍ଥିତିଭିତରେ ବାଉଳା ହୋଇ ସମ୍ଭାବନା ଗୁଡ଼ାକୁ ଠଉରାଇ ପାରିବାର ସାମର୍ଥ୍ୟଟିକୁ ହରାଇ ବସିବ ନାହିଁ ଅଥବା ସମ୍ଭାବନା ଗୁଡ଼ିକ ଦ୍ୱାରା

ଏକାବେଳେକେ ବାହାର ହୋଇପଡ଼ ସ୍ଥିତିଗୁଡ଼ାକ ସହିତ ଆପଣାର ସଂଯୋଗ ଗୁଡ଼ାକୁ କାଟି ପକାଇବ ନାହିଁ । ବିଂଶ ଶତାବ୍ଦୀର ଏହି ଶେଷ ଚରଣରେ ଯିଏ ଆଧୁନିକ ହେବାକୁ ବାସନା ରଖିବ, ତାକୁ ବିଂଶଶତାବ୍ଦୀଟିକୁ ହିଁ ଆପଣାର ଚେତନା ଭିତରେ ବହନ କରି ବାଟ ଚାଲିବାକୁ ପଡ଼ିବ; ଏହି ଶତାବ୍ଦୀର ଯାବତୀୟ ଭୟ ଓ ଭରସା, ଯାବତୀୟ ଜଟିଳତା ଏବଂ ଯାବତୀୟ ସମ୍ଭାବନାକୁ ଆପଣା ଚେତନାର ସଞ୍ଚାରଭୂମି ରୂପ ଗ୍ରହଣ କରିବାକୁ ପଡ଼ିବ । ଯେଉଁଠି ବାଟ ମିଳୁନାହିଁ, ସେଠି ବାଟ ଖୋଜିବାକୁ ପଡ଼ିବ; ଯେଉଁଠି ବିଶ୍ୱାସ ହଜି ହଜି ଯାଉଛି, ସେଠି ବିଶ୍ୱାସକୁ ବଞ୍ଚାଇ ରଖିବାକୁ ପଡ଼ିବ । ଯେଉଁଠାରେ ଜୀବନ ଅଲୋଡ଼ା ହୋଇ ରହିଯାଇଛି, ସେଠାରେ ତଥାପି ଲୋଡ଼ିବା ଲାଗି, ସାଉଁଟି ଆଣିବା ଲାଗି ଓ ସାଥୀ କରି ନେବାଲାଗି ଉଦ୍‌ବୋଧନ ଦେବାକୁ ପଡ଼ିବ । ବିଂଶ ଶତାବ୍ଦୀର ସାହିତ୍ୟକୁ ବିଂଶ ଶତାବ୍ଦୀର ସାହିତ୍ୟ ହୋଇପାରିବା ଲାଗି ଏହିପରି ହେବାକୁ ପଡ଼ିବ, ଆଧୁନିକ ବୋଲାଇ ପାରିବା ଲାଗି ସକଳ କବି ଓ ସକଳ ଲେଖକଙ୍କୁ ଏହିପରି ହେବାକୁ ପଡ଼ିବ । ଆଧୁନିକ ସାହିତ୍ୟ, ଅର୍ଥାତ୍ ଏହି ବିଂଶ ଶତାବ୍ଦୀର ସାହିତ୍ୟ; ବିଂଶ ଶତାବ୍ଦୀରେ ଲେଖା ହେଉଥିବା ବା ଛପା ହେଉଥିବା ସାହିତ୍ୟ ନୁହେଁ, ଏକବିଂଶ ଶତାବ୍ଦୀ ଭିତରକୁ ବାଟ ଭଳି ଗୋଟିଏ ବାଟ ବାହାର କରିପାରିବା ଲାଗି ଆପଣାକୁ ନାନା ବ୍ୟକ୍ତ ଓ ଅବ୍ୟକ୍ତ ଭାବରେ ଉଦ୍‌ବେଳିତ କରି ରଖିଥିବା ଏହି ବିଂଶ ଶତାବ୍ଦୀକୁ ଯାବତୀୟ ଲୋକନର ଭୂମି ରୂପ ଧରି ରଖିଥିବା ସାହିତ୍ୟ । ଆଧୁନିକ କବିତା, ଅର୍ଥାତ୍ ଏହି ବିଂଶ ଶତାବ୍ଦୀର କବିତା; ଏହି ବିଂଶ ଶତାବ୍ଦୀରେ ଲେଖା ହେଉଥିବା ବା ଛପା ହେଉଥିବା କବିତା ନୁହେଁ, ମାତ୍ର ଏହି ବିଂଶ ଶତାବ୍ଦୀର ସକଳ ବେଦନା ତଥା ସଂବେଦନାକୁ ଆପଣାର ପ୍ରାଣବନ୍ତ ଆଲୋଡ଼ନ ଭିତରେ ଫୁଟାଇ ପାରୁଥିବା କବିତା, ଆମକୁ ଚେତନାର ଦାଣ୍ଡରେ ଏହି ବିଂଶ ଶତାବ୍ଦୀରେ ଆଣି ଅବତୀର୍ଣ୍ଣ କରାଇ ପାରୁଥିବା କବିତା ଏବଂ ଆଧୁନିକ କବି, ଅର୍ଥାତ୍ ଏହି ବିଂଶ ଶତାବ୍ଦୀର କବି, 'ବର୍ତ୍ତମାନ ଆମ୍ଭେମାନେ ହିଁ କବିତା ଲେଖୁଛୁ, ତୁମେ ସମସ୍ତେ ଆମ୍ଭମାନଙ୍କୁ ଚିହ୍ନ ଓ ଆପଣାଆପଣାର ଯୋଗ୍ୟତା ଅର୍ଜନ କର' ବୋଲି ଏଡ଼େ ପାଟିରେ କହି ବୁଲୁଥିବା କବି ନୁହେଁ; ମାତ୍ର ଆପଣା ଅନ୍ତଃଚେତନା ମଧ୍ୟରେ ବିଂଶ ଶତାବ୍ଦୀର ସର୍ବଶ୍ରେଷ୍ଠ ଆକୂତି ଗୁଡ଼ିକୁ ସମାହିତ କରି ରଖି ଜନନୀ ପରି ଆମ ସମସ୍ତଙ୍କ ଲାଗି କାଲି ସକାଳେ ନୂତନ କବିତ୍ୱର

ଜନ୍ମ ଦେବାପାଇଁ ପ୍ରୟାସ କରୁଥିବା କବି, ଆମ ଆଖିକୁ ଏହି ଶତାବ୍ଦୀର ପର୍ବତଶିଖର ପାଏ ଉଠାଇନେଇ ସେପାଖର ସମ୍ଭାବନା ଗୁଡ଼ାକୁ ଆମ ନିଜର ସମ୍ଭାବନା ରୂପେ ଆମକୁ ଦେଖାଇ ଦେବାର ଲୋଭ ରଖି ବାହାରିଥିବା କବି ।

ସାଲ, ମାସ ଓ ଦିନର ଦୃଷ୍ଟିରୁ ହିସାବ କରି କହିଲାବେଳେ ଗୋଟିଏ ପାହାର ପରେ ଆଉ ଗୋଟିଏ ପାହାର ଆସିଯିବା ଭଳି ଗୋଟିଏ ଶତାବ୍ଦୀ ପରେ ଆଉ ଗୋଟିଏ ଶତାବ୍ଦୀ ଆସି ପହଞ୍ଚିଯାଏ । ଊନବିଂଶ ଶତାବ୍ଦୀ ପରେ ବିଂଶ ଶତାବ୍ଦୀ ଆସି ପହଞ୍ଚିଯାଏ, ତାହା ପୃଥିବୀର ସକଳ ସ୍ଥାନରେ ଓ ସକଳ ଦେଶରେ ଆସି ପହଞ୍ଚିଯାଏ । ବିଂଶ ଶତାବ୍ଦୀର ବିସ୍ମୟ ଓ ବିଂଶ ଶତାବ୍ଦୀର ଆହ୍ୱାନଲାଗି ଆମେ ଅନ୍ତରଭିତରେ ଆଦୌ ପ୍ରସ୍ତୁତ ହୋଇ ପାରି ନ ଥିଲେହେଁ ତାହା ଆମ ଦୁଆରେ ଆସି ପହଞ୍ଚିଯାଏ । ତେଣୁ ଏକଥା ସତ ଯେ, ପୃଥିବୀର ସବୁ ମହାଦେଶ ଓ ସବୁ ଅକ୍ଷାଂଶରେ ବିଂଶ ଶତାବ୍ଦୀ ଆସି ପହଞ୍ଚି ଯାଇଥିଲେ ମଧ୍ୟ ତଥାପି ଆମେ ସମସ୍ତେ ବିଂଶ ଶତାବ୍ଦୀର ରୁଚି, ବିଂଶ ଶତାବ୍ଦୀର ଦୃଷ୍ଟି ତଥା ବିଂଶ ଶତାବ୍ଦୀର ବାସନାକୁ ଆପଣାର ରୁଚି, ଦୃଷ୍ଟି ଓ ବାସନାରେ କଦାପି ପରିଣତ କରିଦେଇ ପାରୁନାହିଁ । ଆଧୁନିକ ଆହ୍ୱାନ ଗୁଡ଼ିକୁ ଶୁଣି ସେଥିଲାଗି ଯଥୋଚିତ ଭାବରେ ପ୍ରସ୍ତୁତ ହୋଇ ପାରୁନାହିଁ । ଆମେ ହୁଏତ ନାନାପ୍ରକାରେ ଆପଣାର ଦୁଆରଗୁଡ଼ାକୁ କିଳି ଦେଇ ବସିଯାଉ,—ଆପଣା କାଳସ୍ଥିତାର ସର୍ବାଗ୍ର ଆହ୍ୱାନଗୁଡ଼ିକୁ ନାନା କୌଶଳରେ ଉପେକ୍ଷିତ କରି ରଖି, ଅର୍ଥାତ୍ ଆପଣାର କାଳ ଓ ତାହାରି ମଧ୍ୟରୁ ଜନ୍ମଲାଭ କରୁଥିବା ସମ୍ଭାବନା ଗୁଡ଼ିକରୁ ଭାରି ସିଆଣିଆ ଭାବରେ ଆପଣାକୁ ହିଁ ଉପେକ୍ଷିତ କରି ରଖିଥାଉ । କାଳ ତଥା କାଳଗତ ସମ୍ଭାବନାଗୁଡ଼ିକୁ ଶୁଣି ପାରିବାକୁ ଆମେ କେତେଦୂର ବା କାହିଁକି ପ୍ରସ୍ତୁତ ହେଉ ବା ନ ହେଉ, ଆମର ସାମାଜିକ ଓ ତାତ୍କାଳିକ ପ୍ରୟୋଜନର ନାନା ପ୍ରବୃତ୍ତି ଦ୍ୱାରା ତାହା ଅନେକ ପରିମାଣରେ ନିୟନ୍ତ୍ରିତ ହୋଇଥାଏ । ସମାଜ ତଥା ତାତ୍କାଳିକତାର ଯେଉଁ ନିରାପଦ ବାଡ଼-ଗୁଡ଼ିକ ଭିତରେ ଆମେ ଆପଣାକୁ ବେଶ୍ ସୁରକ୍ଷିତ କରି ରଖିଛୁ ବୋଲି ବିଚାରୁଥାଉ, ଅନେକ ସମୟରେ ସେହି ବାଡ଼କୁ ଡେଇଁ ଯିବାଲାଗି ଆମର ଆଦୌ ସାହସ ହୁଏ ନାହିଁ । ଅର୍ଥାତ୍ ବଙ୍କିମ ମଣିଷଙ୍କ ପରି ଧ୍ରୁବକୁ ଛାଡ଼ି ଅଧ୍ରୁବକୁ ମନ କରିବା ଲାଗି ଭରସା ପାଏନାହିଁ । ସଂସ୍କୃତି ନାମରେ ଯେଉଁ ଅଭ୍ୟସ୍ତ ସଂସ୍କାର ଗୁଡ଼ାକ ଆମକୁ ବଡ଼ ଚମତ୍କାର ଭାବରେ ପାଳି ପୋଷି ଧୃଷ୍ଟ

କରି ଆଣିଥାଆନ୍ତି, ସେଗୁଡ଼ାକୁ କେବଳ ସଂସ୍କାର ବୋଲି ଜାଣି ଯଥାର୍ଥ ସଂସ୍କୃତିର ଆଶାରେ କୌଣସି ନୂତନ ଅଥଚ ଅନଭ୍ୟସ୍ତ ସଂବେଦନଶୀଳତା ଏବଂ ଗ୍ରହଣଶୀଳତା ଆଡ଼କୁ ସାହସ କରିବା ଲାଗି ଅନେକ ସମୟରେ ଭିତରୁ ବଳ ପାଏନାହିଁ । ଠିକ୍ ସେତିକବେଳେ ହିଁ ଆମର ଶିକ୍ଷା, ଆମର ସାହିତ୍ୟ ଏବଂ ମନୁଷ୍ୟ ହିସାବରେ ଆମର କ୍ଷେତ୍ରଗତ ଯାବତୀୟ ସମ୍ପର୍କ କେବଳ ଏହି ସଂସ୍କାରଗୁଡ଼ାକରେ ହିଁ ବାନ୍ଧିହୋଇ ରହିଯାଏ, ଏଇଠି ଏହି ଅଭ୍ୟସ୍ତ ଭଙ୍ଗୀ-ଗୁଡ଼ାକରେ ଆବର୍ତ୍ତିତ ହେବାରେ ଲାଗିଥାଏ । ସେଥିରେ ବେଗ ଅବଶ୍ୟ ଥାଏ, ମାତ୍ର ତଥାପି ଗତିଶୀଳତା ନଥାଏ । ସେତେବେଳେ ଆମର ଅଭ୍ୟସ୍ତତା-ଗୁଡ଼ାକ ହିଁ ଆଧୁନିକତାର ଭେକ ପିନ୍ଧି ଓ ଆପଣାକୁ ଆଧୁନିକ ବୋଲି ଘୋଷଣା କରି ଆସ୍ଫାଳନ କରିବାରେ ଲାଗିଥାନ୍ତି । ତେଣୁ ନ୍ୟାୟତଃ ଆଧୁନିକମାନେ ରହିଥାନ୍ତି, ଆଧୁନିକ ସାହିତ୍ୟର ସରଳବଣୀ ପରଷା ଯାଉଥାଏ, ଆଧୁନିକ କବିତାର ବିପଣି ବୋହି ଯାଉଥାଏ ଓ ତାହାରି ଭିତରେ ଆଧୁନିକ କବିମାନେ ପାଟୁପାଟୁ ହୋଇ ଯିବା ଆସିବାରେ ଲାଗିଥାନ୍ତି; ମାତ୍ର ତଥାପି ଯେଉଁ ପବନଟି ଆସିବା ଉଚିତ ଥିଲା ବା ଯେଉଁ ସଂଜୀବନଟିର ସ୍ପର୍ଶଲାଭ କରିବା କାମ୍ୟ ହୋଇ ରହିଥିଲା, ସେଇଟିଲାଗି ଘରଯାକ କବାଟ ପଡ଼ି ରହିଥାଏ । ସମସ୍ତେ କେବଳ ନାନାବର୍ଣ୍ଣୀ ଏକ ତାତ୍କାଳିକତାର ବୈଭବପ୍ରଦର୍ଶନ ଭିତରେ ଲଟରପଟର ହେଉଥାନ୍ତି । ଏହି ବାଡ଼ଟା ଭିତରେ ସେମାନେ କେବଳ ଲାଞ୍ଜ ପିଟିବାରେ ଲାଗିଥାନ୍ତି ଏବଂ ତେଣେ ଆପଣାର ମଞ୍ଜିଭିତରେ ସକଳ ପ୍ରକାର ଉତ୍‌କ୍ରାନ୍ତିକୁ ଡରିହରି ରହିଥାନ୍ତି । ଅସଲ କୋଠରିଟି ଏକ ନିଛିଦ୍ର କୋଠରି ହୋଇ ରହିଥାଏ; ତେଣୁ ଅନେକ କୋଠରି ଭିତରେ କେତେ ଧନାଢ୍ୟ ଓ ବର୍ଣ୍ଣାଢ୍ୟ ହୋଇ ବିଚରଣ କରିବାରେ ଲାଗିଥିଲେ ମଧ୍ୟ ତଥାପି ଆପଣାକୁ ସତେଅବା ସବୁ କୋଠରିରୁ ବହିଷ୍କୃତ ଗୋଟାଏ କାଙ୍ଗାଳ ପରି ମନେ ହେଉଥାଏ ।

ବିଂଶ ଶତାବ୍ଦୀ ଆମର ଏହି ଭାରତବର୍ଷକୁ ବି ଆସିଚି, ଆମ ଭାରତବର୍ଷକୁ ମଧ୍ୟ ଆଧୁନିକତା ଆସିଚି । ମାତ୍ର ଭାରତବର୍ଷରେ ଏହି ସଂକ୍ରମଣର ଇତିହାସ ତଥାପି ଏକ ବିଡ଼ମ୍ବନାର ଇତିହାସ । ଅନେକଙ୍କୁ ବଞ୍ଚିତ ଓ ବିଡ଼ମ୍ବିତ କରି ରଖି ମାତ୍ର ଅଳ୍ପ କେତେଜଣଙ୍କର ସମ୍ପନ୍ନ, ଶ୍ରୀ-ଯୁକ୍ତ ଓ ପାରଙ୍ଗମ ହୋଇ ପ୍ରତିଷ୍ଠିତ ରହିବାର ଇତିହାସ । ଅନେକଙ୍କୁ ବୋକା କରି ରଖି ମାତ୍ର ଅଳ୍ପ କେତେଜଣଙ୍କର ସିଆଣିଆ ହୋଇ ଫଳିବାର ଓ ଫୁଲିବାର ଇତିହାସ ।

ଅନେକଙ୍କୁ ମୂର୍ଖ ରଖି ମାତ୍ର ଅଳ୍ପ କେତେଜଣଙ୍କର ଶିକ୍ଷାଧିଷ୍ଠିତ ବୋଲାଇବାର ଇତିହାସ, ଅର୍ବୁଦ ଅନେକଙ୍କୁ ନାନା କୁସଂସ୍କାର ଭିତରେ ମୁଗ୍ଧ ଓ ଆତ୍ମତୃପ୍ତ କରି ରଖି ଅଳ୍ପ କେତେଜଣଙ୍କ ଲାଗି ସଂସ୍କୃତିର ସକଳ ମାଲିକାନାକୁ ଦୋରସ୍ତ କରି ରଖିବାର ଇତିହାସ । ଭାରତବର୍ଷର ଯେ-କୌଣସି ବଡ଼ ସହରକୁ ଗଲେ ଏହି ବିଡମ୍ବନାଟି ଆମର ଆଖିରେ ଆଙ୍ଗୁଠି ମାଡ଼ି ଦେଖାଇ ଦେଲା ପରି ଆମକୁ ଏହି କଥାଗୁଡ଼ାକୁ ଅବଶ୍ୟ କହି ଦେଇଯିବ । ଗଗନଚୁମ୍ବୀ କେତୋଟି ଅଟ୍ଟାଳିକା ମଧ୍ୟରେ ଆଧୁନିକ ଅଫିସ ତଥା ଆଧୁନିକ ଜୀବନକୁ ଚୁମ୍ବନ କରି ରହିଥିବା ମାତ୍ର କେତେଜଣଙ୍କର ପ୍ରତିବେଶୀ ହୋଇ ଆମ ଦେଶର ଯେକୌଣସି ସହରରେ ତାହାର ଅନେକ ଗୁଣ ଅଧିକ ଲୋକ ଏଠି କେବଳ ଧୂଳିକୁ ହିଁ ସମ୍ବଳ କରି ରହିଚନ୍ତି ଓ କେବଳ ଧୂଳିକୁ ହିଁ ଆପଣାର ଭାଗ୍ୟବୋଲି କହିବାଲାଗି ମଣ ହେଉଛନ୍ତି । ଏପାଖରେ ଆମ ଅଳ୍ପ କେତେଜଣଙ୍କର ଆଧୁନିକତା ପବନଗତିରେ କେତେ କୁଆଡ଼େ କ୍ଷେପିଯାଇ କେତେକେତେ କୁବେରଦେଶ ସହିତ ସ୍ୱପ୍ନସଖ୍ୟ କରିବାର ମଉତା ଭିତରେ ଲହଡ଼ା ମାରୁଚି; ଏବଂ ତେଣେ ସକଳ ଆଧୁନିକତାକୁ ସତେଅବା ଗୋଇଠା ମାରିଲାପରି ଅନେକ ମଣିଷଙ୍କର ଜୀବନ-ଦାଣ୍ଡିଗୁଡ଼ାକ ଶହେ ବର୍ଷ ପୂର୍ବରୁ ଯେମିତି ରହିଥିଲା, ବର୍ତ୍ତମାନ ମଧ୍ୟ ଠିକ୍ ସେହିଭଳି ପଡ଼ିରହିଚି । ଆମ ଦେଶରେ ଏବେ ଲେଖା ଓ ଛପା ହେଉଥିବା ବହିଗୁଡ଼ାକୁ ଯଦି ଆଧୁନିକ ସାହିତ୍ୟ ବୋଲି କୁହାଯାଏ, ତେବେ ଏହି ଅଳ୍ପ ସଂଖ୍ୟକ ଲୋକେ ହିଁ ସେହି ସାହିତ୍ୟକୁ ଜାଣୁଚନ୍ତି, ତାକୁ ପଢ଼ୁଚନ୍ତି ଏବଂ ହୁଏତ ଉପଭୋଗ ବି କରୁଚନ୍ତି । ଦେଶର ସର୍ବାଧିକସଂଖ୍ୟକ ଲୋକେ ଜ୍ୟୋତିଷ ଆଉ ମାଳିକାକୁ ସମ୍ବଳ କରି ରହିଚନ୍ତି, ଭବିଷ୍ୟତ କହିଲେ ସେମାନେ ମୂଳତଃ ଗ୍ରହକୋପ ଓ ଗ୍ରହଶାନ୍ତିକୁ ହିଁ ବୁଝିଚନ୍ତି । ତେଣେ ଆଉ କୋଉଠି ଆଧୁନିକ ମଣିଷ ଚନ୍ଦ୍ରପୃଷ୍ଠରେ ଯାଇ ପହଞ୍ଚିଲାଣି,—ଆଧୁନିକ ଆହ୍ୱାନର ଅନୁରୂପ ହେଲାଭଳି ଏକ ଆଧୁନିକ ଜଗତ ଓ ଜୀବନର ଚିତ୍ର ତିଆରି କରିବାରେ ଲାଗିଲାଣି, ମଣିଷ ହିସାବରେ ଆପଣାକୁ ନେଇ ଅଭୂତପୂର୍ବ କେତେକଅଣ ଗଢ଼ି ଥୋଇଦେବ ବୋଲି ବାହାରିଲାଣି ଏବଂ ସେଥିଲାଗି ଆବଶ୍ୟକ ବିପ୍ଳବଲାଗି ବି ପ୍ରସ୍ତୁତ ହେଲାଣି । ବିଂଶ ଶତାବ୍ଦୀର ମଣିଷ ଆପଣାର ଭାଗ୍ୟକୁ ବିଂଶ ଶତାବ୍ଦୀର ଅନୁରୂପ କରି ଗଢ଼ିବାଲାଗି ବାହାରୁଥିବା ବେଳେ ଆମର ଏଠି ଅଧିକାଂଶ ମଣିଷ ମୂଳତଃ ଦୃଶ୍ୟ ବା

ଅଦୃଶ୍ୟ ଆଉ କାହାଦ୍ୱାରା ନିର୍ଦ୍ଧାରିତ ହୋଇ ରହିଥିବା ଭାଗ୍ୟ ହାତରେ ହିଁ ନିୟନ୍ତ୍ରିତ ହୋଇ ରହିଛନ୍ତି । ସେମାନେ ସେହି ନିୟନ୍ତ୍ରଣଟି ଅନୁସାରେ ହିଁ ହସୁଛନ୍ତି ବା କାନ୍ଦୁଛନ୍ତି, ଅଣ୍ଟା ସିଧା କରି ବାଟ ଚାଲୁଛନ୍ତି ଅଥବା ପୁଣି ମେଞ୍ଚାଟିଏ ହୋଇ ପଡ଼ି ରହୁଛନ୍ତି । ଆମର ସାହିତ୍ୟ ଏହି ପରିସ୍ଥିତିରେ ହୁଏତ ଏକ ସେତୁପରି କାର୍ଯ୍ୟ କରିପାରନ୍ତା । ଏହି ଧୂଳିରେ ମଧ୍ୟ ସେ ନୂତନ ଜୀବନ ଓ ନୂତନ ସମ୍ଭାବନାର ଆକୁଳତାଗୁଡ଼ିକୁ ଉଦ୍‌ବୋଧିତ କରାଇ ପାରନ୍ତା । ତା'ହା ଏଠାକୁ ଅନେକ ଆଶାର ସନ୍ଦେଶ ବହନ କରି ଆଣିପାରନ୍ତା । ଆଧୁନିକ ସାହିତ୍ୟ ସେ କଥା କରିପାରନ୍ତା, ଆଧୁନିକ କବି ସେକଥା କରିପାରନ୍ତା ।

ମାତ୍ର ତାହା ସମ୍ଭବ ହୋଇ ପାରୁନାହିଁ । ଆଧୁନିକ କବି ଓ ତା'ର ତଥାକଥିତ ଆଧୁନିକ କବିତା ଏଦେଶର ପିପାସୁ ଅନେକସଂଖ୍ୟକଙ୍କ ସକାଶେ ପ୍ରାୟ ଆକାଶର କଇଁଆ ହୋଇ ରହିଛି । ଏକ ସେତୁ ହୋଇ ରହି ପାରିଥିଲେ ତ ତାହା ଏଠିକା ସହିତ ସେଠିକାକୁ ନେଇ ଯୋଡ଼ିଦେଇ ପାରୁଥାନ୍ତା ! ଆପେ ବଳିଷ୍ଠ ହୋଇଥିଲେ ଆଧୁନିକ କବି ଆମ ସମସ୍ତଙ୍କ ଭିତରେ କେତେ ବଳ ଆଣି ଭରି ଦେଉଥାନ୍ତା ଓ ଆମକୁ କେତେ କଅଣ ଲାଗି ପ୍ରସ୍ତୁତ କରି ପାରୁଥାନ୍ତା । ମାତ୍ର ତାହା ହୋଇ ପାରୁନାହିଁ । ତାହାର ଏକ ପ୍ରଧାନ କାରଣ ହେଉଛି ଯେ, ଆଧୁନିକ କବି ଆପଣାର ସଂବେଗଗତ ତଥା ସମ୍ବନ୍ଧଗତ ଉଭୟ ଭୂମିରେ ଆମ ସମାଜର ସେହି ଅଳ୍ପସଂଖ୍ୟକଙ୍କର ଖୁଆଡ଼ଟା ଭିତରେ ହିଁ ଭର୍ତ୍ତି ହୋଇ ରହିଛି । ଯେଉଁ ଅଳ୍ପ କେତେଜଣ ଏଠି ବଂଶଶତାବ୍ଦୀର ଯାବତୀୟ ସମ୍ପନ୍ନତାକୁ ଆକଣ୍ଠ ଭୋଗ କରିବାରେ ଲାଗିଛନ୍ତି, ଆମର ତଥା-କଥିତ ଶିକ୍ଷା ଏବଂ ସଂସ୍କୃତିରେ ଏକାଧିକାର ବିସ୍ତାର କରି ରହିଛନ୍ତି, ଆମ ଆଧୁନିକ କବି ସଚେତ‌ଅବା କେଉଁ ଜନ୍ମଗତ ପ୍ରୟୋଜନଦ୍ୱାରା ବାଧ୍ୟ ହେଲାପରି ସେହିମାନଙ୍କ ସହିତ ମିଳିମିଶି ଚଳିଛି । ସେମାନଙ୍କ ସହିତ କେବଳ ହାତ ମିଳାଇ ରହିନାହିଁ, ସେଇମାନଙ୍କ ଭଳି ହିଁ ହୋଇ ଉଠିଛି । ସେହିମାନଙ୍କ ସକାଶେ ଲେଖୁଛି, ସେହିମାନଙ୍କର ଜୀବନଗତ ଉଦାସ ତଥା ଆଳସ୍ୟଗୁଡ଼ାକୁ ପରିପୁଷ୍ଟ ଓ ପୂର୍ଣ୍ଣ ତୁଷ୍ଟ କରି ରଖିବା ପାଇଁ ଲେଖୁଛି;–ସଂକ୍ଷେପରେ କହିଲେ ସେହିମାନଙ୍କର ଅବସରବାସନ୍ଧ୍ୟ ଦୈନିକ ବିନୋଦନ ଲାଗି ହିଁ ସିଏ କବିତା ଲେଖୁଛି ଏବଂ ତହିଁ ସଙ୍ଗେ ସଙ୍ଗେ କବିତାର ଏହି କର୍ଷଣ ଫଳରେ ସେ ଆପଣା ଅବସରଗୁଡ଼ାକର ମଧ୍ୟ ଏକ ଚମତ୍କାର ବିନୋଦନ କରିପାରୁଛି ।

ତା'ର ଏହି ବିନୋଦନ ହେଉଛି ଏକ ବିଚିତ୍ର ପ୍ରକାରର ବିନୋଦନ । ଆଧୁନିକ କବିତା ହେଉଛି ମୂଳତଃ ନିଃସଙ୍ଗତାର କବିତା, ମୂଳତଃ ଅପାରଗତା ଓ ଅସଫଳତାର କବିତା; ଏହା ଧର୍ମତଃ ଏକ ଅଭିଯୋଗର କବିତା, ଭୁଞ୍ଜି ରୁଷିବସିବାର କବିତା, ରଜାଘରର ଅଳିଅଳ ଝିଅ ହୋଇ ତଥାପି ମୂଷାମାଟି ଆଜି ବଲେଇଗୁଣ୍ଡ ଭିତରେ ମୁହଁ ମାଡ଼ି ରୁଷି ଶୋଇବାର କବିତା । ଯୁଗର ଆଘାତ ଓ ଯୁଗର ଜଟିଳତାରେ ଅପଣାକୁ ଆହତ ଓ କ୍ଷତବିକ୍ଷତ ବୋଲି କଳ୍ପନା କରି ଆଧୁନିକ ନାନା ଠାରରେ ବିଳାପ କରିବାର କବିତା । ସେହି କବିତା ଭିତରେ ଜୀବନ ହେଉଛି ମୃତ୍ୟୁର ଏକ ଅଭିସନ୍ଧିମୂଳକ ବ୍ୟତିକ୍ରମ ମାତ୍ର; ମୃତ୍ୟୁ ହେଉଛି ସତ୍ୟ । ଜୀବନର ସକଳ ମୂଲ୍ୟ ଓ ସ୍ଥାୟିତ୍ୱର ସକଳ ବୋଧ ହେଉଛି ଜୀବନଛଳନା ଏବଂ ଅସ୍ଥାୟିତ୍ୱର ଗୋଟାଏ ମୁଖା ମାତ୍ର; ଛଳନା ହେଉଛି ସତ୍ୟ ଏବଂ ଅସ୍ଥାୟିତ୍ୱ ହେଉଛି ସତ୍ୟ । ଆଗକାଳରେ ମଧ୍ୟ ଆମ ସାହିତ୍ୟରେ ବିଳାପ ଲେଖା ହେଉଥିଲା; ମାତ୍ର ତଥାପି ସେଥିରେ ସର୍ବଦା ଏକ ଆଭିମୁଖ୍ୟ ରହିଥିଲା, ସେହିସବୁ ବିଳାପ ଆପଣାକୁ କୌଣସି ନା କୌଣସି ଈପ୍ସିତ ଆଡ଼କୁ ସର୍ବଦା ପ୍ରେରିତ କରି ରଖିଥିଲା । ସୀତାବିଳାପରେ ରାମ ଈପ୍ସିତ ହୋଇ ରହିଥିଲେ ଏବଂ ଯଶୋଦାବିଳାପରେ ମଥୁରାକୁ ପ୍ରବାସ କରି ଯାଇଥିବା ଯଶୋଦାନନ୍ଦନ ଈପ୍ସିତ ହୋଇ ରହିଥିଲେ । ମାତ୍ର ଆଧୁନିକ କବିତାର ବିଳାପ ଓ ଅଭିଯୋଗଗୁଡ଼ାକ ସେହି ଦୃଷ୍ଟିରୁ ବିଚାର କଲେ ଏକାବେଳେକେ ତଟସ୍ଥ ଓ ଏକାବେଳେକେ ଆକାଙ୍‌କ୍ଷାନିରପେକ୍ଷ । ଏକାବେଳେକେ ଆକୃତିବର୍ଜିତ । ଯେଉଁ ସମାଜ ବା ଏକ ଅପପରିମେଳ ଭିତରେ କେବଳ ଅଳ୍ପକେତେ ଜଣ ହିଁ ସବୁକିଛି ଭୁଞ୍ଜୁଚନ୍ତି, ଅର୍ଥାତ୍ ସବୁକିଛିକୁ ଆପଣାର ଉପଯୋଗୀ କରି ରଖିଚନ୍ତି, ସେଠି କବିତାକୃତ ଯାବତୀୟ ଅଭିଯୋଗ, ଅଶ୍ରଦ୍ଧା ଏବଂ ଅବିଶ୍ୱାସକୁ ଆମେ କେବଳ ଅବସରଧର୍ମୀ ଗୋଟାଏ ସଉକ ବୋଲି ଜାଣିବା, ସର୍ବସାଧନ-ସମ୍ପୂରିତ ଆମର ପୋଷାକୀ ଜୀବନରେ ହୁଏତ ଏକ ଅନାବଶ୍ୟକ ପ୍ରସାଧନ ବୋଲି ଜାଣିବା ଏବଂ ସେତିକି ଜାଣି ଖୁସୀ ହୋଇ ରହିବାକୁ ଚେଷ୍ଟା କରିବା ।

ବହୁସଂଖ୍ୟକଙ୍କ ପାଖକୁ ଆସି ଜୀବନସହିତ ସେଇଠି ସମ୍ମିଳିତ ହୋଇ ରହିବାକୁ ଆମର ଆଧୁନିକ କବି ହୁଏତ ହାଡ଼େହାଡ଼େ ଭୟ କରିଥାଏ । ସଂସାରକ୍ଷେତ୍ରରେ ସେ ଅପଣାକୁ ଯେଉଁଠି ଉପରେ ରଖିଥାଏ, ସେହି ଅଳ୍ପସଂଖ୍ୟକଙ୍କ

ମଧ୍ୟରେ ସ୍ୱୀ ନିଜକୁ ସର୍ବତୋଭାବରେ ନିରାପଦ କରି ରଖିଥାଏ । ସେଠାରେ ସଫଳ ହେବାକୁ; ଅର୍ଥାତ୍ ଆପଣାକୁ ସଫଳ ବୋଲି ପ୍ରତିପାଦିତ କରିବାକୁ ଯେତେଯାହା ଦରକାର, ସେଗୁଡ଼ାକ ହାସଲ କରିବାରେ ସେ ଆଦୌ କୌଣସି ତ୍ରୁଟି କରେ ନାହିଁ । ବରଂ ଆଧୁନିକ ବାସ୍ତବତାର ଗୋଟିଏ ଗୋଟିଏ ଅବଶ୍ୟକର୍ତ୍ତବ୍ୟ ରୂପେ ସେ ସେଗୁଡ଼ିକୁ ଗ୍ରହଣ କରିନିଏ, ସେ ବଡ଼ ପାଠ ପଢ଼େ, ବଡ଼ ଚାକିରି ଲୋଡ଼େ, ଗୋଟାଏ ବଡ଼ ଚାକିରି ପାଇଲେ ତା'ଠାରୁ ଆହୁରି ଗୋଟାଏ ବଡ଼ ଚାକିରି ଲୋଡ଼େ । ସିଏ ବି ପଇସା କମାଏ, କୋଠାଘରେ ରହେ, କୋଠାଘର ତୋଳେ ଏବଂ ଏସବୁ କରିପାରିବା ପାଇଁ ଆମର ଏହି ଦରପୂରା ଓ ଦରଗଢ଼ା ସମାଜଟାରେ ଯେତେଯେତେ କୌଶଳ ଓ କରାମତିର ଲୋଡ଼ା ହୁଏ, ଯେତେ ଠେଲାପେଲା ଓ ଧସ୍ତାଧସ୍ତି ଭିତରେ ପଶିବାକୁ ପଡ଼େ, ଜଣେ ଜୀବନସଂଗ୍ରାମୀ ମଣିଷଜୀବ ହିସାବରେ ଆଧୁନିକ କବି ମଧ୍ୟ ଯଥୋଚିତ ସମର୍ପଣରେ ସେଗୁଡ଼ାକ ମଧ୍ୟରେ ବଡ଼ ଚମତ୍କାର ଭାବରେ ପ୍ରବିଷ୍ଟ ହୋଇ ରହିଥାଏ ! ଏହି ଜୀବନସଂଗ୍ରାମରେ କେବଳ ବଳିଷ୍ଠତମ ଯେ ଯୋଗ୍ୟତମ ହୋଇ ଉଭୁରି ପାରିବ, ଡାରୱିନ୍‌ବାଦର ଏହି ନ୍ୟାୟଟି ଉପରେ ସେ ଅଟଳ ବିଶ୍ୱାସ ରଖିଥାଏ । ଏହି ବିଶ୍ୱାସ ବଳରେ ସେ ହୁଏତ ଜୀବନ-ସଂଗ୍ରାମରେ ବି ସଫଳ ହୁଏ ଏବଂ ତା'ପରେ ଆଧୁନିକ ପରିପାଟୀରେ ଅସଫଳତାର କବିତା ଲେଖେ, ବହୁ ଆୟାସଦ୍ୱାରା ଅର୍ଜିତ ଆପଣାର ରତ୍ନଦନ୍ତ ପଲଙ୍କଟା ଉପରେ ସତେଅବା ରୁଷିକରି ଶୋଇବାକୁ ଭାରି ଭଲ ପାଏ ।

ଇଏ ହେଉଛି ଏକ ନୂଆ ସଙ୍କଟ, ହୁଏତ ଏକ ନୂଆ ବ୍ୟାଧି । ଯେଉଁ ମନୁଷ୍ୟକୃତ ବ୍ୟବସ୍ଥାଟି ଭିତରେ ଅତ୍ୟଧିକ ମଣିଷ ବଞ୍ଚିତ ଓ ପ୍ରବଞ୍ଚିତ ହୋଇ ରହିଛନ୍ତି, ସେଠାରେ ମୁଁ କେବଳ ସମ୍ପନ୍ନମାନଙ୍କ ଭିତରେ ରହିବି, ନିରାପତ୍ତି ହିଁ ଲୋଡ଼ୁଥିବି ଓ ଅନାଗତ ଯାବତୀୟ ଜଞ୍ଜାଳ ଓ ହଇରାଣଠାରୁ ସବୁବେଳେ ଏକ ନିର୍ବେଦ ଦୂରତାରେ ରହିଥିବି, ଅଧିକଙ୍କର ତୁଳନାରେ ଅନେକ ସଫଳତା ଅର୍ଜନ କରି ସାରିଥିଲେ ମଧ୍ୟ ଆହୁରି ବେଶୀ ସଫଳତା ଲାଗି ପ୍ରୟାସୀ ହୋଇ ରହିଥିବି, ମୋର ଲବ୍ଧ ସଫଳତା ଓ ନିରାପତ୍ତିଟିରୁ କାଳେ କେବେ ବିଚ୍ୟୁତ ହୋଇ ପଡ଼ିବି ବୋଲି ସତେ ଉଦ୍‌ବିଗ୍ନ ହୋଇ ରହିଥିବି ଓ ଭଗବାନଙ୍କ କୃପାରୁ ଯେଉଁଠି ଆସି ପହଞ୍ଚି ପାରିଛି, ସେଇଠି ଲାଖି ରହିବାକୁ ଦିନରାତି ଉଦ୍ୟମ କରୁଥିବି ଏବଂ ଏଣେ ଅସଫଳତା ଆଉ

ଅପାରଗତା ଉପରେ କବିତା ଲେଖୁଥିବ, ସଂସାରକୁ ନିନ୍ଦୁଥିବ, ଯୁଗକୁ ନିନ୍ଦୁଥିବ; ଆପଣାର କାଳ୍ପନିକ କ୍ଷତଗୁଡ଼ାକୁ ଏତେବଡ଼ ବିଲ୍ୱଫଳ କରି ଦେଖାଇବାର ଚନକଲ୍ପମୟ ପ୍ରୟାସ କରିବାରେ ଲାଗିଥିବ;—ଜୀବନଦୃଷ୍ଟିଗତ ଏହି ଘାଆଟାର ନିଦାନ ଖୋଜିବାକୁ ଯାଇ ଆମକୁ ହୁଏତ ଆମର କେଉଁ ଅବଦମିତ ଗଭୀରରେ ପ୍ରକୁପିତ ହୋଇ ରହିଥିବା ଏକ ଆଧାରଗତ ଆତ୍ମ-ବିରୋଧର ଶିରଗୁଡ଼ାକୁ ଉଖାରି ଦେଖିବାକୁ ପଡ଼ିବ । ମାତ୍ର ଏଠାରେ କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ, ସଂକଟସନ୍ତ୍ରସ୍ତ ଓ ପଳାୟନକାମୀ ଆଧୁନିକ କବି ଆମର ଏହି ଆଧୁନିକ ଯୁଗର ରୋଗଗୁଡ଼ାକ ଲାଗି ଆଦୌ କୌଣସି ନିଦାନ ବାହାର କରିପାରିବ ନାହିଁ । ଆଧୁନିକ ମଣିଷ ଓ ଆଧୁନିକ ଆକାଙ୍କ୍ଷାର ସମ୍ମୁଖରେ ଠିଆ ହୋଇ ରହିଥିବା ବାଧାଗୁଡ଼ାକୁ ମଣିଷପରି ଲଙ୍ଘି ପାରିବା ଲାଗି ସେ ଆମକୁ ଆଦୌ କୌଣସି ପ୍ରେରଣା ଦେଇ ପାରିବ ନାହିଁ । "ଆଗ ସମସ୍ତେ ମୋ'ର ଘାଆଗୁଡ଼ାକୁ ଅନାଇ ଦେଖ" ବୋଲି ଯେଉଁ ଡାକ୍ତର ଅମିତାକ୍ଷରର କେତେଭଳି ଅଛନ୍ଦରେ ହୁରି ପକାଇବାରେ ଲାଗିଛି, ସିଏ ଆମ ଏହି ସଂସାରର ନାନା ଘାଆଗୁଡ଼ାକ ପାଇଁ ଆଉ କି ଔଷଧ ବତାଇ ପାରିବ ? ଆପଣାର ଅଭିଯୋଗ ଗୁଡ଼ାକୁ ନେଇ ଆର୍ତ୍ତନାଦ କରୁଥିବା ଆଧୁନିକ କବି ଆମର ଏଠି କେଉଁଠି କି ସେତୁ ବାନ୍ଧିପାରିବ ? ଅନ୍ନମୟକୁ ନେଇ ଆନନ୍ଦ-ମୟ ସହିତ କିପରି ଯୋଡ଼ି ପାରିବ ? ଏବଂ ଖାଲି ଅବସାଦଟାକୁ ନେଇ କାବ୍ୟଗତ ନାନା ଅପକ୍ରୀଡ଼ା ମଧ୍ୟରେ ଘାଣ୍ଟି ହୋଇ ରହିଥିବା ପର୍ଯ୍ୟନ୍ତ ସିଏ ପ୍ରକୃତରେ କୌଣସି ଅନ୍ନମୟ ଅଥବା ଆନନ୍ଦମୟ ସମ୍ଭାବନାକୁ ଯଥାର୍ଥରେ ଚହ୍ନିପାରିବ ବୋଲି ବି ଆମେ କିପରି ଭରସା କରି କହିପାରିବା ?

ସିଏ ଯଥାର୍ଥରେ ସାହିତ୍ୟର ପାଣିଗ୍ରହଣ କରିଥାଏ, ସିଏ ଅନ୍ନମୟକୁ ଚହ୍ନେ, ଆନନ୍ଦମୟକୁ ବି ଚହ୍ନେ । ପେଟର ଭୋକକୁ ସେ ଆକାଶର ଭୋକ ଲାଗି ପ୍ରଲମ୍ବିତ କରି ଦେଇପାରେ । ଜୀବନର ସିଡ଼ି ପକାଇଦେଇ ସିଏ ଏଠୁ ସେଠାକୁ ଯାଇପାରିବାର ବାଟ ବତାଇ ଦିଏ, ସେହି ବାଟକୁ ଚାଲିବା ଲାଗି ଉଦ୍‌ବୁଦ୍ଧ କରେ । ସେହି ବାଟରେ ବାଟ ଓଗାଳି ରହିଥିବା ବାଧାଗୁଡ଼ାକୁ ଅତିକ୍ରମ କରିବା ଲାଗି ଆମ ଭିତରେ ବିଶ୍ୱାସ ଆଣିଦିଏ, ଆମକୁ ସେହିଭଳି ଏକ ଆରୋହଣ ଦକାଶେ ପ୍ରସ୍ତୁତ କରେ । ଆମ ଆଧୁନିକ କବି ସାହିତ୍ୟର ପାଣିଗ୍ରହଣ କରେନାହିଁ, ସିଏ ସାହିତ୍ୟକୁ ଗୋଟାଏ ସଉକ ପରି ଗ୍ରହଣ କରିଛି, ହୁଏତ କେବଳ ଏକ ଅନ୍ନଗତ ଓ ସିଦ୍ଧିସର୍ବସ୍ୱ ସଉକ ବୋଲି ଗ୍ରହଣ

କରିଚି । ସଭିକ ହେଲେ ମଣିଷ ଯେପରି ନିଶା ଖାଏ, ତୃପ୍ତ ପ୍ରାପ୍ତ ସେହିଭଳି ଏକ ସଭିକରେ ପଡ଼ି ଆଧୁନିକ କବି ଏଠି ଆଧୁନିକ କବିତା ଲେଖୁଚି । ଦଣ୍ଡେ କାଳସୀ ଲାଗିଲା ପରି ଦଣ୍ଡେ ଉଚାଟ ହୋଇ ପଡ଼ୁଚି, ଏବଂ ସେହି ଉଚାଟନହାଣ୍ଡିରେ ମସ୍ତିଷ୍କର ସପନୂସାଉଁଟା କେତେ ମସଲାର ବଘର ଦେଇ ସେ ଯେଉଁ କବିତା ଲେଖୁଚି, ସେଥିରୁ ସେ ନିଜେ ଦଣ୍ଡିକଲାଗି ଗୋଟାଏ ପ୍ରକାରର ଶାନ୍ତି ଅବଶ୍ୟ ପାଉଚି । ଜୀବନର ଉତ୍ତପ୍ତ ପ୍ରହରଗୁଡ଼ାକୁ ଦଣ୍ଡିକ ଲାଗି ଶାନ୍ତ କରି ପାରିବାକୁ ଏବେ ଆଧୁନିକ କେତେ ପ୍ରଶମକ ବା ଔଷଧ ବାହାରିଲାଣି । ଖାଲି ଔଷଧ କାହିଁକି, ସାହିତ୍ୟ ଓ କବିତା ମଧ୍ୟ ନାନା ଉତ୍ତପ୍ତତାମସ୍ତ ଆମର ଏହି ଜୀବନରେ ଘଡ଼ିଏ ପ୍ରଶମନ ଆଣି ଦେବାର ଏକ ସାଧନ ରୂପେ ବେଶ୍ ବ୍ୟବହୃତ ହୋଇପାରେ । ଏହିସବୁ Peace-of-Mind Literature ବା ମନରେ ଶାନ୍ତି ପ୍ରଦାନ କରୁଥିବା ସାହିତ୍ୟ ଆମକୁ ଜାଗରଣର ଯାବତୀସ୍ତ କଷ୍ଟରୁ ବେଶ୍ ବଞ୍ଚାଇ କରି ରଖିପାରେ, ଆମକୁ ଗୋଟାସୁଦ୍ଧା ଶୁଆଇ ଦେଇପାରେ । ଆମର ବିବେକକୁ ଗୋଟାସୁଦ୍ଧା ବଶ କରି ରଖିପାରେ, ଅଭୃପ୍ତ ସାଫଲ୍ୟର ସହିତ ଆମର ଉଦ୍ଦଣ୍ଡ ଭୋକଗୁଡ଼ାକୁ ଶାନ୍ତକରି ଦେଇପାରେ । କେତେକ ଦେଶରେ ଏବେ ଔଷଧ ଖାଇ ମନକୁ ଏହିଭଳି ଏକ ଦ୍ୱନ୍ଦମୁକ୍ତ ଓ ଆକାଂକ୍ଷାବିମୁକ୍ତ ଆନନ୍ଦପ୍ରଶାନ୍ତିର ମୁଗ୍ଧବତ୍ ଅବସ୍ଥା ଭିତରେ ଆଣି ଅନ୍ତତଃ କିଛି ସମୟ ପର୍ଯ୍ୟନ୍ତ ରଖି ଦିଆଯାଇ ପାରୁଚି । ଆମର ଏଠି ଆଧୁନିକ କବିତା ଆମ କେତେକଙ୍କ ଲାଗି ସେହିଭଳି ଏକ Psychedelicର କାର୍ଯ୍ୟ କରୁଚି । ପାଠକ ଓ ଲେଖକ ଉଭୟଙ୍କ ଲାଗି କାର୍ଯ୍ୟ କରୁଚି । 'ସକଳ ଜୀବନ ନିଦ୍ରାବିମୋହିତ' ହୋଇ ରହିଥିବା ବେଳେ 'ଦିନକର ଉଜାଗର'ରେ କି ପ୍ରୟୋଜନ ରହିଚି ବୋଲି ସେ-କାଳରେ କବି ଗୋପବନ୍ଧୁ ଆଚମ୍ବିତ ହୋଇ ପ୍ରଶ୍ନ କରିଥିଲେ । ମଣିଷର ଦୁଃଖକୁ ବୁଝିବା ଲାଗି ଆପଣାର ଯେତେ ବେଶୀ ସାମର୍ଥ୍ୟ ରହିଥିଲେ ସୁଦ୍ଧା ଗୋପବନ୍ଧୁ ତଥାପି ଆଧୁନିକମାନଙ୍କର ଦୁଃଖକୁ ବୁଝିପାରି ନଥିଲେ । ଯେଉଁମାନେ ଆପଣାର ସକଳ ଜୀବନକୁ ପ୍ରୟୋଜନବଶ ହୋଇ ନିଦ୍ରାବିମୋହିତ କରି ରଖିଛନ୍ତି, ଦିନକରି, ଏପରି କି ଦଣ୍ଡିକର ଉଜାଗର ଲାଗି ସେମାନଙ୍କର ଯେ ଏକାନ୍ତ ପ୍ରୟୋଜନ ଅବଶ୍ୟ ରହିବ, ହୃଦୟ ଦେଇ ମଣିଷର ପରିକଳନା କରିଥିବା ଗୋପବନ୍ଧୁ ତୁଏତ ଚେଷ୍ଟା କରିଥିଲେ ମଧ୍ୟ ସେକଥା କଦାପି ବୁଝିପାରି ନଥାନ୍ତେ ।

ଗୋପବନ୍ଧୁ ହୃଦୟ ଦେଇ ମଣିଷର କଳନା କରୁଥିଲେ, ଜଗତ ଓ ଜୀବନର କଳନା କରୁଥିଲେ; ଅର୍ଥାତ୍ ଜଗତ ଓ ଜୀବନକୁ ବୁଝୁଥିଲେ । ଆଧୁନିକ କବି ଆପଣାର ମସ୍ତିଷ୍କ ଦେଇ ଜୀବନ ଓ ଜଗତକୁ ବୁଝୁଚି, କେବଳ ମସ୍ତିଷ୍କ ଦେଇ ହିଁ ସିଏ ସେଗୁଡ଼ାକୁ ଦେଖିବାର କୃଚ୍ଛ୍ର ସାଧନା କରୁଚି । ଏବଂ ସେଇଥିଲାଗି ହିଁ ମୂଳତଃ ଶୈଳୀଟାକୁ ସଙ୍ଗୀନ କରି ଧରିଚି । ଆପଣା ଭିତରେ ଆଦୌ କୌଣସି ହୃଦୟ ନାହିଁ ବୋଲି ଯେ ସେ ଏଭଳି ଏକ ଧନ୍ଦାକୁ ଆଦରି ନେଇଚି, ସେ କଥା ଆଦୌ ନୁହେଁ; ମାତ୍ର ନାନା କାରଣରୁ ସେ ମସ୍ତିଷ୍କଟାକୁ ହିଁ ଗୁରୁତର କରି ମାନୁଚି, ଏବଂ ତେଣୁ ହୃଦୟଟାକୁ ଯେ-କୌଣସି ପ୍ରକାରେ ଲୋକଲୋଚନର ଅଗୋଚର କରି ରଖିବାକୁ ଚେଷ୍ଟା କରୁଚି । ଶବ୍ଦସ୍ପନ୍ଦତର ନାନା ବନ୍ଧ ଓ ଅନୁବନ୍ଧ ଲଗାଇ ସେ ଆମକୁ ଅବଗତ କରିବାକୁ ଇଚ୍ଛା କରୁଚି ଯେ, ମଣିଷର ହୃଦୟ ବୋଲି ହୁଏତ କୋଉ ଯୁଗରେ ଗୋଟାଏ କିଛି ପଦାର୍ଥ ଥିଲା । ମାତ୍ର ଏବେ ଆଧୁନିକ ଜୀବନ ଓ ଜଟିଳତାର ନାନା ଗଣ୍ଠି ଭିତରେ ସେଇ ପଦାର୍ଥଟି କ୍ରମେ କୁଆଡ଼େ ଅଦୃଶ୍ୟ ହୋଇ ରହି ପାରିଲାଣି । କେତେପ୍ରକାର ଅଜଗର କେତେ ଜଟିଳ ପ୍ରକାରେ ଛନ୍ଦାଛନ୍ଦ ହୋଇ ସେଇ ଗଣ୍ଠିଗୁଡ଼ାକୁ ପକାଇ ରଖିଚନ୍ତି । ଏବଂ ଭିତରେ ଯେଉଁ ହୃଦୟଟି ରହିଥିଲା, ତାହା ମଧ୍ୟରୁ ଜୀବନଟାକୁ ଏକାବେଳକେ ଶୋଷି ନେଇଚନ୍ତି । ଅଥବା ଆପଣାର ବିଷରେ ତାହାକୁ ଗୋଟାସୁଦ୍ଧା ଅବଶ ଓ ଅଚଳ କରି ରଖିଚନ୍ତି । କିନ୍ତୁ ଏହିସବୁ ଗଣ୍ଠିଗୁଡ଼ାକ ଦ୍ୱାରା ଆବୋରି ହୋଇ ରହିଥିବା ଓ ଏହିସବୁ ବିଷଦ୍ୱାରା ଘାରି ହୋଇ ପଡ଼ିଥିବା ସେହି ହୃଦୟଟା ତଥାପି ଯେ ଅବିରାମ ସ୍ପନ୍ଦିତ ହେବାରେ ଲାଗିଚି, ମସ୍ତିଷ୍କସର୍ବସ୍ୱତାର ମନ୍ତ୍ର ଗ୍ରହଣ କରିଥିବା ଆଧୁନିକ କବି ତାହା ମାନିବାକୁ ରାଜି ନୁହେଁ କିମ୍ବା ଶୁଣିବାକୁ ମଧ୍ୟ ରାଜି ନୁହେଁ । ଆଖି ଫିଟାଇ ଦେଖିବାକୁ ବି ରାଜି ନୁହେଁ । "ଏତିକି ଦେଖିବା ପାଇଁ ଦଇଟା ଆଖି କ'ଣ ଲୋଡ଼ା, ଗୋଟିକରେ କାମ ଚଳିଯିବ;"—ରୋଗଶଯ୍ୟାରେ କୌଣସି ରୋଗୀ ପରି (ସୀତାକାନ୍ତ ମହାପାତ୍ର : ଶବ୍ଦର ଆକାଶ) ସିଏ ହୁଏତ ଏହି କଥା କହିବାକୁ ଇଚ୍ଛା କରୁଚି । ହୁଏତ ରୋଗଶଯ୍ୟାକୁ ହିଁ ସେ ଶଯ୍ୟା ବୋଲି ଗ୍ରହଣ କରିନେଇ ସାରିଲାଣି; ଅଥବା ତା'ର ଆପଣାର ଶଯ୍ୟାଟା ଯେ କ୍ରମେ ରୋଗଶଯ୍ୟାରେ ପରିଣତ ହେବାକୁ ବସିଲାଣି, ଆପଣାର ମସ୍ତିଷ୍କଦ୍ୱାରା ଜାଣିଲେ ସେ ସେହି ସତ୍ୟଟିକୁ ଆଦୌ ହୃଦୟଙ୍ଗମ କରିପାରୁ ନାହିଁ । ଏବଂ ଏହି ଗୋଟାଏ

ଜଗତକୁ ଦେଖିବା ଲାଗି ଯେ ଜଗତର ନିର୍ମାଣ କରିଥିବା ସ୍ୱୟଂ ବିଧାତାଙ୍କୁ ମଧ୍ୟ ଅନେକ ଆଖି ଦେବାକୁ ପଡ଼େ, ସହସ୍ରଚକ୍ଷୁ ହୋଇ ବିଶ୍ୱରୂପର ସ୍ପର୍ଦ୍ଧା କରିବାକୁ ପଡ଼େ, ଆଧୁନିକ ମୌଳମଣ୍ଡନକୁ ସେ କଥା କିଏ ତା'ର ବୁଝିବା ଭଳି ବୁଝାଇ କହିଦେଇ ପାରିବ ? ଅସଲ କଥା ହେଉଚି, ବୁଦ୍ଧି ଆଦୌ ଯଥେଷ୍ଟ ନୁହେଁ । ବୁଦ୍ଧି କେବଳ ଭାଗ ଭାଗ କରିପକାଏ । ବୁଦ୍ଧି ଦେଇ ସଂସାରକୁ ଦେଖୁଥିବା ବେଳେ ପ୍ରକୃତରେ କିଛି ଦେଖି ହୁଏ ନାହିଁ । ଆପଣାର ପରିଧି ଭିତରେ ବୁଦ୍ଧିର ଅନେକ ପ୍ରୟୋଜନ ରହିଥାଏ ସତ, ମାତ୍ର କେବଳ ବୁଦ୍ଧିରେ ସବୁଠାରେ ଖାଲି ପ୍ରମାଦ ହିଁ ଆସି ପହଞ୍ଚେ । କାରଣ ବୁଦ୍ଧିକୁ ଏକମାତ୍ର ସମ୍ବଳ କରି ଧରିଥିଲେ ପର୍ଯ୍ୟନ୍ତ ତାହା ଏକ ଆବରଣ ପରି କାର୍ଯ୍ୟ କରେ । କେବଳ ବୁଦ୍ଧିରେ ଆଧୁନିକ ବିଜ୍ଞାନ ପ୍ରମାଦଗ୍ରସ୍ତ ହୋଇ ପଡ଼ିଥିବା ପରି କେବଳ ବୁଦ୍ଧିଦ୍ୱାରା ଆମର ସାହିତ୍ୟ ମଧ୍ୟ ଆପଣା ଭିତରେ ଏକାଧିକ ପ୍ରମତ୍ତତାକୁ ବାଟ ଛାଡ଼ିଦିଏ । ବୁଦ୍ଧିସର୍ବସ୍ୱ ଦୃଷ୍ଟି ମଣିଷକୁ ମଣିଷ ପରି ଦେଖେ ନାହିଁ । କାରଣ ତାହା ମଣିଷକୁ ସମ୍ପୂର୍ଣ୍ଣ ଓ ସମଗ୍ର କରି ଦେଖେ ନାହିଁ । ବୁଦ୍ଧି ଦେଇ ଦେଖୁଥିଲେ ବେଳେ କେବଳ ଆପଣାର ଇଲାକାଟା ହିଁ ଅତିମାତ୍ରାରେ ସ୍ଫୀତ ଓ ବଡ଼ ହୋଇ ଦିଶୁଥାଏ । ପୁଣି ଏହି ବୁଦ୍ଧି ଯେତେ-ବେଳେ ପ୍ରମତ୍ତ ହୋଇ ହୃଦୟର କ୍ଷେତ୍ରଟାକୁ ମଧ୍ୟ ଗିଳି ପକାଇବାକୁ ବାହାରେ, ସେତେବେଳେ ଆମର ଦୃଷ୍ଟି ଓ ଆମର ବୃତ୍ତି ବଡ଼ ବ୍ୟାଧିଗ୍ରସ୍ତ ହୋଇପଡ଼େ, ଆମର ଯାବତୀୟ ପ୍ରବେଶାଧିକାରକୁ ବସ୍ତୁତଃ ଏକ ଅନଧିକାର ପ୍ରବେଶରେ ହିଁ ପରିଣତ କରିଦିଏ ।

ଆଧୁନିକ କବି ଓ ଆଧୁନିକ କବିତା ପ୍ରଧାନତଃ ବୁଦ୍ଧିର ଭୂଇଁଟାକୁ ହିଁ କାମୁଡ଼ି କରି ପଡ଼ି ରହିଥାନ୍ତି; ତେଣୁ ଆଧୁନିକ କବିତାର ସମାଲୋଚନା ମଧ୍ୟ ପ୍ରଧାନତଃ ଶୈଳୀର ଏକ ଆଲୋଚନା ମଧ୍ୟରେ ହିଁ ପର୍ଯ୍ୟବେସିତ ରହିଥାଏ । ଯାହାର କହିବାକୁ ହୁଏତ କିଛି ହେଲେ ନଥାଏ, ଅଧିକାଂଶ କ୍ଷେତ୍ରରେ ସେହି ଅଳ୍ପବିତ୍ତ ହିଁ କେବଳ ତା'ର ଶୈଳୀଟାକୁ ସଖିକୁଣ୍ଢେଇ କରି ଧରିଥାଏ, ତାର ଯାବତୀୟ ପରୀକ୍ଷା କେବଳ ଶୈଳୀର ପରୀକ୍ଷା ତଥା ପ୍ରୟୋଗ ମଧ୍ୟରେ ସୀମାବଦ୍ଧ ହୋଇ ରହିଥାଏ ଏବଂ ସେହି ପରୀକ୍ଷାଟାକୁ ହିଁ ହରିବୋଲ ଦେଇ ନିରୀକ୍ଷା ବୋଲି କୁହାଯାଉଥାଏ । ସିଏ ଯେତିକି ଉପଲବ୍ଧି କରିଚି, ସିଏ କେବଳ ସେତିକି ମାତ୍ର ହିଁ କହିପାରିବ । ଯେଉଁ ପକ୍ଷୀ ଯେତିକି ଦୂର ଉଡ଼ିପାରିଚି, ସିଏ କେବଳ ସେତିକର ବାରତାକୁ ବହନ କରି ଆଣିପାରିବ । ସିଏ କେତିକି ଦେଖିଚି, କେବଳ

ସେଇ କଣ୍ଟକ କଥା କହିପାରିବ । କେବଳ ଶବ୍ଦକଳ୍ପ ଦେଇ କଣ୍ଟକ ଦେଖିଥିବା ମଣିଷ ବାଣ ମାରିବା ପରି ଶବ୍ଦକଳ୍ପର ରସକଦମକୁ ଗଚ୍ଛ କରି ଖଞ୍ଜି ଥୋଇ ଦେବ ସିନା; ମାତ୍ର ଆମକୁ କଣ୍ଟକର ବାରତା ଆଣି ଦେଇ ପାରିବ ନାହିଁ । ଶୈଳୀର ଗହନକୁ ଚଷି କବିତାର ପଟାଳଟିଏ ତିଆରି କରିବାରେ ଆଦୌ କୌଣସି ଦୋଷ ନାହିଁ; ମାତ୍ର ତଥାପି ଶୈଳୀଟା ଯେ କବିତା ନୁହେଁ, ଆମକୁ ସବୁବେଳେ ସେହି ସତ୍ୟଟିକୁ ମନେ ରଖିବାକୁ ହେବ । ହଁ, ଯେତେବେଳେ ମୁଁ କ'ଣ ଦେଖିଲି ବା ଉପଲବ୍ଧି କଲି, ତାହା ସହିତ ମୋ' କବିତାର ଆଦୌ କୌଣସି ସମ୍ପର୍କ ହିଁ ନଥାଏ, ସେତେବେଳେ ମୁଁ ହୁଏତ କେବଳ ଗୋଟାଏ ଶୈଳୀକୁ ଆୟତ୍ତ କରି ତାହାକୁ ହିଁ ଯେ ମୋ'ର କବିତା ବୋଲି ଦେଖାଇବାକୁ ଏକ ସରାଗ ପ୍ରକାଶ କରୁଥିବି, ଆମକୁ ଏକଥାଟିକୁ ମଧ୍ୟ ଅବଶ୍ୟ ମନେ ରଖିବାକୁ ପଡ଼ିବ । ଧର୍ମର ଆବେଦନକ୍ଷେତ୍ରରେ ଆପଣାର କୌଣସି ଉପଲବ୍ଧି ନଥାଇ କେବଳ ଭଲ ଭଲ ଚଟା ଓ ଚସିତତାରୁ ହିଁ ଯେପରି କୌଣସି ସମଝିଲା ଲୋକ ମୋତେ ଧର୍ମସ୍ଥ ବୋଲି କଦାପି କହିବାକୁ ଯିବ ନାହିଁ, ଠିକ୍ ସେହିପରି ମୋ'ର ଶବ୍ଦବସାଣ ଓ ଶୈଳୀକୁ ଦେଖି କବିତାର ପ୍ରକୃତ ସମଝଦାର ମୋତେ କଦାପି କବି ବୋଲି କହିବାର ଭ୍ରମରେ ପଡ଼ିବ ନାହିଁ । ଯଥାର୍ଥ କବିର ଜୀବନ ଓ କବିତା ମଧ୍ୟରେ ସବୁବେଳେ ଗୋଟାଏ ଅନ୍ତର୍ଗତ ଖିଅ ଲାଗି ରହିଥିବ । ତା'ର ଜୀବନ ତା'ର କବିତା ଲାଗି ଏକ ଅନ୍ତର୍ଦର୍ପଣ ହୋଇ ରହିଥିବ ଏବଂ ତା'ର କବିତା ତା'ର ଜୀବନ ଲାଗି ମଧ୍ୟ ଅନ୍ତର୍ଦର୍ପଣ ହୋଇ ରହିଥିବ ଏବଂ ଉଭୟେ ଏକ ସଚଳ ଜୀବନକୁ ନେଇ କେବଳ ତା'ର ଅନ୍ତର୍ଯାତ୍ରାର ହିଁ ସନ୍ଦେଶବାହକ ହୋଇ ରହିଥିବେ । ଏହି ସଂବୃତ୍ତ ହେଉଛି ଉପଲବ୍ଧି କରିବାର ଏକ ସମ୍ପଦ, ଆପଣାକୁ ଆପଣାର ଦର୍ପଣ କରି ପାରିବାର ଏକ ସାଧନାଫଳ, ଜଗତକୁ ଆପଣା ଉପରେ ଏବଂ ଆପଣାକୁ ଜଗତ ଉପରେ ନେଇ ନିର୍ଭୟ ହୋଇ ପ୍ରତିଫଳିତ କରି ପାରିବାର ଏକ ପରିଣାମ । ଏହା ଶୈଳୀର ସାଧ୍ୟ ନୁହେଁ କିମ୍ବା ବୁଦ୍ଧିଗତ ରୋମନ୍ଥନର କାର୍ଯ୍ୟ ନୁହେଁ, ହୁଏତ ଏହିପରି ଏକ ଅସଙ୍ଗତିରୁ ହିଁ ଆମର ଆଧୁନିକ କବିତା ଆଜି ଆଧୁନିକ ବାସ୍ତବ ତଥା ଆଧୁନିକ ଜୀବନର ସମଗ୍ରତାଠାରୁ ଏପରି ଦସ୍ତୁରମସ୍ତୁ ଭାବରେ ବିଚ୍ଛିନ୍ନ ହୋଇ ପଡ଼ି ରହିଛି । ଆଧୁନିକ ଆକୃତିର ସକଳ ସମାରୋହ ପାଖରେ ତାହା ଏଭଳି ଗୋଠଛିଣ୍ଡିଆ ହୋଇ ରହିଛି ।

ଖ୍ରୀଷ୍ଟ ତୃତୀୟ ଓ ଚତୁର୍ଥ ଶତାବ୍ଦୀରେ ଫ୍ରାନ୍ସ ଅର୍ଥାତ୍ ତତ୍କାଳୀନ Gaulର ଶିକ୍ଷିତ ଯୁବକମାନେ ଆପଣାର ବାସ୍ତବତା ଓ ଆପଣାର ପରିବେଶରୁ ହୁଏତ ଠିକ୍ ଏହିପରି ଭାବରେ ବିଚ୍ଛିନ୍ନ ହୋଇ ରହିଥିଲେ । ସେତେବେଳେ ସେମାନେ ରୋମସାମ୍ରାଜ୍ୟର ରାଜଭାଷା ଲାଟିନ୍‌ରେ ପାରଙ୍ଗମତା ଅର୍ଜନ କରୁଥିଲେ । ଅନେକ ଅଶିକ୍ଷିତ ଅର୍ଥାତ୍ ଶିକ୍ଷାବଞ୍ଚିତଙ୍କ ମଧ୍ୟରେ କତିପୟ ସେହିମାନେ ହିଁ ଏକମାତ୍ର ଶିକ୍ଷିତ ବୋଲାଉଥିଲେ; ଅର୍ଥାତ୍ ପରସ୍ପରଙ୍କୁ ଶିକ୍ଷିତ ବୋଲି ଗଣୁଥିଲେ । ବହୁଜନଙ୍କର କଥିତ ଭାଷା ସେଠି ଶିକ୍ଷାଳୟମାନଙ୍କରୁ ବର୍ଜିତ ହୋଇ ରହିଥିଲା, ବହୁଜନଙ୍କର ଜୀବନ ରାଜପୋଷିତ କତିପୟଙ୍କର ଜୀବନବିଳାସରୁ ଏକାନ୍ତ ବିଚ୍ଛିନ୍ନ ହୋଇ ରହିଥିଲା । ଲାଟିନ୍ କାବ୍ୟକଳା, ଲାଟିନ୍ ଶବ୍ଦମାଧୁର୍ଯ୍ୟ ତଥା ଲାଟିନ୍ ପରମ୍ପରାଗତ ଫେଶନ୍‌ଦ୍ୱାରା ପ୍ରଶିକ୍ଷିତ ଏହି ଯୁବକମାନେ କୁଆଡ଼େ ଅବସର ବିନୋଦନ ପାଇଁ ପରସ୍ପର ପାଖକୁ ଲାଟିନ୍ ଭାଷାରେ କବିତା ଲେଖି ପଠାଉଥିଲେ, ଏକାଠି ବସିଥିଲା ବେଳେ ସେଗୁଡ଼ିକର ଆପ୍ୟାୟନ କରୁଥିଲେ ଓ କେଉଁ ଲାଟିନ୍ କବିଙ୍କର କାବ୍ୟଗତ କେଉଁ ଫନ୍ଦା ବା ଫନ୍ଦାକୁ କିଏ କେତେ ଚାତୁର୍ଯ୍ୟର ସହିତ ଆପଣାର କବିତା ଭିତରେ ଫୁଟାଇ ପାରିଛି, ତାହାର ବିଶ୍ରମ୍ଭାଳାପ କରୁଥିଲେ । ଆମର ଆଧୁନିକ କବିମାନେ ଯାହା ଲେଖୁଛନ୍ତି, ସେମାନେ ମୂଳତଃ ପରସ୍ପର ଲାଗିହିଁ ସେସବୁକୁ ଲେଖୁଛନ୍ତି । ଆପଣା ଶୈଳୀଟିର ମୁଣ୍ଡି ମାରିବାଲାଗି ସେମାନେ ବିଦେଶର ଯେଉଁ ପରିବେଶରୁ ଆପଣାର ଚିହ୍ନକଳ୍ପ ଗୁଡ଼ିକୁ ଉଧାର କରି ଆଣୁଛନ୍ତି, ସେମାନେ ମର୍ମତଃ ତାହାରି ନିକଟବର୍ତ୍ତୀ ହୋଇ ରହିଛନ୍ତି । ଏଠିକା ପରିବେଶ ପାଖରୁ ଆପଣାକୁ ଅପହଞ୍ଚ ଓ ଏପରିକି ବାୟୁବାୟୁ କରି ରଖିଛନ୍ତି । ଉଦାହରଣ ସ୍ୱରୂପ ଆମ ଓଡ଼ିଶାର ଆଧୁନିକ କବି ଓଡ଼ିଶାର ଜନପରିବେଶ ଅପେକ୍ଷା ସବୁଠିଅବା ଆମ ଦେଶର ଅନ୍ୟାନ୍ୟ ରାଜ୍ୟରେ ତା'ରିଭଳି ଆଧୁନିକ କବିତାକୁ ନେଇ ପ୍ରୟୋଗ କରୁଥିବା ସମଧର୍ମୀମାନଙ୍କର ଅଧିକ ନିକଟବର୍ତ୍ତୀ ହୋଇ ରହିଛି; ଏବଂ ଇଂଲଣ୍ଡ ଓ ଆମେରିକାର ଅନୁରୂପମାର୍ଗୀ ଆଧୁନିକ କବିମାନଙ୍କର ଆହୁରି ଅଧିକ ନିକଟବର୍ତ୍ତୀ ହୋଇ ରହିଛି । ତାରି ସୂନା ସିଏ ସେଇଠୁ ଆଣିଛି, ଚୁଞ୍ଚିଗୁଡ଼ାକ ମଧ୍ୟ ସେଇଠୁ ଆଣିଛି;—ଏବଂ ଏଇଠି ଆମ ବଣିଆସାହିରେ ବଖରାଏ ଘର ଭଡ଼ା ନେଇ ସେ ଆପଣା ଗହଣାଗଢ଼ା କୌଶଳର ପ୍ରୟୋଗ କରିବାରେ ଲାଗିଛି । ଆପଣାକୁ ଭୁଲ ବା ତଉଲ ଦେଖିବାପାଇଁ ତା'ଲାଗି ଏହି ଭୂମିରେ ଆଦୌ କୌଣସି ତରାଜୁ ନାହିଁ,

ଆପଣାର ମୁହଁଟାକୁ ଦେଖିପାରିବା ଲାଗି ଏ ଦେଶର କୌଣସି ଦର୍ପଣ ତା'ର ପସନ୍ଦକୁ ଆସୁନାହିଁ । ସିଏ ଯେଉଁଠାରୁ ପ୍ରେରଣା ପାଇଛି, ସେଇଠୁ ଚଷ୍ମାକୁ ନେଇ ଆପଣାକୁ ଚଢ଼ଇଲୁଛି, ସେଇଠୁ ଦର୍ପଣ ମାଗିଆଣି ଆପଣାର ମୁହଁ ଦେଖୁଛି । ଅପଣାର ଏହି କସରତଟାକୁ ଅପେକ୍ଷାକୃତ କମ୍ ଆୟାସ-ସାପେକ୍ଷ କରିବା ଲାଗି ସେ ଅନେକ ସମୟରେ ଆପଣାର ଭାଷାରେ ଆଦୌ କୌଣସି କାଳକ୍ଷେପଣ ନ କରି ସିଧା ଇଂରାଜୀ ଭାଷାରେ କବିତା ଲେଖୁଛି ଏବଂ ଆଗ ସିଆଡ଼େ ଆନ୍ତର୍ଜାତିକ ଦରବାରରେ ସ୍ୱୀକୃତି ଲାଭ କରି ତା'ପରେ ଯାଇ ଏଠି ଘରେ ସିଂହାସନରେ ବସିବା ଲାଗି ଏଠାକୁ ଆସୁଛି । ଭୂଇଁଛଡ଼ା ମନ ଠିକ୍ ଏହିଭଳି ଏକ ମନ; ଭୂଇଁକୁ ଡରୁଥିବା ମନ ଠିକ୍ ଏହିଭଳି ଏକ ମନ । ଏବଂ ଆଧୁନିକ କବିତାର ଏକାଧିକ କ୍ଷେତ୍ରରେ ଆମର କବି ବୋଧହୁଏ ମୂଳତଃ ଏହି ଭୂଇଁର ଉପରେ ହିଁ ଭୂଇଁଛଡ଼ା ହେବାକୁ ହିଁ ଆନ୍ତର୍ଜାତିକ ହେବା ବୋଲି ବିଚାରୁଛି; ଏକା ଖେପାକେ ସିଧା ସେଇଠିକୁ ଡେଇଁ ଚାଲି-ଯିବାକୁ ଲୋଭ କରୁଛି; ସେଇ ଘରେ ମାଉସୀ କରି ବୁଲୁଛି, ସେଇ ଘରେ ପିଉସୀ କରି ବୁଲୁଛି । ତା' କବିତାର ବେଲୁନ୍ ଗୁଡ଼ାକ ଭିତରେ କେତେ ମନ୍ତ୍ରେ ଫୁଙ୍କା ହୋଇ ସେହିସବୁ ଦେଶର ପବନ ପଶିଛି, ଉପର ଖୋଳପା-ଗୁଡ଼ାକରେ ସେହିସବୁ ଦେଶର ରଙ୍ଗରେ ଯୁକ୍ତି ଦିଆଯାଇଛି । ତେଣୁ ଏ ଦେଶର ପାଠକ ଆଖିକୁ ସେଗୁଡ଼ାକ ଅନେକ ସମୟରେ ବଡ଼ ବିବର୍ଣ୍ଣ ଦେଖାଯାଉଛି । ଏହି ଦେଶର ପାଠକ ସେଗୁଡ଼ାକୁ ଦୁର୍ବୋଧ ବୋଲି କହୁଛି, କେବେକେବେ ଅବୋଧ ବୋଲି ବି କହି ପକାଉଛି । ତେଣୁ ଅନାବଶ୍ୟକ ବୋଲି ବର୍ଜନ କରୁଛି ।

ହଁ, ଆଧୁନିକ କବିତା ପ୍ରାୟ ସ୍ୱଭାବତଃ ଦୁର୍ବୋଧ, ଏବଂ ଅନେକ ସମୟରେ ଅବୋଧ । ନାନା କାରଣରୁ ଯେଉଁମାନେ ଆଧୁନିକ କବିତାକୁ ସହି ପାରନ୍ତି ନାହିଁ ଓ ତାହାକୁ ପାଠକମାନଙ୍କ ଉପରେ ଆଧୁନିକ କବିତାବାଦୀମାନଙ୍କର ପ୍ରାୟ ଏକ ଅପୌରୁଷିକ ଆକ୍ରମଣ ବୋଲି ମନେ କରନ୍ତି, ସେହିମାନେ ହିଁ ପ୍ରତିଆକ୍ରମଣ ଛଳରେ ଆଧୁନିକ କବିତାକୁ ଦୁର୍ବୋଧ ବା ଅବୋଧ ବୋଲି ଅପବାଦ ଦେଇଥାନ୍ତି । ପୁଣି, ଯେଉଁମାନେ ପୁରୁଣା ପରମ୍ପରା ଅନୁସାରେ ଅକ୍ଷରକୁ ଅକ୍ଷର ମିଳାଇ ଓ ପଦକୁ ପଦ ବସାଇ କବିତା ଲେଖି ଆସୁଥିଲେ, ଏବଂ କବିତା ଭିତରକୁ ଏହି ଆଧୁନିକ ହାଉଆଟା ଆସି ପଶିବା ପରେ ଦୁର୍ଯୋଗଗତ ନାନା କାରଣରୁ ଆପଣାକୁ ସତେ ଅବା ସିଂହାସନଚ୍ୟୁତ

ପରି ମନ୍ଥନ କରିବାକୁ ଲାଗିଲେ, ସେମାନେ ମଧ୍ୟ ଆପଣା ଆପଣା ଭିତରେ ଦୁଃଖସୁଖ ପଡ଼ିଥିଲା ବେଳେ ଆଧୁନିକ କବିତାର ଦୁର୍ବୋଧତା ବା ବୋଧଶୂନ୍ୟତାକୁ ନେଇ କେତେ କିସମର ରହସ୍ୟ କରିଥାନ୍ତି, କବିତାର ମାର୍ଜିତ ଓ ସ୍ୱୀକୃତ ନଗରବେଷ୍ଟରରେ ଆଧୁନିକମାନଙ୍କର ଝଡ଼ପ୍ରାୟ ପ୍ରବେଶକୁ ସେମାନେ ସତେ ଅବା ବର୍ବରମାନଙ୍କର ଏକ ବଳାତ୍କାର ପ୍ରବେଶ ବୋଲି ବିଚାରି ଥାଆନ୍ତି । ଆଧୁନିକମାନେ ମଧ୍ୟ ସମ୍ବାଦଦାରର କେହି ଜଣେ ସେମାନଙ୍କର କବିତାକୁ ଦୁର୍ବୋଧ ବା ଅବୋଧ ବୋଲି କହିଦେଲେ ହୁଏତ ସବୁଠାରୁ ଅଧିକ ବିରକ୍ତ ହୋଇଉଠନ୍ତି ଏବଂ ସେହି ବିରକ୍ତିଟାକୁ ହିଁ ଏକ ସିଦ୍ଧାନ୍ତସ୍ୱରୂପ ବହିଃପୃଷ୍ଠ ଦେଇ ଲୁଚାଇ ରଖିବାର ଚେଷ୍ଟା କରୁଥିବା ବେଳେ ସେମାନେ ଆଧୁନିକ କବିତା ଅଲବତ୍ ଅବୋଧ ହେବାକୁ ବାଧ୍ୟ ହେବ ବୋଲି ଯୁକ୍ତି ବା ଦାବୀ କରିଥାନ୍ତି । ମାତ୍ର ପ୍ରକୃତ କଥା ହେଉଛି ଯେ, ଆଧୁନିକ କବିତା ଅବୋଧ ବା ଦୁର୍ବୋଧ ହେବା ପଛରେ ସେଭଳି କୌଣସି ଅସ୍ୱାଭାବିକତା ଆଦୌ ନାହିଁ, ଯାହାକୁ କି ପ୍ରକୃତରେ ଗୋଟାଏ ସମସ୍ୟା ବୋଲି କୁହାଯିବ ଅଥବା ଯାହାକୁ ଲୁଚାଇବାକୁ ଯାଇ ଅସ୍ୱାଭାବିକତାକୁ ହିଁ ସ୍ୱାଭାବିକତା ବୋଲି ଦେଖାଇବା ଆବଶ୍ୟକ ପଡ଼ିବ । ଆଧୁନିକ ପୁରାତନ ପାଖରେ ଅବୋଧ ହେବ, ନୂଆ ପରମ୍ପରା ପୁରୁଣା ପରମ୍ପରା ପାଖରେ ଅବୋଧ ହେବ, ଏଇଟା ତ ଅତ୍ୟନ୍ତ ସ୍ୱାଭାବିକ; ପୁଣି ବୁଦ୍ଧି ମଧ୍ୟ ହୃଦୟ ପାଖରେ କେବଳ ଏକ ଖଣ୍ଡିତ ଭୂମିପରି ଦେଖାଯିବ ଓ ହୃଦୟ ମଧ୍ୟ ବୁଦ୍ଧି ଲାଗି ଏକାନ୍ତ ଅବୋଧ ହୋଇ ରହିବ, ଏକଥା ମଧ୍ୟ ଅତ୍ୟନ୍ତ ସ୍ୱାଭାବିକ । ତେଣୁ ଆପଣାକୁ ବୁଝିଥିବା ପର୍ଯ୍ୟନ୍ତ ବୁଦ୍ଧି କେବେହେଲେ ହୃଦୟ ସହିତ ଝଗଡ଼ା କରିବାକୁ ଯିବନାହିଁ । ପୁରୁଣାମାନଙ୍କ ପାଖରେ ଆମ ଆଧୁନିକମାନେ ଯେପରି ଅବୋଧ ହୋଇ ରହୁଛନ୍ତି, ଆଧୁନିକମାନଙ୍କ ପାଖରେ ପୁରୁଣାମାନେ ବି ଠିକ୍ ସେମିତି ଅବୋଧ ହୋଇ ରହୁଛନ୍ତି । ଅବୋଧତାଟା ଆମଲାଗି ଶକକଢ଼ା ଶବ୍ଦ ଭଗ ଅବଶ୍ୟବୋଧ ହେଉ ବୋଲି ଦାବୀ କରୁଥିବା ପର୍ଯ୍ୟନ୍ତ ଝଗଡ଼ାଟା ନିଶ୍ଚୟ ଲାଗି ରହିଥିବ, ଯେତେ ଧରାପରା ଲାଗିଥିଲେ ମଧ୍ୟ କେହି କାହା ପାଖରେ ମୋଟେ ଧରାଛୁଆଁ ଦେଉନଥିବେ । ମାତ୍ର ଅବୋଧତାର କାରଣଗୁଡ଼ାକୁ ବୁଝିବା ପାଇଁ ଅନ୍ତତଃ ଏକ ଚେଷ୍ଟା ସବୁବେଳେ ନିଶ୍ଚୟ କରାଯାଇ ପାରିବ; ହୁଏତ ତେବେଯାଇ ପ୍ରତ୍ୟେକେ ଆପଣା ଆପଣାକୁ ବୁଝିବା ଲାଗି ମଧ୍ୟ କେତେକ ସୁରାଖ ପାଇପାରିବେ ଓ ତାହାର ସାହାଯ୍ୟରେ

ପରସ୍ପରକୁ ବୁଝିବା ଲାଗି ଅଧିକ ଉପଯୁକ୍ତ ହୋଇପାରିବେ । ବୁଦ୍ଧିକୁ ଅପାଂକ୍ତେୟ ବୋଲି ମଣୁଥିବା ଅଥବା ବୁଦ୍ଧିକୁ ଭୟ କରୁଥିବା ତଥାକଥିତ ହୃଦୟ କିମ୍ବା ଆପଣାକୁ ହୃଦୟ ପାଖରୁ ଅସ୍ପୃଶ୍ୟ କରି ରଖିଥିବା ତଥାକଥିତ ବୁଦ୍ଧି ତଦ୍ଦ୍ୱାରା ଉଭୟେ ଅଧିକ ସମର୍ଥ ଭାବରେ ଆପଣାକୁ ବୁଝିପାରିବେ ଓ ନୂଆ ଆଖିରେ ପରସ୍ପରର ଅଧିକ ନିକଟବର୍ତ୍ତୀ ହେବାକୁ ସାହସୀ ହୋଇ ପାରିବେ ।

ଆଧୁନିକ କବି ମୂଳତଃ ଆପେ ଆପଣା ପାଖରେ ଅବୋଧ, ତେଣୁ ତା'ର କବିତା ମଧ୍ୟ ସର୍ବଜନ ପାଖରେ ଅର୍ଥାତ୍ ପାଠକଜନ ପାଖରେ ଅବୋଧ । ତା'ର କବିତା ତା' ଆପଣା ଉପଲବ୍ଧିର ଏକ ସାମଗ୍ରୀ ହୋଇଥିଲେ ସିନା ତା'ର ନିଜ ପାଖରେ ବୋଧ ହୋଇପାରି ଥାଆନ୍ତା; ଫୁଲ ଆଉ ଫଳ ଭିତରେ ଯେଉଁ ଧର୍ମଗତ ସମ୍ବନ୍ଧଟି ରହିଥାଏ, ଆଧୁନିକ କବି ଓ ତା'ର କବିତା ଭିତରେ ମଧ୍ୟ ସେହିପରି ଏକ ସମ୍ବନ୍ଧିତତା ରହିଥାନ୍ତା । ଫୁଲଟିଏ ହୋଇ ଫୁଟିଉଠିବା ଅର୍ଥାତ୍ ଆପଣାର ସମଗ୍ର ପତ୍ରପୁଟରେ ପ୍ରକାଶିତ ହୋଇଉଠିବା, ଆପଣା ଆଗରେ ଆପେ ଏକ ସ୍ୱରୂପ ଅର୍ଥାତ୍ ସମଗ୍ର ଏକକତାରେ ଉଦ୍ଭାସିତ ହୋଇ ଉଠିବା । ମଣିଷ ଯେତିକି ସମ୍ପଦର ଉପଲବ୍ଧି କରିଥାଏ, ସେ କେବଳ ସେତିକି ସମ୍ପଦକୁ ସମଗ୍ର ଭାବରେ ଆପଣାର ସମକ୍ଷରେ ଉନ୍ମୋଚିତ କରି ଧରି ରଖିପାରେ । କେବଳ ଯେତିକିମାତ୍ର ଏହିପରି ଭାବରେ ଉପଲବ୍ଧ ହୁଏ, ସେତିକି ହିଁ ଅବୋଧତା ମଧ୍ୟରୁ ବୋଧତାର ଭୂମିରେ ଆସି ଅବତୀର୍ଣ୍ଣ ହୁଏ । ଆମକୁ ଅନ୍ତର୍ଗତ ଭାବରେ ଆପଣାର ଅନୁଭବରେ ଯାହା କିଛି ମିଳିଥାଏ, ଆମେ କେବଳ ସେତିକିକୁହିଁ ଯଥାର୍ଥରେ ଆମର ଉପଲବ୍ଧି ବୋଲି କହି ପାରିବା । ଆପଣାର ବିଚରଣ କ୍ଷେତ୍ରରେ ଆଧୁନିକ କବି ଏକାବେଳେକେ କେତେ ଇଲାକାରେ ଫାଳଫାଳ ହୋଇ ରହିଥାଏ, କେତେକେତେ ଅର୍ଗଳ ଦ୍ୱାରା ସେ ଆପଣା ଭିତରେ ବଡ଼ ଶୋଚନୀୟ ଭାବରେ ବିଭକ୍ତ ହୋଇ ରହିଥାଏ । ତା' ଜୀବନର ଅନ୍ତଃପୁର ଭିତରେ ହୁଏତ ଏ ଅଗଣାର ସମ୍ବାଦ ଓ ସମାସ୍ୱାଦନଗୁଡ଼ାକ ସେ ଅଗଣା ପାଖରୁ ଅଗୋଚର ହୋଇ ରହିଥାଏ । ତା'ର ଏ ଦୁଆରେ ଶଜଟା ଓ ବଙ୍କା ନାଚୁଥାନ୍ତି ତ ସେ ଦୁଆରେ ପ୍ରଳମ୍ବା ନାଚୁଥାଏ ଏବଂ ଫଳରେ ତାକୁ ଏକାବେଳେକେ କେତେ ପ୍ରକାର ଅରିନ୍ଦମ ସାଜି ଅସୁର ମାରିବାରେ ମତ୍ତ ହୋଇ ରହିବାକୁ ପଡ଼ୁଥାଏ । ତା'ର ବାହାର ସହିତ ଭିତରର ଯୋଗାଯୋଗ ନଥାଏ, ତା'ର ପୋଷାକୀ

ତା' ଆଖପାଖଗୁଡ଼ାକ ପାଖରୁ କେତେ ଛଟକ ଓ ଛନ୍ଦଭ୍ରମରେ ଚଡା କାଟି ବୁଲୁଥାଏ, ତା'ର ଅନ୍ଧାରଗୁଡ଼ାକ ତା'ର ଆଲୁଅକୁ ସତେ ଯେପରି ଖାଲି ଫାଙ୍କି ଦେବାକୁ ଲାଗିଥାନ୍ତି । ତା'ର ଯାହା ହେବା ଉଚିତ, ଅର୍ଥାତ୍ ଆପଣାର ଅନ୍ତରଙ୍ଗତମ ବାସନାରେ ସିଏ ଯାହା କରୁ ହେବାକୁ ଇଚ୍ଛା କରୁଛି, ସେଇଟା ସହିତ ସଂସାରର ଯାଗ ଓ ବରାଦ ଅନୁସାରେ ତାକୁ ବାଧ୍ୟ ହୋଇ ଯାହାସବୁ ହେବାକୁ ପଡ଼ୁଛି, ତାହାର ଆଦୌ କୌଣସି ସମ୍ବନ୍ଧ ନଥାଏ । ଅର୍ଥାତ୍, ସାକାରାତ୍ମକ ଭାବରେ କହିଲେ, ଦୁଇଟାଯାକ ମଧ୍ୟରେ ସତତ ଏକ ଜିଘାଂସା-ମୂଳକ ଦ୍ୱନ୍ଦ୍ୱ ଲାଗି ରହିଥାଏ । ଏପରି ଏକ ସନ୍ତାପିତ ମଣିଷ ଅନୁଭବ ସହିତ ପ୍ରକୃତରେ କପରି କ ଭାବ ଲଗାଇ ପାରିବ, ଉପଲବ୍ଧି ବା କ'ଣ କରି ପାରିବ ? ଅନ୍ୟ ମଣିଷ ଗୁଡ଼ାକ ତାକୁ କପରି ବା ମଣିଷ ପରି ଦେଖାଯିବେ, ବାହାରେ ଏବଂ ଭିତରେ ଧୀର ନିଶ୍ଚଳ, ଏକାନ୍ତ ଅଥଚ ସମଗ୍ର ହୋଇ ସେ ସେମାନଙ୍କ ଆଡ଼କୁ କପରି ବା ଅନାଇ ପାରିବ ? ଆପଣାର ଅନ୍ତଃସନ୍ତାପ-ଗୁଡ଼ାକୁ ବିଶ୍ୱମୟ କରି ଦେଖିବା ବ୍ୟତୀତ ସେ ପ୍ରକୃତରେ ଆଉ ଅଧିକ କ'ଣ କରି ପାରିବ ? ଆପଣାକୁ ଆପଣା ସମକ୍ଷରେ ଗୋଟାଏ ଖୋଲା ବହି ପରି ପକାଇ ଧରିପାରିବା ସକାଶେ ତା' ଭିତରେ ସାହସ କେଉଁଠାରୁ ଆସିବ ଏବଂ ସମ୍ପୂର୍ଣ୍ଣ ଅର୍ଥାତ୍ ଶ୍ରଦ୍ଧାଯୁକ୍ତ ଭାବରେ ସଂସାର ଆଡ଼କୁ ଚାହିଁ ପାରିବାଲାଗି ତା'ର ଫୁରସତ ବା କୁଆଡ଼ୁ ଆସିବ ଏବଂ ଏପରି ଏକ ଜୀବ ଆପଣା ପାଖରେ କପରି ବୋଧ ହୋଇପାରିବ ? ସେ ନିଜ ଭିତରେ କେବଳ ଏ ଖଣ୍ଡଟାଠାରୁ ସେ ଖଣ୍ଡଟାକୁ ବିଚ୍ଛିନ୍ନ କରି ଜାଣିବାକୁ ଚେଷ୍ଟା କରୁଥିବ, ବା ଏ ଖଣ୍ଡଟାକୁ ଏକାବେଳେକେ ଉତ୍ଫୁଲ୍ଲ କରି ରଖି ତେବେ ଯାଇ ସେ ଖଣ୍ଡଟାକୁ ଦେଖିବାଲାଗି ସମର୍ଥ ହେବ । ଏହି ମୁହୂର୍ତ୍ତଟାକୁ ସେହି ମୁହୂର୍ତ୍ତଟାଠାରୁ ଅଲଗା କରି ଜାଣୁଥିବ, ଦଣ୍ଡକର ଶାନ୍ତି ପାଇବାପାଇଁ ବିହ୍ୱଳ ଓ ବ୍ୟାକୁଳ-ଗଣ୍ଡସ୍ଥଳ ହୋଇ ଧାଇଁବାରେ ଲାଗିଥିବ ଏବଂ ଆପଣାର ଅନ୍ତ ନ ପାଇଥିବା ପର୍ଯ୍ୟନ୍ତ ଅର୍ଥାତ୍ ଆପଣାର ସମଗ୍ର ପରିଚୟଟିର ସକ୍ଷ୍ୟଟିକୁ ଅଲୋଡ଼ା କରି ରଖିଥିବା ପର୍ଯ୍ୟନ୍ତ ସେ ଅନ୍ୟମାନଙ୍କ ପାଖରେ ପାଠକ ହାଟରେ ବା କପରି ବୋଧ ହୋଇପାରିବ ?

ଆଧୁନିକ କବିମାନେ ପରସ୍ପର ପାଖରେ ମଧ୍ୟ ଅବୋଧ । କାରଣ ସେମାନେ ପରସ୍ପରକୁ ମୂଳତଃ କବିଭାବରେ ନୁହେଁ, ମାତ୍ର କେବଳ ଜଣେ ଜଣେ କାରିଗର ଭାବରେ ହିଁ ଅନୁଭବ କରିଥାନ୍ତି ଏବଂ ଜଣେ କାରିଗର ଆଉ ଜଣେ

କାଗଜରକୁ ଈର୍ଷା କଲାପରି ସତେଅବା ସ୍ୱଧର୍ମପ୍ରଣୋଦିତ ହୋଇ ଏମାନେ ମଧ୍ୟ ପରସ୍ପରକୁ ଈର୍ଷା କରିଥାନ୍ତି । ପରସ୍ପରକୁ ଗ୍ରହଣ କରନ୍ତି ନାହିଁ, ପରସ୍ପରକୁ ହଜମ କରନ୍ତି ନାହିଁ, ପରସ୍ପରର ମଣୋହିରେ ଯାଇ ବସିବାକୁ ମନ କରନ୍ତି ନାହିଁ, ମାତ୍ର ସତେଅବା ପରସ୍ପରକୁ ଟପି ଯିବାଲାଗି ନିରନ୍ତର ଘାଣ୍ଟିଚକଟି ହେବାରେ ଲାଗିଥାନ୍ତି । ବନ୍ଧାଣି ବନ୍ଧାଣିକୁ ଈର୍ଷା କରେ, ସିଏ ତାକୁ ଟପିଯିବାକୁ ଚାହୁଥାଏ, ପଥ ଉପରେ କେବଳ ଆପଣାକୁ ହିଁ ଦେଖୁଥାଏ । କବି କବିକୁ ଈର୍ଷା କରେନାହିଁ, ଜଣେ କବି ଆଉ ଜଣେ କବିକୁ ଆପଣାର ସାଥୀ ବାଟୋଇ ରୂପେ ଗ୍ରହଣ କରେ, ତାର ଦୃଷ୍ଟି ଓ ଅନୁଭୂତିରୁ ନିଜେ ମଧ୍ୟ ଉପକୃତ ହେବାର ଯୋଗ୍ୟତା ରଖିଥାଏ । ମୁଁ ଯାହାକୁ କେବଳ ଆପଣାର ଜଣେ ପ୍ରତିଦ୍ୱନ୍ଦୀ ବୋଲି ହିଁ ଦେଖୁଥିବି ଓ ଯାହାକୁ ଈର୍ଷା କରୁଥିବି, ତାକୁ ମୁଁ ଆପଣାପାଖରେ କପରି ବୋଧ କରିପାରିବି, କପରି ତା' ପାଖରେ ଯାଇ ବସିପାରିବି ଓ ତା'ର ସମୀକ୍ଷା କରିପାରିବି ? କେବଳ ତା'ର ଦୁର୍ଗରେ ରହିଥିବା ଛିଦ୍ର ଗୁଡ଼ିକର ଅନ୍ୱେଷଣ କରିବା ବ୍ୟତୀତ ମୋର ଆଉ କାହିଁକି ଅନ୍ୟ କୌଣସି ଧନ୍ଦା ରହିବ ? ହୁଏତ ଏହିପରି ଏକ କାରଣରୁ ଆମ ଦେଶରେ ଆଧୁନିକ କବିମାନଙ୍କର ଯାବତୀୟ ଗହଣ ମୁଖ୍ୟତଃ ଏକଶିଙ୍ଗିଆ-ମାନଙ୍କର ହିଁ ଏକ ଗହନ ପରି ମନେ ହୋଇଥାଏ । ସେମାନେ ସମସ୍ତେ ହୁଏତ ଏକା ବିଷୟରେ ଚର୍ଚ୍ଚା କରୁଥାନ୍ତି, ଆପଣା ଆପଣା ବେକରେ ସେହି ଗୋଟିଏ ପ୍ରକାରର କଣ୍ଠିମାଳ ଲମ୍ବାଇ ବସିଥାନ୍ତି; ମାତ୍ର ତଥାପି ସତେ ଅବା ଅଲଗା ଅଲଗା ଆଡ଼କୁ ମୁହଁ କରି ବସିଥାନ୍ତି । କେହି କାହାରିକୁ ଦେଖି ପାରୁନଥାନ୍ତି, ଭରସା ଦେଲାପରି କେହି କାହାରିକୁ ଅନାଇ ପାରୁନଥାନ୍ତି ଏବଂ ପ୍ରତ୍ୟେକେ ପ୍ରତ୍ୟେକ ପାଖରେ ଅବବାଧ ହୋଇ ରହିଥାଆନ୍ତି, ଗୋଟାଏ ଗୋଟାଏ ସୁପ୍ତ ଓ ଧୂମଗର୍ଭ ଆଗ୍ନେୟଗିରି ପରି ହୋଇ ରହିଥାନ୍ତି ।

ଆଧୁନିକ କବିତା ହେଉଛି ବିକଳ୍ପପ୍ରଧାନ କବିତା, ଆଧୁନିକ କବିତା'ର ଧନ୍ଦା ହେଉଛି ବିକଳ୍ପରୁ ଗୁଡ଼ି ତିଆରି କରି ଏକ ଧୂସର ଗଗନ ଉପରେ ନେଇ ଉଡ଼ାଇବାର ଧନ୍ଦା । ଅନେକ ସମୟରେ ସିଧା ବିଦେଶରୁ ହିଁ ସେହି ଗୁଡ଼ି ଗୁଡ଼ାକ ସରବରାହ ହୋଇ ଆସିଥାଏ; ସୂତା ଏବଂ ସୂତାରେ ଦିଆଯାଇ ଥିବା ମାଞ୍ଜା ତ ବଡ଼ ନିଃସନ୍ଦେହ ଭାବରେ ସିଆଡ଼ୁ ଆସିଥାଏ । ସିଆଡ଼ୁ ଆସିଥାଏ ବୋଲି କହିବାବେଳେ କାହାକୁ ଯେ କୌଣସି ଦୋଷ ବା

ଅପବାଦ ଦିଆଯାଉଛି, ସେଭଳି ଭାବିବା ଆଦୌ ଉଚିତ ହେବନାହିଁ । ଆମର ଏହି ବିଂଶ-ଏକବିଂଶ ଶତାବ୍ଦୀରେ ଭାବ ତଥା ଭାବଚିନ୍ତାର ନେଣ-ଦେଣ ଉପରେ ଆଦୌ କୌଣସି କଟକଣା ରହିବା ଉଚିତ ନୁହେଁ, ଭୂଗୋଳଗତ କୌଣସି ପ୍ରକାର ବିସ୍ତ୍ରୀସ୍ମୃତା ଜାରି ହୋଇ ରହିବା ଆଦୌ ଉଚିତ ନୁହେଁ । ମାତ୍ର ଯାହା ସେଦେଶରୁ ଏଦେଶକୁ ଆସିଲା, ଅଥବା ସେଠି କୌଣସି ମୁଣ୍ଡରୁ ମୋର ମୁଣ୍ଡ ଭିତରକୁ ଆସିଲା, ସେଇଟା ଏଠି ମୋ' ବାସନରେ ପରୀକ୍ଷାଯାଇ ପାରିବା ଉଚିତ, ମୋର ଅମଳରେ ଉଠୁଟି ପାରିବା ଉଚିତ । ମୋର ଭାବଦୃଷ୍ଟି ଉପରେ ପରିପାଚିତ ତଥା ନିଜସ୍ୱ ହୋଇ ପାରିବା ଉଚିତ । ମାତ୍ର ଆପଣାର କଥାଖିଆ ଭିତରେ ପକାଇ, ଭାଙ୍ଗି ଓ ଗୁଣ୍ଡ କରି, ତାକୁ ମୋ' କଥାଖିର ମାଟିରେ ପରିଣତ କରିବାର ଅଭିପ୍ରାୟରେ ମୁଁ ସେଠି ଆଜି ଯେଉଁ କଥାଖିରୁ ଟେଳା ଓ ଡେଲିସବୁ ସଂଗ୍ରହ କରିବାକୁ ବାହାରିଛି, ସେଇଟା ଭିତରେ ମଧ୍ୟ ମୋର ପୂର୍ଣ୍ଣ ବା ଯଥେଷ୍ଟ ପ୍ରବେଶ ରହିଥିବା ଦରକାର, ତାହା ବିଷୟରେ ମୋ'ର ଯଥେଷ୍ଟ ଅବଗତି ରହିଥିବା ଦରକାର । ତା' ନହେଲେ ମୋର ବହୁ ଉତ୍ସାହରେ ମାଗି ଆଣିଥିବା ଡିଅଣଟା ମୋଟେ ଡିଅଣ ପରି ଲାଗିବନାହିଁ, ଭିକ୍ଷା ମାଗି ଅଣିଥିବା ପରି ହିଁ ଲାଗିବ । ଆମ ଆଧୁନିକ କବିତାର ଅଧିକାଂଶ ସ୍ଥଳରେ ବର୍ତ୍ତମାନ ଠିକ୍ ସେଇ ମାଗିଆଣିଲା ପରି ହିଁ ଲାଗୁଛି । ଯେକୌଣସି ବିକଳ୍ପ, ତାହା ଏଠାକାର ହୋଇଥାଉ କିମ୍ବା ଅନ୍ୟ କୌଣସିଠାରୁ ମାଗିକରି ଅଣା ଯାଇଥାଉ ପଛକେ, ତାହାକୁ ଆମେ କେବଳ ଏକ ଚିତ୍ରକଳ୍ପମାତ୍ର ବୋଲି କଦାପି କହି ପାରିବା ନାହିଁ । ଯେକୌଣସି ଚିତ୍ରକଳ୍ପ ପଛରେ ଏକ ଇତିହାସ ଅର୍ଥାତ୍ ସମ୍ଭବକାହାଣୀ ରହିଛି, ଭବଧର୍ମୀ ଏକ ଇଙ୍ଗିତ ରହିଛି, ଏକ ବ୍ୟଞ୍ଜନା ମଧ୍ୟ ରହିଛି । ତେଣୁ ଯେକୌଣସି ଚିତ୍ରକଳ୍ପକୁ ସୁରୁଚି ତଥା ସୁଦକ୍ଷ ଭାବରେ ବ୍ୟବହାର କରି ତାହାକୁ ଆପଣାର ଭୂମି ଉପରେ ଉଠୁଟାଇ ପାରିବାକୁ ହେଲେ ଆମକୁ ତାହାର ସାଂସ୍କୃତିକ ଓ ପରିବେଶଗତ ସମଗ୍ର ଆଧାରଟିରେ ପ୍ରବେଶ କରିଥିବା ଆବଶ୍ୟକ ହେବ । ଗୋଟିଏ ସଂସ୍କୃତିରେ ପରିପାଳିତ ହୋଇ ଆଉ ଗୋଟିଏ ସଂସ୍କୃତିର ପ୍ରାଣନାଡ଼ୀଟିକୁ ଅବିହ୍ୱଳ ଭାବରେ ଅଥଚ ସହାନୁଭୂତି ସହିତ ଚହ୍ଲିବା ଆଦୌ ସହଜ ନୁହେଁ । ପୁଣି ଆମ ଦେଶରେ ସାମାଜିକ ଇତିହାସଗତ ଏକାଧିକ କାରଣରୁ ଇଉରୋପୀୟ ଭାଷା ଓ ସାହିତ୍ୟପ୍ରତି ସାଧାରଣତଃ

ସେଉଁଭଳି ଏକ ଅତିବହୁଳ ବିଗଳିତ ମନୋଭାବ ସୃଷ୍ଟି ହୋଇଛି ଓ ସେହି ମନୋଭାବକୁ ଅନେକ ସମୟରେ ଯେପରି ମାର୍ଜିତ ରୁଚି ବୋଲି କୁହା-ଯାଉଛି, ସେଥିରେ ତଥାପି ଅବହେଳି ରହି ସେଠୁ ମୁକ୍ତାଫଳଗ୍ରହ କରି ନିବାର ସାଧନା ଆହୁରି ଅଧିକ ଦୁରୂହ ହୋଇ ପଡ଼ୁଛି । ଏହି ସାଧନାରେ ଅନ୍ତତଃ କେତେକ ପରିମାଣରେ ସିଦ୍ଧିଲାଭ କରିବା ମଧ୍ୟରେ କ୍ଷେତ୍ରଗତ ସେଉଁ ଭାରସାମ୍ୟଟି ରହିବା ସବୁବେଳେ ଉଚିତ, ଆମର ଏଠି ତାହା ନିୟମତଃ ହିଁ ଦେଖାଯାଏ ନାହିଁ । ଅର୍ଥାତ୍ ଆପଣାର ସଂସ୍କୃତି ଉପରେ ଦମ୍ଭ ହୋଇ ଠିଆ ହୋଇ ଆଉ ଏକ ସଂସ୍କୃତିରୁ ମୁକ୍ତା ଆହରଣ କରିବାର ଅବକାଶ ହିଁ ଅଧିକାଂଶଙ୍କ ପାଖରେ ନଥାଏ । ଆମର ଶାସ୍ତ୍ର, ଆମ ପ୍ରାକ୍-ପରମ୍ପରା ଓ ଚିନ୍ତକଲୋକ ସୃଜିବାରେ ଆମର ନିଜସ୍ୱ ଗ୍ରନ୍ଥଟିକୁ ଅଧିଗମି ପାରିଥିଲେ ଆମ ପକ୍ଷରେ ବାହାରୁ ନେଇଁ ସାଉଁଟିବାଟା ଅଧିକ ସାର୍ଥକ ଓ କାର୍ଯ୍ୟସାଧକ ହୋଇ ପାରନ୍ତା । ମାତ୍ର ଆମର ଅତି ଦୁର୍ଭାଗ୍ୟ ଯେ, ସେଉଁମାନେ ଆମ ଏଠିକା ସମ୍ପଦ ଗୁଡ଼ିକର କଣ୍ଟିଏ ଖବର ରଖିଥାନ୍ତି, ସେମାନେ ଅନ୍ୟ ଦେଶର ଯାବତୀୟ ସମ୍ପଦକୁ ଖାଲି ହିନୋଚ୍ଚାୟ ମଣି ନାକ ଟେକନ୍ତି । ଏବଂ ଯେଉଁମାନେ ସେଠାରୁ କିଛି ଆଣି ଏଠି ଆମ ଘରଟିକୁ ସଜାଇବେ ବୋଲି ସରାଗୀ ହୁଅନ୍ତି, ସେମାନେ ଏଠି ରହିଥିବା ସକଳ ସଂଗ୍ରହକୁ ନାକ ଟେକନ୍ତି । ତେଣୁ ଏମାନେ ଯେତିକି ଚାହାନ୍ତି, ତାହାକୁ ଖାଲି ଉପରଠାଉରିଆ କରି ଚାହାନ୍ତି; ସେଠୁ ଯାହାସବୁ ଆଣନ୍ତି, ହୁଏତ କେବଳ ଉପରଟାରୁ ହିଁ ଦୁହିଁକରି ନେଇ ଆସନ୍ତି । ସେହି କାରଣରୁ, କେବଳ ବେଶ ଓ କେଶରେ ଆଧୁନିକ ହେବା ଦ୍ୱାରା ଯେତିକି ଆଧୁନିକ ହେବା ସମ୍ଭବ ହୁଏ, ମାଗି ଅଣାଯାଇଥିବା ଅର୍ଦ୍ଧବୋଧ ଚିନ୍ତକଲୋ ଦ୍ୱାରା ଆଧୁନିକ ଅବାଗିଆ ଶୈଳୀରେ କବିତା ଲେଖି ବସିଲେ ଆଧୁନିକ କବି ହେବା ମଧ୍ୟ ପ୍ରାୟ ସେତିକି ପରିମାଣରେ ସମ୍ଭବ ହୁଏ, ଏବଂ କବି ଓ କବିତା ଉଭୟେ ନାନା କୁହୁଡ଼ି ଭିତରେ ଅବୋଧ ହୋଇ ରହିଯାଆନ୍ତି ।

ପାଶ୍ଚାତ୍ୟ ସଂସ୍କୃତି ଓ ପାଶ୍ଚାତ୍ୟ କବି ସେଠି ଯାହାସବୁକୁ ପ୍ରକୃତିରେ ଅଙ୍ଗେ ନିଭାଉଛି, ପାଶ୍ଚାତ୍ୟ ଆଧୁନିକ ସାହିତ୍ୟ ତାହାକୁ ହିଁ ହେପାର ରୂପ ଦେଉଛି, ପାଶ୍ଚାତ୍ୟ ଆଧୁନିକ କବିତା ତାହାର ବୃତ୍ତାନ୍ତରୂପେ ହିଁ ଆପଣାକୁ ପ୍ରକାଶିତ କରୁଛି । ତେଣୁ ଅତି ସ୍ୱାଭାବିକ ଭାବରେ ସେଠିକା ସମାଜର ଯାବତୀୟ ଦୁଃଖ ଓ ଅବସାଦ, ଯାବତୀୟ ପ୍ରେରଣା ଓ ପ୍ରଧାବବେଦନା ସେଠିକାର କବିତାରେ

ମଧ୍ୟ ଆତ୍ମପ୍ରକାଶ କରିଉଠନ୍ତି । ଆମର ଏଠାରେ ଆଧୁନିକ କବିମାନେ ଆଖି ବୁଜି କବିତା ଲେଖୁଛନ୍ତି । ଅର୍ଥାତ୍ ଏଠି ସେମାନଙ୍କର ଗୃହପାଖରେ ଯାହାସବୁ ଘଟୁଛି ବା ଘଟିବାକୁ ଅପେକ୍ଷା କରି ରହିଛି, ସେଗୁଡ଼ାକ ପ୍ରତି ସେମାନେ ଅତି ନିଷ୍ଠାପର ଭାବରେ ଆଖି ବୁଜି ରହିଛନ୍ତି । ପାଶ୍ଚାତ୍ୟ ଅବସାଦ, ଅବକ୍ଷୟ, Alienation ଓ Weltschmerz ର କୌଣସି ଲକ୍ଷଣ ଏଠାରେ ନଥିଲେ ମଧ୍ୟ ସେମାନେ ସେଇଗୁଡ଼ାକୁ ହିଁ ବେକରେ ଫାଶ କରି ଗୁଡ଼ାଇ ହୋଇଛନ୍ତି ଓ ସେଇଗୁଡ଼ାକୁ ହିଁ କବିତାର ଉପଜୀବ୍ୟ କରି ରଖିଛନ୍ତି । ଏବଂ ଏହିପରି ଏକ ପ୍ରଦର୍ଶନ ଦ୍ୱାରା ସେମାନେ ଆପଣାକୁ ବଡ଼ ଅସ୍ୱାଭାବିକ ଓ ତେଣୁ ପରଦେଶିତ କରି ରଖିଛନ୍ତି, କବିତାର ତତ୍ତ୍ୱଗତ ତଥା ଭାବଗତ ଭୂମିଟିକୁ ମଧ୍ୟ ମୁଖ୍ୟତଃ ଅବୋଧ କରି ରଖିଛନ୍ତି । ଆପଣାର ପ୍ରେୟସୀକୁ ତଥା ଆପଣାର ଗୋଡ଼ତଳେ ରହିଥିବା ଭୂମିଟିକୁ ଭଲ କରି ଚିହ୍ନି ନଥିଲେ ବିଚରା ପ୍ରେମିକକୁ ଯେଉଁଭଳି ହରବର ଓ ହଟହଟା ହେବାକୁ ପଡ଼େ, ଆମର ଆଧୁନିକ କବି ଊଣାଅଧିକେ ପ୍ରାୟ ସେହିପରି ଏକ ଦଶା ଭିତରେ ଆସି ପଡ଼ିଛି । ଆପେ ଆପଣାକୁ ବନ୍ଦୀ କରି ରଖିଛି; କବାଟଗୁଡ଼ାକ ପିଟାଇଦେବା ମାତ୍ରକେ ଯାହାସବୁ ବଡ଼ ସ୍ୱାଭାବିକ ଭାବରେ ଆସି ତା' କାନରେ ବାଜି ପାରନ୍ତା, ଦୁରଭିବରେ ଆତୁରତାରେ ପଡ଼ି ସେ ସବୁକୁ ସେ ମୋଟେ ଶୁଣି ପାରୁନାହିଁ । ତେଣୁ ତା'ର ଏକକାରୁଣ୍ୟ ଗୁଡ଼ାକ ବଡ଼ ଅବୋଧ ହୋଇ ରହିଛି; ପାଠକର ମନରେ ତାହା କୌଣସିପ୍ରକାର କରୁଣ ରସ ସୃଷ୍ଟି କରିପାରୁ ନାହିଁ । ଆମର ଏଇଠି ଆପଣାର ସ୍ୱାଭାବିକ ଓ ସମଗ୍ର ପରିବେଶଟିକୁ ଆପଣାର ପରିବେଶ ବୋଲି ଅନୁଭବ କରି ଆମ କବି ଆଜି ଯାହା ଲେଖୁଥାନ୍ତା, ହୁଏତ ତାହା ଅଧିକ ବୋଧ ହୋଇ ପାରୁଥାନ୍ତା, ଅଧିକ ଖିଅ ଲଗାଇ ପାରୁଥାନ୍ତା, କବିର ନିଜଭିତରେ ମଧ୍ୟ ଆହୁରି ଅଧିକ ଗ୍ରନ୍ଥି ଫିଟାଇ ଦେଇ ପାରୁଥାନ୍ତା ।

ଶ୍ରୀଯୁକ୍ତ Charles Reich ତାଙ୍କର The Greening of America ପୁସ୍ତକଟିରେ ମନୁଷ୍ୟ—ଚେତନାର ବିବର୍ତ୍ତନରେ ତିନୋଟି କ୍ରମପର୍ଯ୍ୟାୟର ଆଲୋଚନା କରିଛନ୍ତି । ପ୍ରାଚୀନ ପ୍ରଥମ ପର୍ଯ୍ୟାୟଟିରେ ମଣିଷ ଆଗରେ ବିପୁଳା ପୃଥ୍ୱୀ ବିସ୍ତୃତ ହୋଇପଡ଼ିଥିଲା । ସେତେବେଳେ ମଣିଷ ଅଳପ ଥିଲେ ଏବଂ ଆପଣାର ଶ୍ରମ ଖଟାଇ ଶ୍ରମଲବ୍ଧ ଫଳକୁ ଭୁଞ୍ଜିବା ଲାଗି ସେମାନଙ୍କ ଆଗରେ ଏଡ଼େ ବଡ଼ ପୃଥିବୀ ପଡ଼ି ରହିଥିଲା । ତା'ପରେ

ଚେତନାର ବିଶିଷ୍ଟ ପର୍ଯ୍ୟାୟରେ ମଣିଷ ପରସ୍ପରକୁ ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ ରୂପେ ଦେଖିବାକୁ ଆରମ୍ଭ କଲା । ମଣିଷ ମଣିଷ ଭିତରେ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହେଲା, ଦେଶ ଦେଶ ଭିତରେ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହେଲା । ଅପରକୁ ମାଡ଼ି-ଦେଇ ଆଗକୁ ବଳିଯିବାର ସ୍ୱାର୍ଥସର୍ବସ୍ୱତାକୁ ବୈଜ୍ଞାନିକ ପରିଭାଷା ଦିଆହୋଇ ଜୀବନସଂଗ୍ରାମ ବୋଲି କୁହାଗଲା । ମଣିଷଠାରୁ ପଇସା ବଡ଼ ହେଲା, ସାର୍ଥକତାଠାରୁ ସଫଳତା ବଡ଼ ହେଲା; ପୁଞ୍ଜିର ଜୟଜୟକାର ହେଲା; ସାମ୍ରାଜ୍ୟର ଜୟଜୟକାର ହେଲା । ମଣିଷର ଏହି ପୃଥିବୀଟାକୁ ବଡ଼ ଅସୁନ୍ଦର ଭାବରେ କେତେଟା ଆଧିପତ୍ୟ-ମଣ୍ଡଳରେ ବାଣ୍ଟି ଦିଆଗଲା । ସେହି ଆଧିପତ୍ୟ-ଗୁଡ଼ାକୁ ଜାରି କରି ରଖିବାକୁ ରାଜନୀତି ବୋଲି କୁହାଗଲା, ସେହି ଆଧିପତ୍ୟକୁ ବଜାୟ ରଖିବାକୁ ଯୁଦ୍ଧ ହେଲା । ଯୁଦ୍ଧ ଆଉ ଜାତୀୟତାବାଦ ପରସ୍ପରର ସହଚର ହୋଇ ରହିଲେ । ମଣିଷ କ୍ରମେ ଗୋଟାଏ ପଣ୍ୟରେ ପରିଣତ ହେଲା । କଳାମାନେ ଗୋରାଙ୍କର ପଣ୍ୟ ହୋଇ ରହିଲେ, ମୂଲିଆ ମାଲିକର ପଣ୍ୟ ହେଲା, ଉପନିବେଶଗୁଡ଼ାକ ସାମ୍ରାଜ୍ୟାଧିକାରୀର ପଣ୍ୟ ହୋଇ ରହିଲେ । ଆଦର୍ଶ ଗୁଡ଼ାକ ଆଦର୍ଶବାଦର ପଣ୍ୟ ହେଲେ ଓ ଆପଣାର ମହତ ହରାଇ ବସିଲେ । ବର୍ତ୍ତମାନ ଆମ ପୃଥିବୀରେ ବାସ୍ତବ ସ୍ଥିତି ରୂପେ ଯାହାସବୁ ରହିଛି, ଏହି ବିଶିଷ୍ଟ ଚେତନାଟି ହିଁ ମୁଖ୍ୟତଃ ତାହାର ଆଡ଼ପାଟ କରୁଛି, ତାହାର ଉତ୍ପ୍ରେରକ ପରି କାର୍ଯ୍ୟ କରୁଛି । ଲେଖକଙ୍କ ମତରେ ସାରା ଭୁବନକୁ ଆଲୋଡ଼ିତ କରି ପରବର୍ତ୍ତୀ ଏକ ବୃତ୍ତୀୟ ଚେତନା ବର୍ତ୍ତମାନ ଜନ୍ମଲାଭ କରିବାକୁ ଆରମ୍ଭ କଲାଣି । ଏହି ଚେତନା ହେଉଛି ମଣିଷକୁ ମଣିଷ ପରି ଦେଖିବାର ଓ ଅନୁଭବ କରିବାର ଚେତନା, ମନୁଷ୍ୟର ଏହି ସଂସାରରେ ମାନବିକ ମୂଲ୍ୟଗୁଡ଼ିକୁ ହିଁ ଚଳନ୍ତି ଜୀବନରେ ମୂଲ୍ୟ ରୂପେ ପ୍ରତିଷ୍ଠିତ କରିବାର ଚେତନା । ସବୁ ମଣିଷଙ୍କୁ ମଣିଷ ବୋଲି ସ୍ୱୀକାର କରିନେବାର ଚେତନା, ଆପଣାକୁ ମଧ୍ୟ ସାରତଃ ଜଣେ ମଣିଷ ରୂପେ ହିଁ ଅନୁଭବ କରିବାର ଚେତନା । ବର୍ତ୍ତମାନ ଠିକ୍ ଏହି ଚେତନାଟିର ଉଦୟ ହୋଇ ଆସୁଛି, ତାହାରି ସନ୍ଦେଶକୁ ବହନ କରି ହିରଣ୍ମୟ ଉପରେ କେତେଠି ସିନ୍ଦୂରୀ ଫାଟିବାକୁ ଆରମ୍ଭ କଲାଣି । ସେହି ନୂତନ ସକାଳଟିକୁ ଆବାହନ କରି ଆଣିବାର ସାଧନା ହେଉଛି ଏକ ତାରୁଣ୍ୟର ସାଧନା; କାରଣ ତରୁଣ ତଥା ସବୁଜ ହିଁ ସବୁଠାରେ ଏହାର ନେତୃତ୍ୱ ନେଇ ବାହାରୁଛି; ଅର୍ଥାତ୍ ଏହି ନୂତନ ସାକ୍ଷାତଲାଭର ପଥରେ ସେଇ ଆଗେ ଆଗେ ଯାଉଛି । ଯଦି

ଏହାକୁ ଗୋଟାଏ ବିପ୍ଳବ ବୋଲି କୁହାଯାଏ, ତେବେ ତାହା ଇତିହାସର ଅନ୍ୟ ଯେକୌଣସି ବିପ୍ଳବଠାରୁ ଏକ ସମ୍ପୂର୍ଣ୍ଣ ଅଭିନବ ଭାବରେ ଆପଣାକୁ ପରିପ୍ରକାଶ କରିବ । କେବଳ ଶାସନ ବା ଶାସକ ବଦଳାଇବାରେ ଏହି ବିପ୍ଳବର ଆଦୌ କୌଣସି ଆଗ୍ରହ ରହିବ ନାହିଁ । ଏହି ବିପ୍ଳବ ପୃଥିବୀର ସବୁ ଦେଶରେ ହେବ, ଅର୍ଥାତ୍ ଦେଶୀୟ ଓ ଜାତୀୟ ଯାବତୀୟ ସୀମାକୁ ଅତିକ୍ରମ କରିଯିବ । ଏହି ରୂପାନ୍ତରଟିକୁ ସଫଳ କରି ଆଣିବା ଲାଗି ଯେଉଁଠି ଯିଏ ପ୍ରସ୍ତୁତ ହେଉଛି, ତାହାରି ଚେତନାକୁ ହିଁ ଆମେ ଆଧୁନିକ ଚେତନା ବୋଲି କହିବା, ତାହାରି ସ୍ୱପ୍ନକୁ ହିଁ ଆଧୁନିକତମ ସ୍ୱପ୍ନ ବୋଲି କହି ପାରିବା ।

ଆମ ଦେଶର ଆଧୁନିକ କବି ଏକ ସମ୍ପ୍ରଦାୟ ଭାବରେ ହୁଏତ ଚେତନାର ସେହି ଦ୍ୱିତୀୟ ସ୍ତରଟିରେ ଆପଣାକୁ କଳି ରଖିଛି, ତାହାରି ପାଖରେ ହିଁ ଆପଣାକୁ ବିକି ଦେଇଛି । ଦ୍ୱିତୀୟ ଚେତନାଟିକୁ ସମ୍ବଳ କରି ଆମର ଏଠି ବର୍ତ୍ତମାନ ସମାଜ ନାମରେ ନାନା ଅସୁନ୍ଦରତାର ଯେଉଁ ବଜାର ବସିଛି, ଆଧୁନିକ କବି ପ୍ରଧାନତଃ ତାହାରି ଭିତରେ ତମ୍ବୁ ଖଟାଇ ରହିଛି । ସିଏ ସେହି ସମାଜର ଖାଉଛି, ତାହାରି ଗାଉଛି, ତାହାରି ବିନୋଦନ ଓ ବିରେଚନ ସକାଶେ କବିତାରେ ଭଳିଭଳି କଣ୍ଢେଇ ଗଢ଼ି ଥୋଇଦେଉଛି ଏବଂ ତାହାରି ମଧ୍ୟରେ ସଫଳ ବୋଲି ଗଣାହେବାକୁ ଆପଣାକୁ ନାନାବିଧ କୌଶଳରେ ଉପସ୍ଥାପିତ ତଥା ଅନୁକୂଳିତ କରି ରଖିଛି । କବିତା ଓ ସାହିତ୍ୟକୁ ସେ ପ୍ରଧାନତଃ ଶୈଳୀ ଓ ଚତୁରବିନୋଦର ଆତସବାଜି ଭିତରେ ଅପହୃତ କରାଇ ରଖିଛି । କେବଳ ନିରାଶ କରାଇବାକୁ ଓ କେବଳ ବୁଦ୍ଧିର ଭୂଆଁ ବୁଲାଇବା ଭିତରେ ସମ୍ପୃକ୍ତ ସମସ୍ତଙ୍କୁ ଅଣନିଃଶ୍ୱାସୀ କରି ରଖିବାକୁ ସିଏ ନିଜର ଧନ୍ଦା ଓ ଧର୍ମ ବୋଲି ଗ୍ରହଣ କରି ନେଇଛି । ସିଏ କଣ ଆଉ କୌଣସି ପ୍ରକାର ଅନ୍ୟ ସ୍ୱପ୍ନ ଦେଖିବ ନାହିଁ ? ଖାଲି ଅବକ୍ଷୟର ଗୁରଚେମ୍ପା ଗାଇ ଗାଇ ଆପଣାକୁ କ୍ଷୟ କରିଦେବ ? ଆଜି ଅନ୍ୟସବୁ ଦେଶରେ ପରିସ୍ଥିତି ଅଥବା ପ୍ରୟୋଜନ ଯାହା ହୋଇଥାଉ ପଛକେ, ଆମର ଏଠି ଆଧୁନିକ କବିର ଆଗରେ ଏହି ଆହ୍ୱାନଟି ଆସି ଉପସ୍ଥିତ ହୋଇଛି । ଆଧୁନିକ କବିତା ହେଉ କିମ୍ବା ଆଧୁନିକ ସାହିତ୍ୟ ହେଉ, ଆଧୁନିକ ଜୀବନଲାଗି ଅର୍ଥାତ୍ ଜୀବନକାମୀ ମଣିଷର ଆଧୁନିକତମ ଅଭିଳାଷଟି ଲାଗି ତାହା କେବଳ ଆଗକୁ ଆଗକୁହିଁ ଇଙ୍ଗିତ ଦେଇ ଯାଉଥିବ, ଆମକୁ ସୋପାନ ସୋପାନ କରି ପ୍ରସ୍ତୁତ କରାଇ ନେଉଥିବ ।

ତେଣୁ ଶବ୍ଦହୀନତାର Prosody ନ ଗାଇ ଆଧୁନିକ କବିତା ଶବ୍ଦମୟର ସଙ୍ଗୀତ ଗାଇ ଶିଖୁ । ଶବ୍ଦମୟର ସ୍ୱପ୍ନ ଦେଖି ଶିଖୁ ଓ ଶବ୍ଦମୟର ଉଦ୍‌ବୋଧନ ଦେଇ ଶିଖୁ । ମୃତ୍ୟୁର ମୁଗ୍ଧଲିକା ନ ଲେଖି ଆଧୁନିକ କବି ସକଳ ମୃତ୍ୟୁ ସତ୍ତ୍ୱେ ଜୀବନର ବହୁବିଧ ସମ୍ଭାବନାକୁ ନେଇ ପାଖୁଡ଼ା ପାଖୁଡ଼ା କରି ମାଳଟିଏ ଗୁନ୍ଥି ରଖିବାର ପ୍ରୟାସ କରୁ । ପଛକୁ ଅନାଇ ଅନାଇ ଯେଉଁ କ୍ଲାନ୍ତ କେତେଜଣ ଅତି ସତର୍କ ଭାବରେ ବର୍ତ୍ତମାନର ଶିକୁଳଗୁଡ଼ାକୁ ଆପଣାର ହାତଗୋଡ଼ରେ ଗୁଡ଼ାଇ ହୋଇ ବସିଚନ୍ତି, ସେହିମାନଙ୍କ ଲାଗି ଏକ ଆତ୍ମପୀଡ଼ନରହିତ କଣ୍ଟକର ପରିବେଶ ସୃଷ୍ଟି କରି ରହିବାରେ ହିଁ ଆଧୁନିକ କବି ଆପଣାର ବୟସକୁ ସାରି ନଦେଉ । ଯଦି ଯୁଗଟା ପ୍ରକୃତରେ କେଉଁଠି ଭାଙ୍ଗି ପଡ଼ୁଚି, ତେବେ ଆପଣାର ମେରୁଦଣ୍ଡ ସିଧାକରି ସେ ସେଠି ଆଗାମୀ ନୂତନ ଯୁଗ ଲାଗି ଗୋଟିଏ ସ୍ତମ୍ଭ ହୋଇ ଶିଖୁ । ଆଧୁନିକତା କହିଲେ କେବଳ ଆଧୁନିକ ଶବ୍ଦକଳ୍ପର କସରତକୁ ନ ବୁଝି ସେ ଏକ ଆଧୁନିକ ଚେତନାକୁ ବୁଝୁ, ଆଧୁନିକ ସ୍ୱପ୍ନକୁ ବୁଝୁ, ଏକ ଆଧୁନିକ ବାସନାଲାଗି ସାହସ କରୁ ।

ତା' ନ ହେଲେ ଆମର ଏହି ଆଧୁନିକ ପୃଥିବୀରେ ମନୁଷ୍ୟର ଜୀବନ-ଭୂମି ଉପରେ ଯେଉଁ ନୂତନ ସନ୍ଧମଣଟି ଆସନ୍ନ ହୋଇ ଆସିଲାଣି, ଏହି ପଣ୍ୟପ୍ରଧାନ ଯୁଗର କବି ସେଥିରେ ଆଦୌ କୌଣସି ଭାଗ ନେଇ ପାରିବ-ନାହିଁ । ସେ ପଛରେ ପଡ଼ିରହିବ । ଅବକ୍ଷୟର ମିଉଜିଅମ୍ ଭିତରେ ସିଏ ବି ପଥର ଖଣ୍ଡେ ହୋଇ ପଡ଼ି ରହିଥିବ । ଚକ ଆଗକୁ ଗଡ଼ିଯିବ, ମଣିଷ ଆଗକୁ ମାଡ଼ିଯିବ, ଏବଂ ଜୀବନର ସେହି ନୂତନ ଅଭିଷେକରେ ଏବର ଏହି କବିକୁ ହୁଏତ ମନେ ବି ପକାଇବା ଲାଗି କେହି ଆବଶ୍ୟକ ବୋଲି ଭାବିବେ ନାହିଁ ।



# ଆଧୁନିକ କବିତାରେ ସାମାଜିକ ଚେତନା

## ( ଏକ )

ଆଲୋଚନା ଆରମ୍ଭରୁ କହି ରଖିବା ଉଚିତ ହେବ ଯେ, ଆଧୁନିକ କବିତାରେ ସାମାଜିକ ଚେତନା କିପରି ପ୍ରତିଫଳିତ ହୋଇଛି ବା ହେବା ଉଚିତ୍, ଏହା କିପରି କବିତାର ଭାଷା, ଶୈଳୀ ଏବଂ ଆଭିମୁଖ୍ୟକୁ ପ୍ରଭାବିତ କରିଛି ବା କରିବା ଉଚିତ୍ ଏ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ଉତ୍ତର ବା ମତବାଦ ସମ୍ଭବ ନୁହେଁ, ଯେହେତୁ ଏଗୁଡ଼ିକର ଉତ୍ତର ନିର୍ଭର କରିବ ପ୍ରଥମତଃ ସାମାଜିକ ଚେତନାର ସଂଜ୍ଞା ଉପରେ, ଦ୍ୱିତୀୟତଃ କବିତାର ଆଭିମୁଖ୍ୟ ଓ ଉଦ୍ଦେଶ୍ୟ ଉପରେ । ଶେଷୋକ୍ତ ଦୁଇଟି ପ୍ରଶ୍ନର କୌଣସି ନିର୍ଦ୍ଦିଷ୍ଟ ଉତ୍ତର ସମ୍ଭବ ନୁହେଁ । ପ୍ରଥମ ପ୍ରଶ୍ନର ଉତ୍ତର ସମାଜତତ୍ତ୍ୱବିତ୍ ଗୋଟିଏ ଉପାୟ ଦେଇପାରେ, କବିମାନେ ପରସ୍ପରଠାରୁ ଭିନ୍ନ ଭିନ୍ନ ଉପାୟରେ ମଧ୍ୟ ଦେଇ ପାରନ୍ତି । ଦ୍ୱିତୀୟ ପ୍ରଶ୍ନର ଉତ୍ତର ତ ଯୁଗେଯୁଗେ ଦିଆଯାଉଛି ଓ ଯିବ । ଅନ୍ୟ ପକ୍ଷରୁ ଦେଖିବାକୁ ଗଲେ ସମାଜର ରୂପ ଇତିହାସର ପୃଷ୍ଠଭୂମିରେ ବଦଳି ଚାଲିଛି । ସାମାଜିକ କ୍ରିୟା ଓ ପ୍ରତିକ୍ରିୟା, ଚଳଣି, ହାବଭାବ, ଓ ମୂଲ୍ୟବୋଧ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ, ସ୍ଥିର ବସ୍ତୁ ବା ଧାରଣା ନୁହେଁ । ଜ୍ଞାନର ପରିସୀମା ବଢ଼ି ଚାଲିବା ସଙ୍ଗେ ସଙ୍ଗେ ସମାଜର ଲ୍ୟାଣ୍ଡସ୍କେପ ବଦଳି ଚାଲିଛି । ପରିବର୍ତ୍ତନଶୀଳ ସମାଜର ପରିପ୍ରେକ୍ଷୀରେ ସାମାଜିକ ଚେତନାର ସ୍ୱରୂପ କ'ଣ ହେବ, ସେ ବିଷୟରେ ଧାରଣା ମଧ୍ୟ ବଦଳି ଚାଲିଛି । ପୁଣି ସାମାଜିକ ଚେତନାର ଅର୍ଥ ଯଦି ହୁଏ କବିର ବ୍ୟକ୍ତିଗତ ଚେତନାରେ ସମାଜର ପ୍ରତିଫଳନ ଓ ପ୍ରତିରୂପ ଅର୍ଥାତ୍ ଯଦି ସାମାଜିକ ଚେତନାକୁ ସମାଜର ଚେତନା ହିସାବରେ ନ ନେଇ ଆମେ ତାକୁ କବିର ସମାଜ ବିଷୟରେ ଚେତନା ବୋଲି ଗ୍ରହଣ କରୁ, ତେବେ ସେ ପ୍ରତିଫଳନର ସ୍ୱରୂପ

ଦର୍ପଣର ସ୍ୱରୂପ ଉପରେ ନିର୍ଭର କରିବ । ଅନ୍ୟ ଅର୍ଥରେ କହିବାକୁ ଗଲେ କବିର ମାନସିକ ଅବସ୍ଥିତି ଓ ତା'ର ନୈତିକ ପ୍ରତିକ୍ରିୟା ଏବଂ ଦ୍ୱିତୀୟତଃ କବିତାର ଆଭିମୁଖ୍ୟ ଓ ଉଦ୍ଦେଶ୍ୟ ବିଷୟରେ ତାର ଧାରଣା—ଏ ଉଭୟ ସେ ପ୍ରତିଫଳନର ସ୍ୱରୂପକୁ ନିର୍ଦ୍ଦିଷ୍ଟ କରିବେ ।

ଏଇଠି କେତୋଟି ମୌଳିକ ବିଷୟ ଉତ୍ଥାପନ କରିବା ଉଚିତ ହେବ । ପ୍ରଥମତଃ ଆମେ ଧରିନେବା ଉଚିତ ହେବ ଯେ, କାବ୍ୟିକ ଆବେଗ ବା ଇସ୍‌ଥେଟିକ୍ ଆବେଗ ଏବଂ ଜୀବନ ଆବେଗ ବା life emotion ଏକ ଓ ଅଭିନ୍ନ ନୁହନ୍ତି । ଉଭୟ ଆବେଗ ଭିତରେ ଗ୍ରାଇପଡ଼େ କାବ୍ୟରୂପର ଆବଶ୍ୟକତାର, ଭାଷାର, ଶୈଳୀର, କାବ୍ୟରୂପ, ଭାଷା ଓ ଶୈଳୀ ଜୀବନ ଆବେଗର ବିଶୃଙ୍ଖଳା, ଉଚ୍ଛଳ ତରଙ୍ଗକୁ ଶିଥିଳ କରି ଏକ ଘନିଷ୍ଠ, ପୁଣ୍ୟବନ୍ତ ରୂପ ଦେବାର ପ୍ରଚେଷ୍ଟା କରେ । କିନ୍ତୁ କବିତା ବା କୌଣସି ସୃଜନଶୀଳ କଳା ଜୀବନର ସ୍ୱୟଂସମ୍ପୂର୍ଣ୍ଣ ଫଟୋଗ୍ରାଫି ହୋଇପା'ରେନି ବା ଅନୁକରଣ କରିପାରେନି । କରିବା ବିଧେୟ କି ନା ତାହା ଏକ ସ୍ୱତନ୍ତ୍ର ପ୍ରଶ୍ନ । କିନ୍ତୁ ଏକଥା ହୁଏତ ନିର୍ବିବାଦରେ କୁହାଯାଇପାରେ ଯେ, ଜୀବନର ଫଟୋଗ୍ରାଫ ହେଲେ ତାହା "କଳା" ହେବନାହିଁ, ଫଟୋଗ୍ରାଫ ହୋଇପାରେ । ବାସ୍ତବବାଦୀ କଳାର ସବୁଠାରୁ ବଡ଼ ଦୁର୍ବଳତା ଏଇଠି । ଜୀବନପ୍ରତି ସହାନୁଭୂତିକୁ ଏପରି ଏକ ଚରମ ଲକ୍ଷ୍ୟକୁ ଏହା ଟାଣିନିଏ, ଯେଉଁଠି କାବ୍ୟିକ ଆବେଗ ଓ କାବ୍ୟରୂପ ପ୍ରତିହତ ହୁଏ ଏବଂ ଜୀବନର ପ୍ରତିରୂପ ବି ଆମେ ସ୍ୱଚ୍ଛନ୍ଦରେ ପାଇପାରୁନି । ଜୀବନ ଆବେଗ ଓ ଇସ୍‌ଥେଟିକ ଆବେଗର ସ୍ୱରୂପ ଏତାଦୃଶ ଭିନ୍ନ ହେଲେହେଁ କବିର ଆନ୍ତରିକତା, ସମ୍ବେଦନ ଓ ଶକ୍ତିଶାଳୀ ନୈତିକ ଅବବୋଧ, ଜୀବନ-ଆବେଗର ଶକ୍ତି, ବଳିଷ୍ଠତା, ରସ ଓ ସ୍ୱାଦ, ଲୁଣ ଓ ଲହୁ ଏ ସବୁକୁ କିଞ୍ଚିତ୍ ପରିବର୍ତ୍ତନ କରି ରଖିପାରେ ଏବଂ ଅନ୍ୟ ପକ୍ଷରେ ଭାଷାର ସଙ୍ଗୀତ, ଶୈଳୀର ପାଟବ ଓ ଇମେଜ ବା ସିମ୍ବଲ୍‌ର ଶକ୍ତିଦ୍ୱାରା ଜୀବନ-ଆବେଗର ଶକ୍ତି ଓ ସାମର୍ଥ୍ୟକୁ ଆହୁରି ସମୃଦ୍ଧ, ଆହୁରି ଦୃଢ଼ କରେ । ଏଇ ଅର୍ଥରେ ହୁଏତ ଅସ୍କାର୍ ଓ୍ୱାଇଲ୍‌ଡ଼ କହିଥିଲେ ଯେ, ଜୀବନ-କଳାର ଅନୁକରଣ କରେ । କଳାର ରୂପ ଓ ରଙ୍ଗ, ଛନ୍ଦ, ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ ସାହିତ୍ୟରେ ଜୀବନର ସ୍ୱରୂପ ଆମର ଦୃଷ୍ଟିଭଙ୍ଗୀକୁ ସେ ପ୍ରଭାବିତ କରେ, ଏଥିରେ ଦ୍ୱିମତ ନ ଥାଇପାରେ । ଇସ୍‌ମେଟିକ ଆବେଗ ଓ କାବ୍ୟିକ ମୂଲ୍ୟବୋଧ ପରସ୍ପର ଘନିଷ୍ଠ ଭାବରେ ଜଡ଼ିତ ।

ହୋଇ ନ ପାରେ । ସମାଜର କଳ୍ପନା ଏକ ବିରାଟ, ସୁବୃହତ୍ କଳ୍ପନା । ସମାଜର ଜୀବନ ଓ ଘାତ ପ୍ରତିଘାତ ଭିତର ଦେଇ ସେ ଜୀବନର ପରିକଳ୍ପନା କଳା, ସାହିତ୍ୟ, ଧର୍ମ, ସଙ୍ଗୀତ ଏ ସବୁକୁ ଗ୍ରହଣ କରି ନିଜର କରିନିଏ । ଗୋଟିଏ ଉଦାହରଣ ଦେଲେ ଏ ବିଷୟ ବୁଝିହେବ । ସମୟ ଆସିଥିଲା ଯେତେବେଳେ ଶ୍ରେଣୀସଂଘର୍ଷ, ପ୍ରୋଲେଟାରିଏଟ୍, ବିପ୍ଳବକଥା କହିଲେ ସାମାଜିକ ଚେତନା ବୋଲି ବୁଝାଗଲା । କିନ୍ତୁ ମଣିଷ ଖାଲି କ'ଣ ଅର୍ଥନୀତି ? ନା ସବୁ ସମୟରେ, ସବୁ ସମାଜରେ କ'ଣ ଅର୍ଥନୀତି ଜୀବନର ମୁଖ୍ୟ ଆଙ୍ଗିକ ରୂପେ ପରିଗଣିତ ହେଉଥିଲା ! 'ଆର୍ଥନୀତିକ ମଣିଷ' ଅଷ୍ଟାଦଶ ଶତାବ୍ଦୀର ଶିଳ୍ପ ବିପ୍ଳବର ମଣିଷ । ତା' ଆଗରୁ ହୁଏତ ଥିଲା 'ଧର୍ମବାଦୀ ମଣିଷ' । ଆନୁଷ୍ଠାନିକ ଧର୍ମ ନୁହେଁ, ମାତ୍ର ବିଭିନ୍ନ ଦେବ, ଦେବୀ, ବ୍ୟକ୍ତିଗତ ଶୁଚି, ବ୍ୟକ୍ତିଗତ ଜୀବନର ନିୟନ୍ତ୍ରିତ ଏ ସବୁକୁ ନେଇ ସେ ମଣିଷର ସାମାଜିକ ଧାରଣା ଠିଆ ହୋଇଥିଲା । ସମାଜରେ ଧର୍ମହିଁ ଥିଲା ମୁଖ୍ୟ ଆଙ୍ଗିକ ଓ ଚିନ୍ତାର ଷ୍ଟାଣ୍ଡାର୍ଡ । ତେଣୁ ପୂର୍ବତଯୁଗର କବିତାରେ ସାମାଜିକ ଚେତନା ନାହିଁ ଏକଥା କେତେଦୂର ଯୁକ୍ତିସଙ୍ଗତ, ତା' ଆଜି ଆଉ ଥରେ ଚିନ୍ତା କରିବା ଦରକାର ପଡ଼ୁଛି । ମଣିଷ ଖାଲି ଅର୍ଥନୀତିର ମଣିଷ ନୁହେଁ, ସେ ବି ଧର୍ମ ଓ ଧାରଣାର ମଣିଷ, ରାଜନୀତିର ମଣିଷ, ମନସ୍ତତ୍ତ୍ୱର ମଣିଷ, ସମାଜତତ୍ତ୍ୱର ମଣିଷ, ନୃତତ୍ତ୍ୱର ମଣିଷ, ତା'ର ମନ ଓ ହୃଦୟର ଇଲାକା ଏତେ ବିଶାଳ, ତାର ଚେତନ, ଅବଚେତନ ଓ ଅଚେତନର ଗଭୀରତା ଏତେ ଅମାପ ଯେ, ସବୁ ଜ୍ଞାନ, ସବୁ ଚିନ୍ତା ତା'ର ବିଭିନ୍ନ ରୂପକୁ ସତ୍ୟର ରୂପ ବୋଲି ଗ୍ରହଣ କରି ନେଇଥାନ୍ତି ଓ ନିଜର ସତ୍ତ୍ୱକୁ ସେ ପରିକଳ୍ପନା ଭିତରଦେଇ ଯଥାର୍ଥ ଓ ସତ୍ୟବୋଲି ପ୍ରମାଣ କରିବାକୁ ପ୍ରୟାସ କରନ୍ତି; ତେଣୁ ସାମାଜିକ ଚେତନାର ବାରଆଦର୍ଶ ହେବା ଉଚିତ 'ସମ୍ପୂର୍ଣ୍ଣ ମଣିଷ'; ତା' ନ ହେଲେ ବି ମଣିଷର କୌଣସି ଏକ ସାମାଜିକ ବିଭାଗକୁ ନେଇ ଅନ୍ତତଃ କଳହ ନ ହେଉ ଯେ, ମଣିଷ ଖାଲି ଏଇଆ । ତେଣୁ ଯେଉଁ କବିତାରେ ତା' ନାହିଁ, ସେ କବିତା ସାମାଜିକ ଚେତନାବିହୀନ ଏ କଥା କେହି ନ ଭାବନ୍ତୁ ।

ଚତୁର୍ଥରେ ସମାଜରେ ସମନ୍ୱୟ, ଶାନ୍ତି, ସୌହାର୍ଦ୍ଦ୍ୟ ଏ ସବୁ ଯେତିକି ସତ୍ୟ; ସଂଘର୍ଷ, ଘୃଣା, ଶ୍ରେଣୀବିଭେଦ ଏସବୁ ବି ସେତିକି ସତ୍ୟ । ସାମାଜିକ ଚେତନା କଣ ଖାଲି ସେ ସଂଘର୍ଷ ଘୃଣା ବା ଶ୍ରେଣୀବିଭେଦ ? ସେ ଅନ୍ୟାୟ ଅତ୍ୟାଚାରର ବିରୋଧରେ ଖଡ଼୍ଗ ଉତ୍ତୋଳନରେ ପରିସୀମିତ ହୋଇପାରେ । ବୈଦିକ ଋଷି

ଦ୍ୱିତୀୟତଃ କବିତାରେ ସାମାଜିକ ଚେତନା କଥା କହିଲାବେଳେ ଆମର ମନେରଖିବା ଉଚିତ ହେବ ଯେ, କାବ୍ୟିକ ସତ୍ୟ ବ୍ୟାବହାରିକ ବା ବୈଜ୍ଞାନିକ ସତ୍ୟଠାରୁ ସମ୍ପୂର୍ଣ୍ଣ ଭିନ୍ନ । କବିତାରେ ଯାହା କୁହାଯାଏ, ତାହା କେବଳ ଉକ୍ତିପରି ପ୍ରତୀୟମାନ ହୋଇଥାଏ । କିନ୍ତୁ ପ୍ରକୃତରେ ତାହା କୌଣସି ନିର୍ଦ୍ଦିଷ୍ଟ ଉକ୍ତି ବା statement ନୁହେଁ । ସମାଲୋଚକ ରିଚାର୍ଡ଼ସଙ୍କ ଭାଷାରେ ଏହାକୁ pseudo-statements କୁହାଯାଇପାରେ । କୌଣସି ଏକ ବ୍ୟାବହାରିକ ବା ବୈଜ୍ଞାନିକ ଉକ୍ତିର ସତ୍ୟତା ବାସ୍ତବତାର ପରିପ୍ରେକ୍ଷୀରେ ସହଜରେ ଯାଞ୍ଚ କରିହେବ । ମୁଁ ଯଦି କହେ 'ବାହାରେ ପବନ ବହୁଛି' ବା ଭଦ୍ରକର ଲୋକସଂଖ୍ୟା ସାତହଜାର । ଏ ଉକ୍ତିଗୁଡ଼ିକର ସତ୍ୟତା ସହଜରେ ପରୀକ୍ଷା କରିଯାଇପାରେ । ଏଥିପାଇଁ ବାସ୍ତବ ଅବସ୍ଥା ଓ ଉକ୍ତି ଏ ଦୁଇଟିର ତୁଳନା ହିଁ ଯଥେଷ୍ଟ । ସତ୍ୟର ଅର୍ଥ ଏଠି ସମାନତା', ମୂଳବସ୍ତୁ ସହିତ ଅଭିନ୍ନତା ବା correspondence । କିନ୍ତୁ କବିତାର "ସିଉଡୋଷ୍ଟେଟ୍‌ମେଣ୍ଟ"ର ଯାଥାର୍ଥ୍ୟ ବା ମୂଲ୍ୟ (ସତ୍ୟ ନୁହେଁ) ଆମର ଆବେଗ ବା ଅନୁଭୂତିକୁ କାବ୍ୟରୂପ ଭିତରେ ମୁକ୍ତ ହେବାରେ ବା ସେଗୁଡ଼ିକୁ ଆନ୍ତରିକତାର ସ୍ୱରରେ ସଙ୍ଗଠିତ କରିବାରେ ନିହିତ । ଏ ପ୍ରକାର 'ଷ୍ଟେଟ୍‌ମେଣ୍ଟ' ଶବ୍ଦ-ସମାହାର ହେଲେହେଁ ଏଥିରେ ଗ୍ରନ୍ଥନର ସାମର୍ଥ୍ୟ ଅତି ଜରୁରୀ ଓ ମୂଲ୍ୟବାନ୍ । ହୁଏତ ତାହା ସତ ନୁହେଁ କି ମିଛ ନୁହେ କିନ୍ତୁ ବାସ୍ତବତାର କାଳ୍ପନିକ ଆଭାସ, ସାମାନ୍ୟ ସୂଚନା । ମୋର ମନେହୁଏ, ମୁଁ 'ବାସ୍ତବତା'ର ପ୍ରଶ୍ନ ଉଠେଇ ବିପଦସଙ୍କୁଳ ଇଲାକାରେ ଆସି ପଶିଗଲିଣି; କିନ୍ତୁ କବିତାର ବାସ୍ତବତା, କଳାର ବାସ୍ତବତା କାବ୍ୟରୂପ ଓ ଆନ୍ତରିକତା ସହିତ ଏକ ଓ ଅବିଚ୍ଛିନ୍ନ ଏଇଟା କହିରଖିବା ଉଚିତ ବୋଲି ମନେକରେ । କଳାକାରର ବାସ୍ତବତା ଏଇ ଅର୍ଥରେ ଦାର୍ଶନିକର ବାସ୍ତବତା ସହିତ ତୁଳନୀୟ 'ହିରଣ୍ମୟେନ ପାତ୍ରେଣ ସତ୍ୟସ୍ୟ ପିହିତଂ ମୁଖଂ' ଇତ୍ୟାଦି । ଏଇ ଦୃଷ୍ଟିଭଙ୍ଗୀରୁ ଦେଖିଲେ ସାମାଜିକ ଚେତନା ଯାହା ଏଇ ପରିପ୍ରେକ୍ଷୀରେ ଗୃହୀତ ବାସ୍ତବତା ତା'ର ରୂପାୟନ କବିତାର ସ୍ୱରୂପ ଦ୍ୱାରା ନିର୍ଦ୍ଦିଷ୍ଟ ହେବାକୁ ବାଧ୍ୟ ।

ତୃତୀୟତଃ ସାମାଜିକ ପରିସ୍ଥିତି ବା ଅବସ୍ଥା କୌଣସି ଏକ ନିର୍ଦ୍ଦିଷ୍ଟ ଅବସ୍ଥା ବା ନିର୍ଦ୍ଦିଷ୍ଟ ଶ୍ରେଣୀ, ଜାତି ବା ଗୋଷ୍ଠୀର ଅବସ୍ଥା ବା ଅର୍ଥନୀତି, ଧନ, ଦର୍ଶନ ଇତ୍ୟାଦି କୌଣସି ଏକ ନିର୍ଦ୍ଦିଷ୍ଟ ପୃଷ୍ଠଭୂମିରୁ ସାମାଜିକ ଅବସ୍ଥାରେ ଅଧ୍ୟୟନ

ଯେତେବେଳେ ପ୍ରାର୍ଥନା କଲୁ—

"ସମାନୋ ମନ୍ତ୍ରଃ ସମିତି ସମାନୀ ସମାନଂ ମନଃ ସହଚିତ୍ତମେଷାମ୍
ସମାନଂ ମନ୍ତ୍ରମଭି ମନ୍ତ୍ରୟେ ବଃ ସମାନେନ ବୋ ହବିଷା ଜୁହୋମି"

ବା ଯେତେବେଳେ ଗୋଟିଏ ନୂତନ ଦେଶରେ ସଂଖ୍ୟାଲଘୁ ହୋଇ ଆସି ପହଞ୍ଚି ସେ ଯେତେବେଳେ ପ୍ରାର୍ଥନା କଲୁ, ସମସ୍ତେ ଶତବର୍ଷ ବଞ୍ଚନ୍ତୁ, ପୁଅ, ନାତି, ଧନଧାନ୍ୟରେ ଦେଶ ଭରିଯାଉ, ଗାଈମାନେ ବେଶୀ ଦୁଧ ଦିଅନ୍ତୁ ବା ଇନ୍ଦ୍ର ଭଲ ବୃଷ୍ଟି କରନ୍ତୁ, ଫସଲ ହେଉ—ଏ ସବୁକୁ କଣ ସାମାଜିକ ଚେତନା କୁହାଯିବନି ? ବେଦର ସାମାଜିକ ଚେତନା, ପୁରାଣର ସାମାଜିକ ଚେତନାଠୁଁ ଭିନ୍ନ ଏବଂ ଉଭୟର ସାମାଜିକ ଚେତନା ହୁଏତ ମାୟାକୋଭସ୍କି, ଆଲେକଜାଣ୍ଡାର ବ୍ଲକ୍, ଆନନ୍ଦଜିଓ ବା ସଚି ରାଉତରାୟଙ୍କ ଚେତନାଠାରୁ ଭିନ୍ନ । ପୁଣି ଏ ସବୁର ଚେତନା ଏଲିଅଟ୍, ପାଉଣ୍ଡ୍, ଡେଭିଡ୍ ଜୋନସ ଜଏସ୍, ବା ଗୁରୁପ୍ରସାଦ ମହାନ୍ତିଙ୍କ ଚେତନାଠାରୁ ଭିନ୍ନ । 'ରାଜମାର୍ଗ'ର ବିପର୍ଯ୍ୟୟ, ଆଦର୍ଶର ହତ୍ୟା ଓ ଜଗତର ଅନ୍ଧାରକୁ ନେଇ ହୁଏତ ଗଢ଼ା 'ଅନ୍ଧଦିଗନ୍ତ'ର ସାମାଜିକ ଚେତନା ଯେମିତି ମଣିଷ ପ୍ରତି ମଣିଷର ସ୍ନେହ ସୌହାର୍ଦ୍ଦ୍ୟ, ଭ୍ରାତୃତ୍ୱ ଓ ପ୍ରୀତିର ଚରମତମ ସମ୍ଭାବନାକୁ ନେଇ ଗଢ଼ା ହୁଏ 'ମାଟି ମଟାଳର' ସାମାଜିକ ଚେତନା ।

ପୁଣି ଇଏତ ଖାଲି କାଳ ଓ କାଳାନ୍ତରର କଥା । ପଞ୍ଚମରେ ଯୁଆ ସହିତ ଯୋଡ଼ିବାକୁ ହେବ କବିର ବ୍ୟକ୍ତି ଚେତନାର ଆଭିମୁଖ୍ୟ । କବିର ବ୍ୟକ୍ତି-ଚେତନା ଯେମିତି ଗୋଟିଏ ଫରନେସ୍ ବାହାରକୁ ନିଆଁର ତାଉ ଦିଶୁଛି । ଭିତରେ ବି ଅଛି ଅବଚେତନ ଓ ଅଚେତନର ତେଜ, ଯାହା କୁହୁଳୁଛି ଓ ଜଳୁଛି । ଫ୍ରଏଡଙ୍କ ସମୟରୁ ଏକଥା ସାଧାରଣ ଭାବରେ ଗୃହୀତ ହୋଇଯାଇଛି ଯେ, ବ୍ୟକ୍ତିର ଚିନ୍ତା ଓ କାର୍ଯ୍ୟର ପ୍ରକୃଷ୍ଟ ସମୀକ୍ଷଣ ପାଇଁ ଏ ତିନୋଟି ମାନସିକ ସ୍ଥିତି ପ୍ରତି ଦୃଷ୍ଟି ଦେବାକୁ ହେବ । ତା' ସହିତ ବି ମନେ ରଖିବାକୁ ହେବ, ୟୁଙ୍ଗ୍ ଆଦିମ ଅବଚେତନ (prioritive unconscious) ଗୋଷ୍ଠୀ ସ୍ମୃତି ବା race memory କଥା । ତୃତୀୟତଃ କବି ଯେ କୌଣସି ନିର୍ଦ୍ଦିଷ୍ଟ ସମାଜର କୌଣସି ଏକ କାଳର ଶ୍ରେଷ୍ଠ ସନ୍ତାନ ବିନ୍ଦୁ—ଏକଥା ମଧ୍ୟ ସାଧାରଣ ଭାବରେ ଗୃହୀତ । ତେଣୁ ତା'ର ଚେତନା ଫରନେସ୍‌କୁ ଯାହା କଞ୍ଚାମାଲ ଆସୁଛି ସିଏ କୋଉ ରୂପରେ ରୂପାୟିତ ହୋଇ ବାହାରିବ, ସେ

ବିଷୟରେ କୌଣସି ନିଶ୍ଚିତତା ନାହିଁ । ହୁଏତ ମୋଟେ ତାହା ରୂପ ନ ପାଇପାରେ । ଅତି ଗଭୀରଭାବରେ ଅନୁଭୂତ ହେଲେ ମଧ୍ୟ ତାହା ଯେ କାବ୍ୟରୂପ ବା କଳାରୂପ ନିଶ୍ଚୟ ଗ୍ରହଣ କରିବ, ଏକଥା ସତ୍ୟ ନୁହେଁ । ଜଣାଶୁଣା ଉଦ୍ଧୃତିଟିଏ ଦେବି ଏଲିଅଟ୍‌ଙ୍କ ଲେଖାରୁ—"Poetry is not a turning loose of emotion, but on escape from emotion, it is not the expression of personality, but an escape from personality. But of course, only those who have personality and emotions know what it means to want to escape, from these things." ଆମେ ସାଧାରଣତଃ ଧରି ନେଇଥାଉ ଯେ, ଯାହା କବିକୁ ଗଭୀର ଭାବରେ ପ୍ରଭାବିତ କରେ, ତାହା ନିଶ୍ଚୟ ତା'ର କବିତାର ମୁଖ୍ୟ ସ୍ୱର ଭାବରେ ଦେଖାଦେବ । ଏହା ସବୁବେଳେ ସତ୍ୟ ନୁହେଁ । ଆପଣଙ୍କର ବ୍ୟକ୍ତିଗତ ଚେତନାରେ 'ପ୍ରେମ' ଏକ ଅତ୍ୟନ୍ତ ଗଭୀର ଆବେଗ ହୋଇପାରେ; କିନ୍ତୁ ହୁଏତ ଆପଣ ପ୍ରେମକବିତା ଆଦୌ ନ ଲେଖି ପାରନ୍ତି । କାର୍ଡ଼ିନାଲ ନିଉମାନ୍ ସାମାଜିକ ଜୀବନରେ ଓ ନିଜର ଚିନ୍ତାରେ ବେଶ୍ ଉଗ୍ର ବାମପନ୍ଥୀ ଥିଲେ; କିନ୍ତୁ ତାଙ୍କ ଲେଖାରେ ତା'ର କିଛି ବି ସୂଚନା ନାହିଁ ଏବଂ ଅନ୍ୟ ପକ୍ଷରେ ସେଗୁଡ଼ିକର ମୁଖ୍ୟ ସ୍ୱର ଧର୍ମଭାବର ସଂବେଦନ । ଏଲିଅଟଙ୍କ ଉକ୍ତିର ଯଥାର୍ଥ୍ୟ ଏଇଠି । କବି କାବ୍ୟ ଓ କବିତାରେ ନିଜର ବ୍ୟକ୍ତିତ୍ୱକୁ ପରିସ୍ଫୁଟ କରିବାକୁ ପ୍ରୟାସୀ ନୁହେଁ । ସେ ଯେମିତି ଗୋଟିଏ ମାଧ୍ୟମ—ଯେଉଁଥିରେ ଅନୁଭୂତି, ଆବେଗ, ଚିନ୍ତା ସବୁ ଚଳଚଞ୍ଚଳ ପଡାନ୍ତି, ଭିନ୍ନ ଭିନ୍ନ ଭାବରେ ପରସ୍ପର ପ୍ରତିକ୍ରିୟା, ଉଦ୍ଦୀପନା ସୃଷ୍ଟି କରନ୍ତି ଓ ପ୍ରକାଶିତ ହୁଅନ୍ତି, କୌଣସି ନୂଆ ରୂପରେ, ନବୀନ ଜ୍ୟୋତିରେ ଭାସ୍ୱର ହୋଇ । ବ୍ୟକ୍ତି ହିସାବରେ ତା ପାଇଁ ଯେଉଁ ଆବେଗ ଅତି ଗୁରୁତ୍ୱପୂର୍ଣ୍ଣ, କବି ହିସାବରେ ସେ ଆବେଗ ତା' ପାଇଁ ସେତିକି ଗୁରୁତ୍ୱପୂର୍ଣ୍ଣ ସବୁବେଳେ ନ ହୋଇପାରେ ବା ସେଥିରୁ କେବଳ କିୟଦଂଶ ତା'ର ସୃଜନଶୀଳ ଚେତନାକୁ ଦୋହଲାଇ ପାରେ । ତେଣୁ ସମାଜର ଛବି କବି ମନକୁ ଆନ୍ଦୋଳିତ କଲେ ଯେ ସେ ନିଶ୍ଚୟ ସେହି ସାମାଜିକ ଚେତନାକୁ ନେଇ କବିତା ଲେଖିବ, ଏକଥା ସତ୍ୟ ନୁହେଁ ।

ଶେଷରେ କାବ୍ୟିକ ଅନୁଭୂତିର ସ୍ୱରୂପ ବିଷୟରେ ଏଇଠି ଗୋଟିଏ ଦୁଇଟି କଥା କହିରଖେ । ଏ ଅନୁଭୂତିର ସ୍ୱରୂପ ଓ ସେଥିରେ କବିର ବ୍ୟକ୍ତି-

ଚେତନାର ସ୍ଥାନ ବିଷୟରେ କବି, କଳାକାର, ସମାଲୋଚକମାନେ ବିଭିନ୍ନ ମତ ପୋଷଣ କରିଥାନ୍ତି । ଆଲୋଚନାର ସୁବିଧାପାଇଁ ସେଥିରୁ ପ୍ରତିପାଦିତ ହୋଇଥିବା ଦୁଇଟି ମୁଖ୍ୟ ଚିନ୍ତାଧାରାକୁ ମୁଁ ଏଠି ନେଉଛି । ଗୋଟିଏ ହେଉଛି କିଟ୍ସଙ୍କ negative capability, ଯାହାକୁ କିଟ୍ସ ସେକସପିଅରଙ୍କ ନାଟକର ମହିମାସୂଚୀ ସନ୍ଦର୍ଭରେ ବ୍ୟବହାର କରିଥିଲେ, ଅନ୍ୟଟି ହେଉଛି ଓ୍ୱାର୍ଡ୍ସୱାର୍ଥଙ୍କ egoistical sublime ଯେଉଁଥିରେ କାବ୍ୟିକ କଳ୍ପନା ନିଜର ଶକ୍ତି ଓ ସାମର୍ଥ୍ୟଦ୍ୱାରା ବାହାରର ସବୁ ବିଶୃଙ୍ଖଳା ଓ ଅର୍ଥହୀନତାକୁ ଶୃଙ୍ଖଳାବଦ୍ଧ ଓ ଅର୍ଥପୂର୍ଣ୍ଣ କରେ । କଲେରିଜ, ଓ୍ୱାର୍ଡ୍ସୱାର୍ଥ, ଗେଟେ, ସିଲର ଶେଲ୍ଟବ-ଏମାନଙ୍କୁ ଦ୍ୱିତୀୟ ଶ୍ରେଣୀର ଚିନ୍ତକ ହିସାବରେ ନିଆ-ଯାଇପାରେ । ମଣିଷ ବ୍ୟକ୍ତିଗତ ଚେତନାର ଓ୍ୱାଚ-ଟାଓ୍ୱାର । ଏଠି ଗୁରୁତ୍ୱପୂର୍ଣ୍ଣ, ନିଜର ସଚେତନ ଆତ୍ମ-କୈନ୍ଦ୍ରିକ ଅନୁଭୂତିଦ୍ୱାରା ସବୁ ବସ୍ତୁ ଓ ଧାରଣାକୁ ଏହା ନାମ ଓ ରୂପ ଦିଏ । କାବ୍ୟିକ କଳ୍ପନା ବସ୍ତୁ ଓ ମନ ଭିତରେ ସେତୁ ହିସାବରେ କାମ କରିବାର ଧାରଣା ଦେକାର୍ତ୍ତେଙ୍କ ପରବର୍ତ୍ତୀ ଯୁଗର । ଯେଉଁ ମୁହୂର୍ତ୍ତରେ କୁହାହେଲା—I think therefore I am (cogito ergosum) ସେଇ ମୁହୂର୍ତ୍ତରେ କର୍ତ୍ତା ଓ କର୍ମ ଭିତରେ ଠିଆହେଲା ପାଚେରୀ, ନିଜ ବିଷୟରେ କବି ଅଧିକରୁ ଅଧିକତର ଜାଣିବାକୁ ଲାଗିଲା-ମନସ୍ତତ୍ତ୍ୱର ଗବେଷଣା ବଢ଼ି ବଢ଼ି ଚାଲିଲା । ଅନ୍ୟ ପକ୍ଷରେ ସମାଜ ବିଷୟରେ ମଧ୍ୟ ତା'ର ଧାରଣା ଓ ଜ୍ଞାନସମ୍ଭାର ବଢ଼ି ଚାଲିଲା । ତେଣୁ ଖାଲି ସମାଜ ନୁହେଁ, ବାହାରର ବସ୍ତୁ ଓ ଧାରଣା, ସମାଜ ବିଜ୍ଞାନ ଓ ଏ ନୂଆ ଯୁଗଧର୍ମ ପ୍ରତି କାବ୍ୟିକ ଚେତନାର ଆଭିମୁଖ୍ୟ ଦୁଇଟି ରୂପ ନେଲା । ଗୋଟିଏ ହେଲା ଏ ସବୁକୁ ଆପଣାର କରି, ପାଖକୁ ଆଉଜେଇ ନେଇ ନିଜର ଇଲାକାକୁ ଆହୁରି ବିସ୍ତୃତତର କରିବା । ଅନ୍ୟଟି ହେଲା ଚେତନାର ଚତୁଃପାର୍ଶ୍ୱ ପାଚେରୀ ଠିଆ କରେଇ ଏ ବିବିଧ ଜ୍ଞାନ, ଅନୁଭୂତି, ଧାରଣା ଓ ବସ୍ତୁଠାରୁ ସର୍ଜନଶୀଳ ଚେତନାକୁ ବଞ୍ଚେଇ ରଖିବା । ହାମଲେଟ୍‌ର ପ୍ରଶ୍ନ ଥିଲା To be or not to be । ଏଠି ପ୍ରଶ୍ନ ହେଲା to annex or to survive । ଏଇ ଦ୍ୱନ୍ଦ୍ୱର ପ୍ରତିଚ୍ଛବି ଦେଖାଯାଏ ମାୟାକୋଭସ୍କି ଆଉ ହାର୍ଟ କ୍ରେନ୍‌ଙ୍କ କବିତାରେ । ହାର୍ଟକ୍ରେନଙ୍କ ଭାଷାରେ "The task of poetry now is to absorb the machine, to acclimatise it." ସାମାଜିକ ଚେତନା ବିଷୟରେ ବି ସେ ଏଇକଥା କହି ପାରିଥାନ୍ତେ । ଏଇଟା

ହୁଏତ ସିଂବଲ୍ଲାକ୍ ଯେ, ଉଭୟ ଆପଣା ଆପଣା ଜୀବନରେ ଗଭୀର ବିଶୃଙ୍ଖଳା ଓ ବିରକ୍ତି ପରେ ଆତ୍ମହତ୍ୟାକୁ ବାଛି ନେଲେ ।

କୀଟ୍‌ସ ତାଙ୍କର ଗୋଟିଏ ଚିଠିରେ ଲେଖିଥିଲେ, "It is a wretched thing to confess; but it is a very fact that not one word I ever utter can be taken, in granted as an opinion growing out of my identical nature—how can it, when I have no nature? When I am in a room with people if I even am free from speculating on creations of my own brain, then not myself goes home to myself; but an identity of everyone begins so to press on me that. I am in a very little time annihilated." କାବ୍ୟିକ ପ୍ରକ୍ରିୟା ବିଷୟରେ ଏ ଧାରଣା ସମ୍ବନ୍ଧ ପ୍ରତ୍ୟେକ କବି ନିଶ୍ଚୟ ଢେର ଅଧିକ ସଚେତନ ଥିବେ । ତା' ସମ୍ବନ୍ଧ ରିଲକେଂକ କଥା ମନକୁ ଆସେ, "verses are not, as people imagine simply feelings; they are experiences." ଫିଲିଂ ବା ଅନୁଭବରୁ ଅନୁଭୂତିକୁ ରାସ୍ତା ବହୁତ ଦୂର । ସେଥିରେ ଦର୍ଶନେନ୍ଦ୍ରିୟଜନିତ କଳ୍ପନା ବା Visual Imagination ଶ୍ରବଣେନ୍ଦ୍ରିୟଜନିତ କଳ୍ପନା ବା Auditory Imagination ଆସେ, କାବ୍ୟରୂପ ବା ଫର୍ମ ଓ ଶୈଳୀ ମଧ୍ୟ ଆସେ । ତା' ଛଡ଼ା ଆସେ ଅଜସ୍ର ଅନୁଭବର ଐକ୍ୟତାନ ବା ଅର୍କେଷ୍ଟ୍ରା । କୋଉଠି କୋଉଦିନ କବି ଦେଖିଥିଲା ସୂର୍ଯ୍ୟ ବୁଡ଼ିଯିବାପରେ ନଈପାଣିର ଭଙ୍ଗା ତରଙ୍ଗରେ ଆଉଟା ସୁନା, ସ୍ମୃତିର ଭିଡ଼ ସବୁ ଡେଇଁ ସେ ଚଲାବାଟରେ ପୁଣି ସେ ଫେରେ; କେଉଁଦିନ ବଣରେ ଦେଖିଥିବା ବଣୁଆ ଫୁଲର ହସକୁ, କୋଉ ନାମହୀନ ଗାଁର ହରିଜନ ବସ୍ତିରେ କୁପୋଷିଆ ପିଲାର ପେଜୁଆ ଆଖିକୁ, ପିଲାମାନେ ଖାଇଥିବା ବେତମାଡ଼, କାନ୍ଦୁ, କୁସ୍ତିଆକୁ, ଅନେକ ରାତିର ଉଗ୍ର ସ୍ତ୍ରୀ-ପ୍ରେମକୁ, ସମୁଦ୍ର ଓ ଝଡ଼କୁ, ପାଖ ବିଛଣାରେ ମରି ଶୋଇଥିବା ଆତ୍ମୀୟ ସ୍ୱଜନର ମେଲା ଉମା ଆଖି ଓ ପାଖର କାନ୍ଦଣାକୁ, ପ୍ରସବ ବେଦନାର ଅନ୍ଧାରି ମୂଲକକୁ, ମଣିଷ ପ୍ରତି ମଣିଷର ଅତ୍ୟାଚାର, ଅବିବେକିତା ଓ ଅନ୍ୟାୟର ସ୍ମୃତିକୁ । ସେ ମଧ୍ୟ ଶିଖେ, ସେ ସବୁକୁ ଭୁଲିପାଏ, ଉଭାଏ ସେ ଗୁଡ଼ିକର ସ୍ମୃତିକୁ ଅଚେତନ ଓ ଅବଚେତନର

ଅଚଳ ଅନ୍ଧାରରେ ଯୋଜନ୍ତୁ ସେମାନେ କୋଉ ମୁହୂର୍ତ୍ତରେ ହଠାତ୍ ହନେ ଆନ୍ୟ କ'ଣ ଦେଖିବା ଶୁଣି ଆଗରେ ଆସି ଆଖି ମଳ ଛୁଡ଼ା ହୁଅନ୍ତି । ଅନୁଭୂତିର ଖତ, ଗୋବର, ଘାସ ଯେତେବେଳେ ରକ୍ତ ଓ ମାଂସ ସହିତ ମିଶି ଏକାକାର ହୋଇଯାଏ, କମ୍ପୋଷ୍ଟ ହୋଇ କବିର ମାଟି ବ୍ୟକ୍ତିତ୍ୱର ସହିତ ଏକ ଓ ଅଭିନ୍ନ ହୋଇପଡ଼େ, ସେତେବେଳେ ତାହା କବିତାର ଭିତ୍ତି ଭୂମି ହୋଇଥାଏ ।

ତେଣୁ ଖାଲି ସମାଜ ବିଷୟରେ କିଛି ଲେଖି ପକାଇଲେ କବିର ସାମାଜିକ ଚେତନା ଅଛି ବୋଲି କହିବା ହାସ୍ୟାସ୍ପଦ ହେବ । କବି ସମାଜତତ୍ତ୍ୱବିତ୍ ନୁହେଁ—କୌଣସି କଳାକାର ସମାଜ ତତ୍ତ୍ୱବିତ୍ ନୁହେଁ । ବର୍ଣ୍ଣନା ତା'ର କାମ ନୁହେଁ । ଅନୁଭୂତିର ଇନ୍‌ଟ୍ରିଇଟିଭ୍ ସଂଗଠନ ତା'ର ପ୍ରକୃଷ୍ଟ ଦାୟିତ୍ୱ ଓ କର୍ତ୍ତବ୍ୟ । ସାମାଜିକ ଚେତନାର ପରିପ୍ରକାଶ ପାଇଁ କେବଳ negative capability ବା egotistical sublime ଆଉ ଯଥେଷ୍ଟ ନୁହେଁ । ବୋଦ୍‌ଲେୟାରଙ୍କ ଭାଷାରେ କହିଲେ ହେବ, 'The modern conception of art is to create a suggestive magic including at the same time object and subject the world outside and the artist himself" । ଦେକାର୍ତ୍ତେଙ୍କ ଦର୍ଶନର ଗଡ଼ଖାଇ ଉପରେ କାବ୍ୟିକ କଳ୍ପନା ହିଁ ସେତୁ ହୋଇପାରେ ।

ସପ୍ତମରେ ଆମେ ମନେ ରଖିବା ଉଚିତ ହେବ ଯେ, ଏଇ ଦୃଷ୍ଟିକୋଣରୁ ପ୍ରତ୍ୟେକ କବି ବା ଶିଳ୍ପୀର ବ୍ୟକ୍ତିଗତ ଚେତନାରେ ସାମାଜିକ ଚେତନା ଉଣା ଅଧିକେ ନିଶ୍ଚୟ ପ୍ରତିଫଳିତ ହେବ । ସମାଜର ସ୍ଥିତି ସତେ ଯେମିତି ଆକାଶ । ବ୍ୟକ୍ତିଚେତନାର ଯେତିକି ଅଂଶ ଆକାଶ-ଅଭିମୁଖୀ, ସେତିକି ଅଂଶରେ ଆକାଶର ଛାଇ ବା ପ୍ରତିବିମ୍ବ ନିଶ୍ଚୟ ପଡ଼ିବ । କିନ୍ତୁ ତାକୁ ରୂପ ଦେବାରେ ହୁଏତ କିଏ ନିର୍ଲିପ୍ତ ନିର୍ବିକଳ୍ପ ଭାବରେ ସେ ଛବିକୁ ଆଙ୍କି ଦେଇପାରେ, ଆଉ କିଏ ବା ସେ ଚେତନାର ରୂପାୟନ ଭିତର ଦେଇ ସମାଜରେ ପରିବର୍ତ୍ତନ ଆଣିବାକୁ ଚାହିଁବ । ସେ ହୁଏତ ବିଶ୍ୱାସ କରିବ, ମାର୍କସଙ୍କ ପନ୍ଥାରେ—ଯେ ବାସ୍ତବତାକୁ ବୁଝାଇବାରେ ଦାର୍ଶନିକମାନେ ଏ ପର୍ଯ୍ୟନ୍ତ ବ୍ୟସ୍ତ, ଆଉ ଏବେ ସମୟ ଆସିଛି ବାସ୍ତବତାକୁ ବଦଳାଇବାର । ଭାଙ୍ଗିଚୁରି, ପିଟିପାଟି ନିଜର କଳ୍ପିତ, ମନୋମତ ରୂପ ଦେବାର । ନିତ୍ସେଙ୍କ

ସହ ତୁଏତ ସେ ବିଶ୍ବାସ କରିପାରେ ଯେ, 'no artist tolerates reality' ବା ଆଁଦ୍ରେ ମାଲରୋଁଙ୍କ ପରି ଚିନ୍ତା କରିପାରେ ଯେ, an artist is always engaged in culpable rivalry with God ବା ସେ ବିଶ୍ବାସ କରିପାରେ ଯେ, ସେ ପ୍ରକୃତରେ 'the unacknowledged legislator of the world. ସାମାଜିକ ଚେତନାର ଆତ୍ମମୁଖ୍ୟ ଏଇପରି ଦୁଇପ୍ରକାର ହୋଇପାରେ । ଗୋଟିଏ ଅର୍ଥରେ କବିତା ଓ କଳା ମୂଲ୍ୟବୋଧର ବାହକ, ଅନ୍ୟଟିରେ ତାହା ମୂଲ୍ୟବୋଧର ସ୍ରଷ୍ଟା ଓ ଦିଗ୍‌ନିର୍ଦ୍ଦେଶକ । ଅର୍ଥ ଓ ଅର୍ଥର ଯୋଗସୂତ୍ର ବା communication ର ସମସ୍ୟା ଏ ଉଭୟ କ୍ଷେତ୍ରରେ ଭିନ୍ନ ହେବା ସ୍ୱାଭାବିକ ।

( ଦୁଇ )

ଉପରୋକ୍ତ ସାଧାରଣ ଆଲୋଚନାର ପରିପ୍ରେକ୍ଷୀରେ ଆଧୁନିକ କବିତାରେ ସାମାଜିକ ଚେତନାର ଧାରା ବିଷୟ ସଂକ୍ଷେପରେ ଏଠିକି ଆଲୋଚନା କରାଯାଇପାରେ । ଆଲୋଚନାକୁ ସହଜ କରିବାପାଇଁ ଏ ଧାରାରେ ମୁଁ ତିନୋଟି ମୁଖ୍ୟ ବିଭାଗ ବା ଆଂଗିକକୁ ଗ୍ରହଣ କରିନେଉଛି । ଏ ବିଭାଗ ତିନୋଟି ପରସ୍ପରଠାରୁ ଯେ ସମ୍ପୂର୍ଣ୍ଣ ପୃଥକ୍ ବା ଏଗୁଡ଼ିକ ଯେ ଏକତ୍ର କୌଣସି ଏକ କବିର କବିତାରେ ପରିସ୍ଫୁଟ ହୋଇ ନ ପାରନ୍ତି, ତାହା ମୋର ପ୍ରତିପାଦ୍ୟ ନୁହେଁ । ତିନୋଟି ବିଭାଗ ଐତିହାସିକ ପୃଷ୍ଠଭୂମିରେ ଭିନ୍ନ ଭିନ୍ନ ସମୟରେ ଦେଖା ଦେଇଥିଲେ ମଧ୍ୟ ତାହାକୁ କୌଣସି କାଟ୍‌ଛାଣ୍ ଐତିହାସିକ ତାରିଖ ବା ସନହାର ଭିତ୍ତିକ କରାଯାଇ ପାରିବ, ଏହା ବି ମୋର ପ୍ରତିପାଦ୍ୟ ନୁହେଁ । ତିନୋଟି ଧାରା ହେଲା —

(୧) ପ୍ରଥମତଃ ପାଶ୍ଚାତ୍ୟ ଦେଶରେ ଊନବିଂଶ ଶତାବ୍ଦୀର ରାଷ୍ଟ୍ରସ୍ୱାଧୀନତା (Nation-State)ର ଅଭ୍ୟୁଦୟ, ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧର ପୃଷ୍ଠଭୂମିର କବିତା, ଋଷୀୟ ବିପ୍ଳବ ଓ ଅନ୍ୟାନ୍ୟ ଦେଶରେ ସାମାଜିକ ଅନ୍ୟାୟ, ଅନୀତି ଓ ଅତ୍ୟାଚାରର କବିତା । ଏ ଭିତରେ ଭାରତବର୍ଷ ପରି ଦେଶରେ ସ୍ୱାଧୀନତାର ପିପାସା ଓ ଦେଶାତ୍ମବୋଧ ସମ୍ବଳିତ କବିତା, ସାମାଜିକ ବିଦ୍ରୂପ ସାଟାୟାର୍ ଓ Irony ମଧ୍ୟରେ ପ୍ରକାଶିତ ।

(୨) ଦ୍ୱିତୀୟତଃ ଯୁଦ୍ଧ, ସଂଘର୍ଷ, ବିପ୍ଳବ ରକ୍ତପାତରେ ଉଦ୍‌ଘାଟିତ, ମୂଲ୍ୟବୋଧର ଅବକ୍ଷୟରେ ଜର୍ଜରିତ, ଉଦ୍‌ଯାନ ଓ ପରମାଣୁ ବୋମାର ଛାଇତଳେ ଆସନ୍ନ-ମୃତ୍ୟୁ ଆଶଂକାରେ ଆଶଙ୍କିତ ସାମାଜିକ ଚେତନାର ଛବି ଓ ସେ ଛବିକୁ ରୂପ ଦେବାପାଇଁ ଆର୍କିଟାଇପ୍, ମଧ୍ୟ ପରିପୃକ୍ତ ଓ ଗଭୀର ସିମ୍ବଲ୍‌ର ବ୍ୟବହାର ।

(୩) ତୃତୀୟତଃ ସାମୂହିକ ମୃତ୍ୟୁର ସମ୍ଭାବନା ମୂଲ୍ୟବୋଧର କ୍ଷୟ, ସାମାଜିକ ସମନ୍ୱୟର ଅଭାବର ପରିପ୍ରେକ୍ଷୀରେ ବ୍ୟକ୍ତିଗତ ମୂଲ୍ୟବୋଧ । ସ୍ନେହ ଓ ପ୍ରେମ, ମୁହୂର୍ତ୍ତକ ପାଇଁ ସତ୍ୟ ବା ବାସ୍ତବତାର କ୍ଷୀଣ ଆଭାସ ପାଇଲାପରେ ତାକୁ ନିଜର ଏକ ବ୍ୟକ୍ତିଗତ ସୀମିତ କିନ୍ତୁ ଆନ୍ତରିକ ସ୍ୱର ଭିତରେ ପ୍ରକାଶ କରିବାର ଉଦ୍ୟମ । ସେ ସ୍ୱରର ଅନ୍ତରିକତା ଏତେ ବେଦନା-ବ୍ୟାକୁଳ ଓ ଏତେ ନିବିଷ୍ଟ ଘନ ସାଂଦ୍ର ହୋଇପାରେ, ଯାହା ବ୍ୟକ୍ତିର ଚେତନାରେ ହିଁ ସମାଜର ଚେତନାକୁ ପ୍ରତିଫଳିତ କରାଇପାରେ । ଯାହା ଅନନ୍ୟସାଧାରଣ ବା unique ତାକୁ ସର୍ବସାଧାରଣ ବା universal ସହିତ ମିଳେଇ ନେଇପାରେ । ସ୍ୱର ହୋଇପାରେ ଆବେଗମୟ, ହୁଏତ ନିର୍ଲିପ୍ତ ଭାବରେ ରୋମାଣ୍ଟିକ୍; କିନ୍ତୁ ଅତ୍ୟନ୍ତ ସରଳ ଓ ବେଦନାର୍ଦ୍ର । ଅନ୍ୟ ପକ୍ଷରେ ଏ ପ୍ରକାର କବିତାରେ ବ୍ୟକ୍ତିଗତ ଶବ୍ଦ ମଧ୍ୟ ଖୋଜିବାର ପ୍ରୟାସ ବି ବେଶ୍ ହୋଇପାରେ ।

ବର୍ତ୍ତମାନ ଏ ତିନୋଟି ଧାରାର ଆଉ ଟିକିଏ ବିସ୍ତୃତ ଆଲୋଚନା କରାଯାଇ-ପାରେ ।

## (ତିନି)

୧୮୫୭ ମସିହାରେ ବୋଦ୍‌ଲେୟାରଙ୍କ The Flowers of Evil ପ୍ରକାଶିତ ହୁଏ । ଏହାକୁ ଆଧୁନିକ କବିତାର ଜନ୍ମତିଥି ଭାବରେ ସାଧାରଣତଃ ଧରା-ଯାଇଥାଏ । ଏହାପରେ ପ୍ରଥମ ପଚାଶ ବର୍ଷ ଏ ଆଧୁନିକତାର ଧାରା ମୁଖ୍ୟତଃ ଫ୍ରାନ୍ସରେ ହିଁ ସୀମିତ ଥିଲା । ୧୯୦୭-୮ଠାରୁ ଏହା ଅନ୍ୟାନ୍ୟ ବିଭିନ୍ନ ଦେଶରେ ଶୈଳୀ, ଭାଷା ଓ ଆଙ୍ଗିକକୁ ପ୍ରଭାବିତ କରିବାକୁ ଲାଗିଲା । ବୋଦ୍‌ଲେୟାର ହୁଏତ ଆରମ୍ଭକଲେ ଅବଚେତନ ଓ ଅଚେତନ ଇଲାକାର ଆବିଷ୍କାର ଓ କବିତାରେ ତା'ର ରୂପାୟନ । କିନ୍ତୁ ସେଇଦିନଠୁଁ ପାଶ୍ଚାତ୍ୟ ସମାଜରେ

ଯୁଦ୍ଧବିଗ୍ରହ, ସାମାଜିକ ଶ୍ରେଣୀସଂଘର୍ଷ, ସାମାଜିକ ଓ ଅର୍ଥନୈତିକ ସଙ୍କଟରେ ଘୁରି ଧୀରେ ଧୀରେ ଘନେଇବାକୁ ଆରମ୍ଭ କରିଥିଲା । ଫ୍ରାନ୍ସରେ ଊନବିଂଶ ଶତାବ୍ଦୀର ଆରମ୍ଭରୁ Reign of Terror., ନେପୋଲିଅନ୍‌ଙ୍କ ସାମ୍ରାଜ୍ୟ ଓ ଓ୍ୱାଟର୍‌ଲୁର ପରାଜୟର ବିଷାଦ ଓ ବିତୃଷ୍ଣା, ସାମ୍ୟବାଦୀ, ଯୁଦ୍ଧବିଗ୍ରହୀ ସମାଜର କ୍ଷୟ ଓ ସାଂସ୍କୃତିକ ସଂଘର୍ଷ ପରେ ସାମାଜିକ ସମନ୍ୱୟ ଓ ସାଂସ୍କୃତିକ ଐତିହ୍ୟ ସୁପ୍ରତିଷ୍ଠିତ ହୋଇ ପାରିଲାନି । ଅଷ୍ଟ୍ରିଆ ଓ ରୁଷିଆ ଶିଳ୍ପବିପ୍ଳବର ବାହାରେ ରହିବାରୁ ସଂଘର୍ଷ, ଅର୍ଥନୈତିକ ଅସ୍ଥିତି ସେ ଦୁଇ ଦେଶରେ ଅନିବାର୍ଯ୍ୟ ହୋଇ ପଡ଼ିଲା । ଇଂଲଣ୍ଡ୍, ଜର୍ମାନୀ ଓ ଆମେରିକାରେ ଶିଳ୍ପ ଓ ବିଜ୍ଞାନର ଅଭ୍ୟୁଦୟ ଫଳରେ ଅପ୍ରାକୃତିକ, ସହସା ସାମାଜିକ ପରିବର୍ତ୍ତନ ଆସିଲା । ମୂଲ୍ୟବୋଧର ସଙ୍କଟ ସାମାଜିକ ସମ୍ପର୍କରେ ଅତି ଶୀଘ୍ର ଏ ତିନି ଦେଶରେ ଦେଖାଦେଲା । ଡିକେନ୍ସଙ୍କ 'gin shops on the right and on the left' ଏ ଛବି ମନକୁ ଆଣେ । ସାମାଜିକ ଶୋଷଣ, ଅନ୍ୟାୟ, ଅତ୍ୟାଚାର, ଆର୍ଥିକ ଜୀବନରେ ଦୃଢ଼ତାର ଅଭାବ ଓ ତଜ୍ଜନିତ ଶ୍ରେଣୀ-ସଂଘର୍ଷ ଅଚିରେ ଦେଖାଦେଲା । ଅନ୍ୟ ପକ୍ଷରେ ରୁଷିଆରେ କୁଲକ୍‌ର ସଂସ୍ଥା ପେଣ୍ଟ ଓ ସାମ୍ରାଜ୍ୟ ଓ ଜାର୍-ତନ୍ତ୍ରର ପରସ୍ପର ବିରୋଧ ଊନବିଂଶ ଶତାବ୍ଦୀର ଶେଷଭାଗକୁ ଅତ୍ୟନ୍ତ ଉଗ୍ରାବସ୍ଥ ହୋଇପଡ଼ିଥିଲା । ସଂଗ୍ରାମବାଦ ସେଠି ସାମାଜିକ ଚେତନାର ଏକମାତ୍ର ପ୍ରଥା ହେବା ହୁଏତ ସେ ପରିପ୍ରେକ୍ଷୀରେ ଆଜି ସ୍ୱାଭାବିକ ମନେହେବ । ଶିଳ୍ପ ବିପ୍ଳବ କିନ୍ତୁ ସେ ପର୍ଯ୍ୟନ୍ତ ରୁଷିଆରେ ଆସି ନ ଥାଏ । ରୁଷିଆର ପ୍ରଥମ ରେଳପଥ ହୁଏ ୧୮୯୭ ମସିହାରେ । ବୋଦଲେୟାର କବିଙ୍କର ବହି ପ୍ରକାଶନର ୪୦ ବର୍ଷ ପରେ ଆଉ ରୁଷ ବିପ୍ଳବର ମାତ୍ର ୨୦ବର୍ଷ ପୂର୍ବରୁ । ଶତାବ୍ଦୀର ଶେଷବେଳକୁ ବୋଦ୍‌ଲେୟାରଙ୍କ କବି ଧାରଣାର ପ୍ରଫେଟ୍ ବା ଭବିଷ୍ୟତବକ୍ତା ନିଜର ସ୍ୱର କ୍ଷୀଣ ହେବା କଥା ବେଶ୍ ଅନୁଭବ କରିପାରିଥିଲା । ତା' ଚେତନାରେ ଘୁରି ପଡ଼ ସାରିଥିଲା ଆସନ୍ନ ଦିନର ବିପ୍ଳବ, ରକ୍ତପାତ ଓ ଯୁଦ୍ଧର । ଜର୍ମାନ କବି ହଫ୍ ମାନଷ୍ଟଲ୍ କବିତାରେ ଆସନ୍ନ ପ୍ରୋଲେଟାରିଏଟ୍, ଶାସକ ଓ ଶାସିତ ଗୋଷ୍ଠୀର ବିବାଦର ସୂଚନା ବେଶ୍ ମିଳେ—

> A shadow falls from those lives over other lives.
> And the lights are bound to be heavy.

ବା ୧୯୦୫ରେ ରୁଷୀୟ କବି ଆଲେକ୍‌ଜାଣ୍ଡାର ବ୍ଲକ୍‌ଙ୍କ କବିତାରେ ।

No more the heart may live at peace
The clouds have gathered
ବା ଥମାସ୍ ହାର୍ଡ଼ିଙ୍କ କବିତାରେ
Ere rescience shall be reaffirmed
How long, how long ?
ବା ୟେଟ୍ସଙ୍କ "The Second Comnig" ରେ
Somewhere in sands of the desert
A shape with lion body and the head of a man
A gaze blank and pitiless as the sun
Is moving its slow thighs, while all about it
Reel shadows of the indignant desert birds.

ଆଜି କେତେଦୂର ଧ୍ୱଂସ, ସଂଘର୍ଷ, ଯୁଦ୍ଧ ବିଗ୍ରହ ଓ ରକ୍ତପାତ ? କେତେଦୂର ଶୂନ୍ୟତା, ମରୁଭୂମି, ସ୍ଫିଂକ୍ସର ନିରବତା ଓ ମରୁପକ୍ଷୀର ନିଃସଙ୍ଗତା ? କେଇଟା ବର୍ଷରେ ଏ ଚିନ୍ତା ଆଜି ଅନୁଭୂତି କବିତାର ଇଲାକାକୁ ମାଡ଼ି ଆସିଲା ଭାବିବାର ବିଷୟ । ସାମାଜିକ ଚେତନାର ପକ୍ଷପାତି ସମାଲୋଚକମାନେ ସ୍ୱାଗତ କଲେ ଯେତେବେଳେ, ଲୁହାଗଲା ଯେ ମନ୍ଦିର ଗୀର୍ଜା ମସ୍‌ଜିଦ୍ ଓ ଧର୍ମଗ୍ରନ୍ଥ ଛାଡ଼ି; ରାଜା, ପରିଷଦ, ପ୍ରାସାଦ, ସାମନ୍ତବାଦୀ ସମାଜର ଜୌଲୁସ୍ ଛାଡ଼ି କବିତା ଆସିଲା ସାଧାରଣ ମଣିଷର କଥା କହିବାକୁ, ସମାଜର ହାନିଲାଭ, ହସ କାନ୍ଦ କଥା କହିବାକୁ, କେଇଟା ଦିନ ପରେ ସାମାଜିକ ଚେତନା ହେଲା ବିଖଣ୍ଡିତ, ଦ୍ୱିଧାଗ୍ରସ୍ତ, ଅବସନ୍ନ, ଯୁଦ୍ଧ ଓ ବିପ୍ଳବ ଦୁନ୍ଦୁଭି ନିଷାଣ ବାଜି ଉଠୁଥିଲା । ତ ଅନନ୍ତକେଓ ଲେଖିଲେ ରକ୍ତ ଓ ଇସ୍ପାତ; ଦେହ ଆଉ ମାଂସର କବିତା । ସାମ୍ରାଜ୍ୟବାଦର ଛାଇ ପ୍ରଥମ ବିଶ୍ୱଯୁଦ୍ଧକୁ ଘନୀଭୂତ କରୁଥିଲା । ଆସନ୍ନ ସଂଘର୍ଷର ରୂପ ପୃଥିବୀରେ ପ୍ରଳୟ ସମ୍ଭାବନାର ଦୃଷ୍ଟି ଦେଲା ବ୍ଲକ, ଜର୍ଜ ଟ୍ରାକ୍‌ଲ ଓ ଜର୍ଜ ହେଇମ୍‌ଙ୍କୁ ।

On they march with sovereign tread
With a starving dog behind,
With a blood-red flag ahead
Jesus Christ, the Son of Man. (Block)

ପ୍ରଥମ ମହାଯୁଦ୍ଧ ଆରମ୍ଭରେ ଟ୍ରାକ୍ଲ ଖୁସି ହେଲେ ଯେ ଯୁଦ୍ଧ ଆସିଛି । ଗଲେ ଗାଲିସିଆନ୍ ଫ୍ରଣ୍ଟକୁ । ହତ୍ୟା ବିଭିଷିକା, ରକ୍ତପାତ ଓ ଯୁଦ୍ଧକୁ ସେ ଗ୍ରହଣ କରି ନେଇଥିଲେ ତାଙ୍କସ୍ୱ ଜୀବନର ଉଜ୍ଜୀବନର ରୂପାୟନ ଭାବରେ । କିନ୍ତୁ ରକ୍ତ ଓ ବିଭୀଷିକାର ପ୍ରକୃତ ରୂପରେ ଯୁଦ୍ଧକ୍ଷେତ୍ରରେ ସେ ହେଲେ ପାଗଳ । ପାଗଳାମି ଭିତରେ ବିଷ ଖାଇ ସେ ପୃଥିବୀକୁ ବିଦାୟ ଦେଲେ ।

ମୃତ୍ୟୁର କେଇଦିନ ପୂର୍ବର କବିତାରୁ ଏ ଉଦ୍ଧୃତି—

The right encircles dying warriors
The wild laments of their torn mouths
The split blood gathers cool of the moon
Uuder the gold boughs of rights and stars.

ଯୁଦ୍ଧ ବିଭୀଷିକାର ବିଭିନ୍ନ ସ୍ୱର ଶୁଣାଗଲା ଇଟାଲୀୟ କବି ଉଙ୍ଗାରେଟ୍ଟି, ଇଂରେଜ କବି ଉଇଲ୍ଫ୍ରେଡ୍ ଆଓ୍ୱେନ୍, କେତେକାଂଶରେ ରବର୍ଟ ଗ୍ରେଭ୍ସ, ସିଗ୍ଫ୍ରାଏଡ୍ ସାସୁନ୍ ଓ ଏଡ୍ମଣ୍ଡ ବ୍ଲଣ୍ଡେନଙ୍କ କବିତାରେ ।

ରୁଷୀୟ ବିପ୍ଳବର ଛବି ଆଙ୍କିଲେ ମାୟାକୋଭସ୍କି । ହିଂସା ଓ ବିଦ୍ୱେଷର ଚର୍ଯ୍ୟାରେ ଫ୍ରଏଡ୍ ଓ ଲେନିନ୍ ଯେ ପରସ୍ପରର ସହାୟକ, ଏକଥା କୁହାଯାଇ-ପାରେ । ଅବଚେତନ ମନର ସ୍ୱର ଓ ଲେନିନ୍ଙ୍କ ବିପ୍ଳବାତ୍ମକ ପନ୍ଥା ଗୋଟିଏ ଚିନ୍ତାର ଦୁଇଟି ଆଙ୍ଗିକ ମାତ୍ର । ତା' ପରେ ପରେ ଆସିଲା ୧୯୨୪ର ସର୍ରିଅଲିଷ୍ଟ ମ୍ୟାନିଫେଷ୍ଟୋ, ଡାଡାଇଜମ୍ ଆଁଦ୍ରେ ବ୍ରେତଁ, ପଲ୍ ଏଲୁଓ୍ୟାର୍ଡ, ହାର୍ଟକ୍ରେନ୍ ଓ ଡିଲାନ୍ ଥମାସ୍ । ସାମାଜିକ ମୂଲ୍ୟବୋଧ ଭାଙ୍ଗି ପଡ଼ୁଥିଲା ଓ ଅଧାଛାଇ ଅଧା ଆଲୁଅରେ ସମାଜର ଭଗ୍ନାଂଶରେ କବି ଖୋଜୁଥିଲା ବିଖଣ୍ଡିତ ବ୍ୟକ୍ତି-ଚେତନାର ପ୍ରତିରୂପ । ସ୍ପେନର ଗୃହଯୁଦ୍ଧ, ସ୍ପେଣ୍ଡର୍, କୋଏଷ୍ଟଲର, ଲୋର୍କା, ଅଡେନ୍ ଏ ସମସ୍ତଙ୍କୁ ଗ୍ରାସ କରିଦେଲା ଓ ଲୋର୍କା ସେଥିରେ ପ୍ରାଣ ହରାଇଲେ । ପ୍ରଥମ ମହାଯୁଦ୍ଧ, ଆର୍ଥନୀତିକ ଦୁର୍ଗତି, କମ୍ୟୁନିଜମ୍, ଫାସିଜ୍ମ, ଅନ୍ତର୍ବିପ୍ଳବ, ବିଭୀଷିକା, ରକ୍ତପାତ ଭିତରେ ୟୁରୋପୀୟ କବିତାର ସାମାଜିକ ଚେତନା କ୍ଳାନ୍ତ, ଅବସନ୍ନ ଓ ମ୍ରିୟମାଣ ହୋଇପଡ଼ିଲା ।

ଆଧୁନିକ ଓଡ଼ିଆ କବିତାରେ ରାଧାନାଥ ଦେଶପ୍ରେମ ଓ ଓଡ଼ିଶାର ବିଭିନ୍ନ ସ୍ଥାନ, ଘଟଣା, ଦେଶ ଓ କାଳକୁ କବିତା ଭିତରକୁ ଆଣିଲେ । ଫକୀର

ମୋହନ ସାଧାରଣ ଲୋକର ଜୀବନ, ଭଗିଆ, ସାରିଆ, ଚମାର ଜୀବନକୁ ନେଇ ଉପନ୍ୟାସ ରଚନା କଲେ । ପରେ ପରେ ନନ୍ଦକିଶୋର, ପଦ୍ମଚରଣ, ଗଙ୍ଗାଧର, ଗୋପବନ୍ଧୁ, ମାନସିଂହ, କାଳିନ୍ଦୀଚରଣ ଇତ୍ୟାଦି ଏ ଚେତନାର ବିଭିନ୍ନ ରୂପ ନିଜ ନିଜ କବିତାରେ ଆଣିଲେ । ତାପରେ ସାମାଜିକ ଚେତନା ହେଲା ଶ୍ରେଣୀସଂଘର୍ଷ, ମାର୍କସବାଦ ଓ ପ୍ରଗତିବାଦୀ ସଂସ୍କାର କବିତା, ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ, ଭଗବତୀ ପାଣିଗ୍ରାହୀ ଓ ରବି ସିଂହ ଇତ୍ୟାଦିଙ୍କର ନାମ ମନକୁ ଆସେ । ପ୍ରଥମୋକ୍ତ ଦୁଇଜଣ ଅବଶ୍ୟ ପରେ ସାମାଜିକ ଚେତନାର ଆଡୁର ଭିନ୍ନ ଇଲାକାକୁ ଯାଇଛନ୍ତି । ସାମାଜିକ ବା ରାଜନୈତିକ ବନ୍ଧିବ ଭିତରେ ସୀମିତ ହୋଇ ରହିନାହାନ୍ତି ।

( ସ୍ୱର )

ଯୁଦ୍ଧ ବିଭୀଷିକା, ରକ୍ତପାତ, ଅନ୍ତର୍ବିପ୍ଳବର ଦ୍ୱିତୀୟ ପର୍ଯ୍ୟାୟରେ ସାମାଜିକ ଚେତନା ହେଲା ବିଚଳିତ, ଭଗ୍ନ, ବିଷାଦଗ୍ରସ୍ତ । ସତେ ଯେମିତି କୁରୁକ୍ଷେତ୍ରରେ କାରୁଣ୍ୟ ପ୍ରପୀଡ଼ିତ ଅର୍ଜୁନ । ପ୍ରତ୍ୟୟ ଓ ଭରସା ଭାଙ୍ଗିଭୁଚି ଚୂରମାର ହୋଇଯାଇଥିଲା । ଆଧୁନିକ ଧର୍ମର ବିଶ୍ୱାସ ତୁଟି ଆସୁଥିଲା । ତୁଟି ଯାଇଥିଲା ବି City of Gcd ପରେ ପୃଥିବୀରେ ତାର ପୁନଃପ୍ରତିଷ୍ଠା ବିପ୍ଳବ ଓ ଶ୍ରେଣୀ ସଂଘର୍ଷ ଜରିଆରେ । ରୁଷୀୟ ବିପ୍ଳବର ପରବର୍ତ୍ତୀ ଅବସ୍ଥାରେ ଅନେକ କଳାକାର ଯେଉଁମାନେ ନିଜର ସବୁ ଆଶା ଓ ଆଶ୍ୱାସନାକୁ ସେଇଠି ବନ୍ଧକ ପକେଇଥିଲେ—ସେମାନେ ଭାବିଲେ ଯେ, ଏ ଦେବତା ଧୋକା ଦେଲା । ସମାଜ ଓ ଇତିହାସର ବିବର୍ତ୍ତନର ପର୍ଯ୍ୟାୟରେ "ବର୍ତ୍ତମାନ" ମନେ ହେଲା ଆଶାହୀନ ବିରାଟ ମରୁପ୍ରାନ୍ତର 'ୱେଷ୍ଟଲାଣ୍ଡ୍', ଅନିଶ୍ଚୟତା, ସନ୍ଦେହ ଭିତରେ ଯୁଦ୍ଧର ଦୁନ୍ଦୁଭି ଓ ପ୍ରଥମାବସ୍ଥାର ଆନନ୍ଦ ଉଲ୍ଲାସ ହଜି ଯାଇଥିଲା । ସ୍ପେନୀୟ ଗୃହଯୁଦ୍ଧରେ ହଜିଲେ ସମସାମୟିକ ସ୍ପେନର ଦୁଇ ବିଶିଷ୍ଟ କବି ମିଗୁଏଲ ଡ଼ି ଉନାମୁନୋ ଓ ଆଣ୍ଟୋନିଓ ମାଚାଡ଼ୋ । ଉଭୟଙ୍କ କବିତାରେ ସନ୍ଦେହ, ଦୁଃଖ ଓ ବେଦନାର ଆନ୍ତରିକ ସ୍ୱର ମରୁଭୂମିର କବିତା । ଇଟାଲୀୟ କବି ଉଙ୍ଗାରେଟିଙ୍କ କବିତାରେ ସେଇ ଚିତ୍ର । ଏ ତିନିହେଁ କିନ୍ତୁ ନୈରାଶ୍ୟ ଓ ସନ୍ଦେହକୁ ଲିରିକ୍‌ର ରୂପ ଦେଇଥିଲେ । ଅନ୍ୟପକ୍ଷରେ ଏଲିଅଟ୍, ପାଉଣ୍ଡ ଆଉ ଡେଭିଡ଼୍ ଜୋନ୍‌ସ ଏମାନେ ନୃତତ୍ତ୍ୱ, ଇତିହାସ ଓ ସଂସ୍କାରକୁ

ଫେରିଯାଇ ଖୋଜିଲେ ସାଂସ୍କୃତିକ ବିପର୍ଯ୍ୟୟର ଚେର । ଫ୍ରେଜରଙ୍କ Golden Bough, ଜେସି ୱେଷ୍ଟନଙ୍କ From Romance to Ritual କବିତାର କଥାବସ୍ତୁକୁ ସାହାଯ୍ୟ କଲା । ମୂଲ୍ୟବୋଧରେ ଆସିଲା ଗଭୀର ପରିବର୍ତ୍ତନ । ଡି. ଏଚ୍. ଲରେନ୍ସ ଫେରିଲେ 'ପ୍ରକୃତି'କୁ କିନ୍ତୁ ପ୍ରକୃତି ଆଉ ୱାର୍ଡ଼ସୱାର୍ଥଙ୍କ ପ୍ରକୃତି ନୁହେଁ—ଶିକ୍ଷକ ନୁହେଁ—ସେ ଲରେନ୍ସଙ୍କ ପାଇଁ ଆଦିମ ଅବଚେତନ, ସେକ୍ସ; ହିଂସା, ବିଦ୍ୱେଷ ଓ ଧ୍ୱଂସର ସିମ୍ବଲ । ସେମିତି ଫସ୍କାରକୁ ଫେରିଲେ ପାଉଣ୍ଡ, କିନ୍ତୁ ଫସ୍କାରର ସ୍ୱାଗତ ପାଇଁ ନୁହେଁ । ଋଣଦାନ ପଦ୍ଧତିର ସମାଲୋଚନା କରି ଇତିହାସକୁ ଘୃଣା କରିବାପାଇଁ Sweeney poems, Hollowmen Ask Wednesday ଭିତରେ long songs of Alfred Prufrock ଓ Wastelandର ଗଭୀର ଜିଜ୍ଞାସା ଆତୁର ଆବେଦନ । ପ୍ରତ୍ୟୟର ମୂଳ ଖୋଜି ଖୋଜି ହୁଏତ Four Quartets ରେ ପହଞ୍ଚିବା ପର୍ଯ୍ୟନ୍ତ ।

## ( ପାଞ୍ଚ )

. କେତେକ କଳାକାରଙ୍କ ମନରେ ସନ୍ଦେହ ଆସିଲା ଯେ, ନୃତତ୍ତ୍ୱ ପୁରାଣ ଓ ଇତିହାସ ଦ୍ୱାରା ମଣିଷର ଦୁର୍ବହ ଅବସ୍ଥାକୁ ରୂପ ଦିଆଯାଇପାରେ ସତ, କିନ୍ତୁ ଗୋଟିଏ ଭଗ୍ନ, ଖଣ୍ଡିତ ଦ୍ୱିଧାଗ୍ରସ୍ତ ସମାଜରେ କ'ଣ କୌଣସି ସାର୍ବଜନୀନ ସତ୍ୟ ସମ୍ଭବ ? ଏ ଯୁକ୍ତିର ସପକ୍ଷରେ ବିପକ୍ଷରେ ବହୁତ କିଛି କୁହାଯାଇ-ପାରେ; କିନ୍ତୁ ମୋର ଉଦ୍ଦେଶ୍ୟ ତା' ନୁହେଁ । ଏଠି ଉଦ୍ଦେଶ୍ୟ କେବଳ ଏତିକି ଯେ, ଇଂଲଣ୍ଡ ଓ ଆମେରିକାରେ ଅନେକ କବି କେବଳ ବ୍ୟକ୍ତିଗତ ସ୍ତରରେ ବିଶ୍ୱାସ କରିବାକୁ ଲାଗିଲେ, ହିରୋସିମା ଓ ନାତ୍ସି କନ୍‌ସେଂଟ୍ରେସନ କ୍ୟାମ୍ପ ପରେ ସାର୍ବଜନୀନତାରେ ଆଉ ହୁଏତ ବିଶ୍ୱାସ ରହିଲାନି । ବ୍ୟକ୍ତିଗତ ବିଶ୍ୱାସ, ବ୍ୟକ୍ତିଗତ ପ୍ରେମ ଓ ଅନୁଚିନ୍ତନ, ମୁହୂର୍ତ୍ତିକର ସତ୍ୟରେ ବିଶ୍ୱାସ ଏସବୁକୁ ନେଇ କବିତା ଲେଖିଲେ (ଊନବିଂଶ ଶତାବ୍ଦୀର କବି Emily Dickinsonଙ୍କ ପରି) ଫିଲିପ୍ ଲର୍କିନ୍, ରବର୍ଟ ଲୋୱେଲ୍, ଆନ ସେକ୍‌ସଟନ, ଆର୍. ଏସ୍. ଥମାସ୍, ଥିଓଡ଼ର ରୋଥେକେ, ଭରନନ୍ ୱାଟକିନ, ଜର୍ଜ ବାର୍କର, ଡବ୍ଲ୍ୟୁ. ଏସ୍. ଗ୍ରାହାମ୍, ସିଲ୍‌ଭିଆ 'ପ୍ଲାଥ୍' ଇତ୍ୟାଦି । ସ୍ୱର ସରଳ, ଲିରିକାଲ କିନ୍ତୁ ବେଦନାବୋଧର ଅନ୍ତର୍ଦୃଷ୍ଟି ତୀକ୍ଷ୍ଣ ଏ ସବୁ କବିତାରେ । ବିଶଦ ଆଲୋଚନା ଏଠି ସମ୍ଭବ ନୁହେଁ; କିନ୍ତୁ ଏତିକି କୁହାଯାଇପାରେ ଯେ ଧ୍ୱଂସ, ଅବିଶ୍ୱାସ,

ସନ୍ଦେହ ଏ ସବୁର ପଶ୍ଚାତ୍‌ପ୍ରେକ୍ଷୀରେ ମୂଲ୍ୟବୋଧ, ସ୍ନେହ, ପ୍ରେମର ଧ୍ୱଂସସ୍ତୂପ ଉପରେ ଏମାନଙ୍କର ସ୍ୱର ବଂଶୀର କ୍ଷୀଣ ସ୍ୱର ପରି କେତେବେଳେ ପରିଗ୍ରହଣର, କେତେବେଳେ ପ୍ରତ୍ୟାଖ୍ୟାନର କିନ୍ତୁ ସବୁବେଳେ ମଣିଷର ଜୀବନର, ମଣିଷର ସୁଖ ଦୁଃଖର, ସ୍ୱପ୍ନ ଓ ସ୍ୱପ୍ନଭଙ୍ଗର, ପୋଲାଣ୍ଡୀସ୍ଥ ଚଳନ୍ତି ସେ 'କାନାଲ'ରେ ସେ ପାଗଳ ବଂଶୀବାଦକ ପରି । ସିଉରେଜ୍‌ର ଗନ୍ଧ ଭିତରେ ଆକଣ୍ଠ ବୁଡ଼ିରହି ବି ତା'ର ବଂଶୀର ସ୍ୱନ ଭାସିଆସେ ହୁଏତ ମୁମୂର୍ଷୁ ପ୍ରାଣକୁ ଡାକେ ହାତଠାରି ମଣିଷର ଐତିହ୍ୟକୁ, ସ୍ୱପ୍ନକୁ, ଭବିଷ୍ୟତକୁ । ମଣିଷ ମରିନି, ମରିବନି ହୁଏତ ଏଇ କଥା କହେ । ଏ କବିତାର ସୌନ୍ଦର୍ଯ୍ୟ ହେଲା ସ୍ୱରର ନିରପେକ୍ଷତା, ଭାବର ଗାମ୍ଭୀର୍ଯ୍ୟତା ଓ ସଂଗଠନ, ଶୃଙ୍ଖଳା ଓ ଏକ କରୁଣାବ୍ୟଞ୍ଜକ ନିର୍ଲିପ୍ତତା । ସେଗୁଡ଼ିକର ଏ ଭାଷା ଓ ଶୈଳୀରେ ଅଛି ଆବେଗ ଓ ମନସ୍ତତ୍ତ୍ୱର ଗମ୍ଭୀରତା, ସ୍ୱରରେ ବ୍ୟକ୍ତିଗତ ଅନୁଭୂତିର ନିଃସଙ୍ଗ କରୁଣତା । ଅନୁଭୂତିର ନୂଆ ନୂଆ ଇଲାକାର ଆବିଷ୍କାର କରିବାରେ ଏମାନେ ଚେଷ୍ଟିତ । ଅନେକ କ୍ଷେତ୍ରରେ—ଯେମିତି ଆନ୍ ସେକ୍‌ସଟନ୍, ରବର୍ଟ ଲୋଏଲ୍ ଏବଂ ସିଲ୍‌ଭିଆ ପ୍ଲାଥଙ୍କ କବିତାରେ—ଏହା ସମ୍ଭବ ହୋଇଛି ମୁଖ୍ୟତଃ ଧ୍ୱଂସାତ୍ମକ ଓ ନିଉରୋଟିକ ମନସ୍ତତ୍ତ୍ୱର କାବ୍ୟିକ ଅନୁଭବ ଓ ବିଶ୍ଳେଷଣରେ । ନିଉରୋଟିକ୍ ବ୍ୟକ୍ତିତ୍ୱ ସାଧାରଣତଃ ସ୍ୱାଭାବିକ ନିର୍ମଳ ବ୍ୟକ୍ତିତ୍ୱର କ୍ୟାରିକେଚର ବା ବିଭଙ୍ଗ ପ୍ରତିଚ୍ଛବି ହିସାବରେ ଗ୍ରହଣ କରାଯାଇଥାଏ । ମାନସିକ ବିଚ୍ୟୁତି ଓ ବ୍ୟତିକ୍ରମର ମନସ୍ତତ୍ତ୍ୱ ଜରିଆରେ ସାହିତ୍ୟ ସବୁବେଳେ ମଣିଷର ନିର୍ମଳ ଅବସ୍ଥାର, ତା'ର ମାନସିକ ଓ ଆଧ୍ୟାତ୍ମିକ ସ୍ଥିତିର ଆଲୋଚନା କରିଥାଏ । ଚେତନାର ପଛପଟେ ମନର ଅନ୍ଧ ଗହ୍ୱର ଭିତରେ ସନ୍ଧାନ ମିଳିଛି ଅତୀତ ଓ ଭବିଷ୍ୟତରେ ଭୂତ ଯାହା ବର୍ତ୍ତମାନର ମୁହୂର୍ତ୍ତକୁ ବୁଝାଇପାରେ, ବର୍ତ୍ତମାନର ବିଦ୍ୱେଷ, ଘୃଣା, ହିଂସା ଓ ରକ୍ତପାତକୁ ବୁଝାଇବାରେ ସାହାଯ୍ୟ କରେ । C. B. Cox ଓ A. E. Dyson ଙ୍କ ଭାଷାରେ "This fine frenzy of the poet which once associated him with piniration and even divinity, in the twentieth century has linked with the psychologic personality." ଏଇ ଯୁକ୍ତିର ଅନ୍ୟ ଏକ ପାଖ ହେଉଛି ଏଲିଏଟ୍‌ଙ୍କ 'ଓ୍ୱେଷ୍ଟଲ୍ୟାଣ୍ଡ'ର ଶୈଳୀ ଓ ଫର୍ମ । କେବଳ ଗୋଟିଏ ବିଖଣ୍ଡିତ କାବ୍ୟିକ ସଙ୍ଗଠନ ବା ଫର୍ମ ହିଁ ଏ ଯୁଗର ବିଖଣ୍ଡିତ, ବିଧ୍ୱସ୍ତ ମୂଲ୍ୟବୋଧ ସବୁକୁ

ପ୍ରତିଫଳିତ କରିପାରେ । କେବଳ ଖଣ୍ଡିତ, ପ୍ରପୀଡ଼ିତ, ସାଇକୋଟିକ ବ୍ୟକ୍ତିଇହିଁ ଏ ଯୁଗଧର୍ମକୁ, ଏ ଯୁଗର ବ୍ୟକ୍ତିଙ୍କୁ ରୂପାୟିତ କରିପାରେ । "In a deranged world, a deranged response is the only possible reaction of the sensitive mind." ପ୍ରଭଏ-ଯୁଗ ପରବର୍ତ୍ତୀ ଯୁଗରେ "ଆତ୍ମଜ୍ଞାନ"ର ଏଇଆହିଁ ପ୍ରକୃଷ୍ଟ ଅର୍ଥ ହେଉଅଛି ।

ଓଡ଼ିଆ କବିତାରେ ଏଇ ଦୁଇ ଧାରାର ସାମାଜିକ ଚେତନାର ଆରମ୍ଭ ଦେଖା-ଯାଇପାରେ 'କାଳପୁରୁଷ'ରେ । 'ଓ୍ୱେଷ୍ଟଲାଣ୍ଡ'ର ଶୈଳୀ ଓ ସ୍ଥୂଳ ବେଶ୍ ସୁସ୍ପଷ୍ଟ ତଥାପି ଦକ୍ଷ ଶୈଳୀ ଓ ପ୍ରଗାଢ଼ ଅନୁଭୂତିର କାରିକାଲ୍ ଫର୍ମର ସ୍ଥଳରେ କବିତାଟି ସ୍ୱତନ୍ତ୍ର । ଏଇ ଧାରା ବି ଦେଖାଯାଇପାରେ ଅନନ୍ତଶୟନ ବାଘଶିକାର, ମାଟି ଓ ମଣିଷ, ଧର୍ମପଦ, ଜାବିଶବର ଆଉ ସୂର୍ଯ୍ୟପୂଜାରେ । ଗୋଟିଏ ନ୍ୟୁରୋଟିକ କବିତାରେ ମଣ୍ଡୁକ "ବେଢ଼ା ପରିହମା ମୋ କୋଉଁ ସନ୍ଧିତ" 'କୁହୁଡ଼ି ତ୍ରିକ ଡ୍ରାଇଭର ଆଖି'ରେ ଆଉ ମୁଦ୍ରିଶିକା, ଝିନ୍, ପଦ୍ମା ପ୍ରତିଧ୍ୱନି ପାଇଁ ସେ, ସ୍ମୃତି 'ପୁନରାବୃତ୍ତି'ରେ । ଏ ଅଭିବୃଦ୍ଧି ଆଶାଜନକ । ସାମାଜିକ ଚେତନାର ଛବି ବଡ଼ କାନଭାସ୍‌ରେ ଅଙ୍କା ଯାଇପାରେ, ଗ୍ଲେଟିଆ ଚିତ୍ରପଟରେ ମଧ୍ୟ । ଜଣେ କବି ଉଭୟ ପନ୍ଥାରେ ମଧ୍ୟ ଆଗେଇପାରେ । ପିକାସୋଙ୍କ Gecernica ଚିତ୍ରରେ ଯୁଦ୍ଧର ଧ୍ୱଂସ ଓ ବୀଭତ୍ସତା ଓ କ୍ରୂରତା ପ୍ରତିଫଳିତ । ସାମୂହିକ ଭାବରେ ତାଙ୍କର ଅନ୍ୟ ଗୋଟିଏ ଛବି 'The Head of a Horse'ରେ ଘୋଡ଼ାଟି ଗୁଳିକ ଖାଇ ବିକୃତ କରିଥିବା ମୁହଁରେ ସତେ ଯେମିତି ସେ ସମସ୍ତ ବର୍ଭିଷିକା ଜଳିଉଠିଛି । ମଣିଷ ପ୍ରତି ମଣିଷର ଅନ୍ୟାୟ ଓ ଉଦାସୀନତା ଓ ଖାଲି ନାତ୍‌ସି କନ୍‌ସେଂଟ୍ରେସନ କ୍ୟାମ୍ପ ବା ନୂଆଖାଲି, ବାରମୁଲାରେ ଦେଖିବାକୁ ମିଳେନି । ତା' ବି ମିଳେ ଯେତେ-ବେଳେ ବୁଢ଼ାଟିକୁ ଘରେ ଛାଡ଼ିଦେଇ ସମସ୍ତେ ବାହାରିପାନ୍ତି ବୁଲି । ଯେତେ-ବେଳେ ଭିକାରୀଟିଏ ଅନୁନୟ କରି ପଇସାଟିଏ ମାଗିଲାବେଳେ ଆମେ କ୍ରୋଧରେ ଜଳି ଉଠୁ ତା' ଉପରେ ଆଉ ହଠାତ୍ ତା ମୁହଁରେ ଶବର ଛବି ଫୁଟେ ।

( ଛଅ )

ସାମାଜିକ ଚେତନାର ପରିପ୍ରକାଶ ଏ ଶତାବ୍ଦୀରେ ବଡ଼ ବିସ୍ମୟକର । ଏଇ ସେଇ ଶତାବ୍ଦୀ ଯାହାକୁ ଗୋଟିଏ କଥାରେ ଭୟର ଯୁଗ ବୋଲି କୁହାଯାଇ-

ପାରେ । ଉପ୍ସ ସମ୍ବନ୍ଧ ଅଛି ଗ୍ଲାନି, ଅନ୍ତର୍ଦ୍ୱନ୍ଦ୍ୱ, ଆତ୍ମବିଶ୍ୱାସର ଅଭାବ, ଘୃଣା, ବିରକ୍ତି, ଅସହିଷ୍ଣୁତା । ସାଧାରଣ ଭାବରେ କଳାକାର ଆଜି ହୁଏତ ସମାଜ ବିଷୟରେ ସଚେତନ । କିନ୍ତୁ ସାବଜମାନ ମଣିଷଠାରୁ ଗୋଟିଏ ମଣିଷ, ତା'ର ଚିନ୍ତାଧାରା, ହୃଦୟ ଓ ମନକୁ ଓଟାଳ୍ଲଲେ କେବଳ ସମାଜ ବିଷୟରେ ପ୍ରକୃତରେ ସଚେତନ ହୋଇପାରିବ । ନୋହିଲେ ମଣିଷର ଜୟଗାନ କରୁ କରୁ ଆମେ ରାମା ଓ ଦାମା (ଗାଁଅନ୍ତା ମଣିଷ) କଥା ଭୁଲିଯିବୁ । ଅନ୍ୟପାଇଁ ଉଦାସୀନତା ଏ ଯୁଗର ଗୋଟିଏ ପ୍ରଧାନ ଲକ୍ଷଣ । ଏ ଉଦାସୀନତା ବିଭିନ୍ନ ସାମାଜିକ କାରଣରୁ ଉଦ୍ଭବ । ଅନ୍ୟ କେଉଁ ଶତାବ୍ଦୀରେ ହୁଏତ କେଇଜଣ ମଣିଷ ଯୁଦ୍ଧରେ ମଲେ ସେଇଟା ଆମ ଆଖିକୁ ଜଳକ କରୁଥିଲା । କାରଣ ସେମାନେ ମରୁଥିଲେ ହୁଏତ ଢାଲ ତଲୱାରରେ ପରସ୍ପର ସହିତ ଲଢ଼ି, ଦେହରେ ଗୁଣ୍ଡରେ ଖଣ୍ଡା ଭୁଷି, ମାଟିକୁ ରକ୍ତରେ ଭିଜେଇ, ଆଖି ମୁହଁ ରକ୍ତରେ ଜୁଡ଼ୁବୁଡ଼ୁ କରି । ଆଜି ତ ହିରୋସୀମାର ଲକ୍ଷ ଲକ୍ଷ ଲୋକ ଆଖି ପିଛୁଳାକେ କୁଆଡ଼େ ଶୂନ୍ୟକୁ ବାଷ୍ପ ହୋଇ ଉଡ଼ିଯାଉଛନ୍ତି । ସେମାନେ ଲଢ଼ୁନ୍ତିନ—ଲଢ଼ି କରି ମରୁନ୍ତିନ । ତାଙ୍କୁ ଯିଏ ମାରୁଛି ସେ ବି କଷ୍ଟ କରି, ଶାରୀରିକ ପରିଶ୍ରମ କରି ତାଙ୍କୁ ମାରୁନି । ଆଉ ଆମେ କ୍ରୁଶ୍ଚୟ ପକ୍ଷ ଚା କପେ ପିଇ ପିଇ ସକାଳେ କାଗଜରେ ପଢ଼ୁଛୁ ସେଇ କଥା । ମନରେ କିଛି ବି ଆସୁନି । ବଞ୍ଚିବାରେ ଆଜି ଗୌରବ ନାହିଁ, ମରିବାରେ ବି ଗୌରବ ନାହିଁ । ପଡ଼ୋଶୀର କଥା ଆଜି ଆମେ ଆଉ ଭାବୁନୁ ।

ଏଇଟି ବି ଆଖି ଆଗରେ, ନୂଆଖାଲି କଲିକତାରେ ସେଦିନ ମଣିଷ ପ୍ରତି ମଣିଷ କେମିତି ଆଖି ବୁଜିଦେଲା । ଏଇ କାଲିପରି ସେଇକଥା ରାଉରକେଲାରେ, ମାନ୍ଦ୍ରାଜରେ, ଭାଷା ଆନ୍ଦୋଳନର ନାଁରେ ଜାଲି ବିର୍ ବଜାରରେ ମଣିଷକୁ ବି ପୋଡ଼ା ହୋଇପାରୁଛି । ଆଉ ନିଜକୁ ବିଅର୍ଥରେ ପୋଡ଼ି ମରିବାକୁ, ଅନଶନ କରି ମରିବାକୁ ତ ଯେ କୌଣସି ଯୁକ୍ତିପାଇଁ ଆଜି ବହୁତ ଲୋକ ଆଗୁଆର । ହତ୍ୟା ଓ ଆତ୍ମହତ୍ୟା ଆଜି ଏଠି ବେଶ୍ ଗୋଟିଏ ଆଖିଦୃଶିଆ ସମସ୍ୟା । ସେଇ Myth of Sysiples ଆଉ 'Rebel'ର ସମସ୍ୟା । ଜୀବନରେ ମୂଲ୍ୟ ରହୁନି—ସମାଜରେ ମୂଲ୍ୟ ରହୁନି । ସମାଜରେ ଏତେ ବେଶୀ ପ୍ରତ୍ୟୟହୀନତା ବିସ୍ଫୋରଣ ଅଥୟତା ଯେ, କେହି କାହା କଥା ଶୁଣିବାକୁ ନାରାଜ । ଏ ହଟ୍ଟଗୋଳରେ ବିବେକର ସ୍ୱର କେଉଁଠି ଝଡ଼ରେ

କ୍ଷୀଣସ୍ୱର ପରି କାହାର । କିଏ ଶୁଣିବ ତା'କୁ ? ଆଉ ତା' ସହିତ ଏବେ ବି ଅଛି ଏକଦା ସାମନ୍ତବାଦୀ ସମାଜର ସବୁ ଚିତ୍ର । ଅଗଣିତ ମଣିଷର ଫମ୍ପା-ପେଟ, କୋରଡ଼ଗତ ଆଖି, ନଳି ନଳି ଗୋଡ଼, କୁମ୍ଭେଟିଆ ପିଲା, ମରୁଡ଼ିରେ ଜଳୁଥିବା ପୃଥ୍ୱୀ ଆଉ ମଣିଷ । ତା' ସହିତ ସମଷ୍ଟିଙ୍କର ଔଦାସୀନ୍ୟ—ଯେମିତି କିଛି ଘଟିନି । ସେଇ କଳି, ସେଇ ଆତ୍ମମ୍ଭରିତା, ଆତ୍ମସ୍ୱାର୍ଥ । କୁମ୍ଭକର୍ଣ୍ଣର ନିଦ ସହଜରେ ଭାଙ୍ଗେନି । ଚେତନାର ଆଖି ସହଜରେ ଖୋଲେନି । ଆଉ କିଏ ଜାଣେ ଏଠି ଆଜି ଚେତନା ସୂର୍ଯ୍ୟାସ୍ତ ଇଏ ନୁହେଁ ?

'ହିଂସା, ବିଦ୍ୱେଷ, ଔଦାସୀନ୍ୟକୁ, ମଣିଷ ଇତିହାସକୁ ହୁଏତ ଏ ଶତାବ୍ଦୀର ଅଭିନବ ଅବଦାନ ନୁହେଁ, ଯୁଗେ ଯୁଗେ ନିଆଁ ଜଳୁଛି । ଦିନେ ଲୋକଙ୍କୁ ଆଉ ଦିନେ ନିଆଁରେ ପୋଡ଼ୁଛନ୍ତି, ବାଘ ବା ସିଂହ ସହିତ ଲଢ଼ିବାକୁ ଆରେନାକୁ ପଠେଇ ମାରୁଛନ୍ତି ଆଉ କରି କରି ବାଜି ହସିଛନ୍ତି । ସତ୍ୟ ଓ ବାସ୍ତବତାକୁ କବର ଦିଆହେଉଛି । ସେଇ ହିଂସର ବର୍ବରତା ଆଜି ବି ଆମକୁ ଉତ୍ତେଜିତ । ସେଇ ନିଆଁର ଧାସ ଏବେ ବି ମୁହଁରେ ବାଜୁଛି । ମଣିଷ ବେଶୀ କିଛି ବଦଳିନି । ହୁଏତ ମନସ୍ତତ୍ତ୍ୱ, ସମାଜତନ୍ତ୍ରର ପ୍ରଗତି ସହିତ, ଆଜିର କଳାକାର ଏ ବିପର୍ଯ୍ୟୟ ଅନୁଭବ କରୁଛି ଖାଲି ତାର ମନରେ ନୁହେଁ, ଚିନ୍ତାରେ ନୁହେଁ । ସେ ଅନୁଭବ କରୁଛି ତା'ର ହୃଦ୍‌ସ୍ପୁରେ, ପ୍ରତିଟି ଜୀବକୋଷରେ, ଇନ୍‌ଟ୍ୟୁଇସନ୍ ଦ୍ୱାରା ତା'ର ହାଡ଼ ଆଉ ମାଉଁସରେ ।

କବି ଜଣେ କଳାକାର, ସେ ବି ସମାଜର ଜଣେ ନାଗରିକ । ତା'ର ସାମାଜିକ ଚେତନା ହୁଏତ ତାକୁ ଝଣ୍ଡା ଧରାଏ, ବନ୍ଧୁକ ଧରାଏ ଅନ୍ୟାୟ ଓ ଅଭାବର ଶତ୍ରୁ ବିରୁଦ୍ଧରେ ନୋହିଲେ ତା'ର କବିତାର ସ୍ୱରରେ ବିଦ୍ରୋହର କର୍କଶ-ସ୍ୱର ଶୁଭେ । ପକ୍ଷୀର କାକଳି ସ୍ଥାନରେ ଶୁଭେ ସିଂହରଡ଼ି । ପ୍ରଶ୍ନ ହେଉଛି ଯେତେବେଳେ ସମଷ୍ଟିଙ୍କ ସହିତ ଐକ୍ୟ ତାନରେ ସେ ଆଗେଇଯାଏ, ଅନ୍ୟାୟ ଅନୀତି ବିରୁଦ୍ଧରେ ସ୍ଲୋଗାନ ଦିଏ, ଝଣ୍ଡା ଉଠାଏ । ସେ କଣ ବେଳେ ବେଳେ ନିଜକୁ ଜୋକର ବୋଲି ଭାବିପାରେ ? ସେ କ'ଣ ନିଜ ଭିତରେ ଦ୍ୱିଧା ବିଭକ୍ତ ନୁହେଁ । ଶ୍ୱେତାଶ୍ୱତରୋପନିଷଦର ସେଇ ଦୁଇଟି ଚଢ଼େଇଙ୍କ ପରି—ଗୋଟିଏ ଫଳ ଖାଉଥାଏ, ଆଉ ଗୋଟିଏ ଖାଲି ଅନେଇ ରହି ଦେଖେ ।

ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟାଂ
ସମାନଂ ବୃକ୍ଷଂ ପରି ସସ୍ୱଜାତେ

ତସ୍ମୋରନ୍ୟଃ ପିପ୍ପଳଂ ସାଦ୍ୱତ୍ତି
ଅନଶନ୍ନନ୍ୟୋ ଅଭିଚାକଶୀତି ।

ବିପ୍ଳବର ପରିଣାମ କ'ଣ ନ ହୋଇପାରେ । ଅଧିକ ହିଂସା, ଘୃଣା, ବିଦ୍ୱେଷର ସୃଷ୍ଟି ? କଳାର ଜବର କ'ଣ ସେଇ ପୃଥିବୀ କାମ୍ୟ—ସେଇ ହିଂସା, ଦ୍ୱେଷ, ଘୃଣାର । ଏଗୁଡ଼ିକୁ ପନ୍ଥାସ୍ୱରୂପ ଭାବରେ ନେଇ ମର୍ତ୍ତ୍ୟରେ ସ୍ୱର୍ଗ ପ୍ରତିଷ୍ଠାର ସମ୍ଭାବନା ଯେ ସୁଦୂରପରାହତ, ଏକଥା ଇତିହାସ ପ୍ରମାଣ କରେ । ଆଜି କବି ଓ କଳାକାର ନୀରବତା, ମାନବିକତାର ବଳି ମଣ୍ଡପରେ ନିଃସଙ୍ଗ ସାକ୍ଷୀ । କିନ୍ତୁ ଦାୟିତ୍ୱ ହତାଶା, ବିଭ୍ରାନ୍ତ ଓ ନେତିବାଦରୁ ଆମକୁ ଆଗେଇ ନିବାକୁଇ ହେବ । ବିପ୍ଳବର ବିଦ୍ରୋହର ଦାବୀ ଅନ୍ତତଃ ଆଂଶିକଭାବରେ ଇସ୍ଥେଟିକ ଦାବୀ । ସେଠି ଅନୁତାପ ଯଥେଷ୍ଟ ନୁହେଁ । କାମ୍ୟୁଙ୍କ ଭାଷାରେ "The artists of our time resemble the repentant noblemen of 19th century Russia, their bad consience is their excuse. But the last emotion that an artist can experience, confronted with his art, is repentance. ଧିକ୍କାର ଓ ଅହଙ୍କାରରେ, ବିପ୍ଳବର ସ୍ଲୋଗାନ ଭିତରେ ନୁହେଁ କିମ୍ବା ରୋମାଣ୍ଟିକ 'ଇଗୋ'ର ଆଇଭରି ଟାୱାରରେ ନୁହେଁ —ଏ ଉଭୟ ସ୍ଥାନରେ କଳାକାର ସବୁଦିନେ ରହିପାରେନି । ଅହଙ୍କାରର ମାନେ ସିଏ ଖୋଜିବ । ସ୍ଲୋଗାନ୍‌ର ଯଥାର୍ଥ ସିଏ ଖୋଜିବ । ଆଉ ସେମାନେ ସେ ଯଥାର୍ଥ ଖାଲି ବିପ୍ଳବରେ ନୁହେଁ, ବିଦ୍ରୋହରେ ନୁହେଁ । ସେ 'ଅର୍ଥ' ଦେବ ଜୀବନକୁ ସ୍ନେହରେ ବଞ୍ଚିବାର ସୁଆଦରେ, ମରିବାର ଗୌରବରେ ।

କୋଡ଼ିଏଟି ଶତାବ୍ଦୀରେ ମଣିଷର ଅଶ୍ରୁ, ଦୀର୍ଘଶ୍ୱାସ, ବେଦନାର ଇତିହାସ ସରିନି । ସମାଜରେ ଅତ୍ୟାଚାର, ଅନୀତି, ଔଦାସୀନ୍ୟର, ଘୃଣା ବିଦ୍ୱେଷ ସରିନି । କୋଉଦିନ ମର୍ତ୍ତ୍ୟରେ ସ୍ୱର୍ଗ ପ୍ରତିଷ୍ଠା ହେଲେ ବି, ଅଗଷ୍ଟିନଙ୍କ City of God ବା ମାର୍କସ ଗାନ୍ଧିର ସୁନାର ପୃଥିବୀ ଆସିଲେ ବି ପ୍ଲେଟପିଲ୍ଲ ସେଠି ବି ଅନ୍ୟାୟ ଭାବରେ ମରିବେ । ଲକ୍ଷ୍ମ ଝିଅଟିର, ଲୁହ ବନ୍ଧିବ ମଣିଷର ପ୍ରଶ୍ନ, ତମିଟି କାର୍ମାଜଭିର ପ୍ରଶ୍ନ ରହି ରହି ଶୁଭିବ କାହିଁକି ଏ ଅନ୍ୟାୟ କାହିଁକି, କାହିଁକି କାମ୍ୟୁଙ୍କ ଭାଷାରେ "Crushed between human evil and destiny; between terror and the arbitrary all that remains to him is his power to rebel in order to save

from murder who can still be saved, without surrendering the arrogance of blasphemy." ସେଇ ଅନୁକମ୍ପା ଓ ଘୃଣ୍ୟ ପାଖରେ ଯଦି ଆମେ ନିଜେ ଆତ୍ମସମର୍ପଣ ନ କରୁ ତା ହେଲେ ବା ବିପ୍ଳବ ଓ ବିଦ୍ରୋହ ହୃଦୟରେ ମରୁଭୂମି ସୃଷ୍ଟି ନ କରି ସେଠି ଗ୍ଲେଟିଆ ଗୋଟିଏ ଫୁଲ ଓ ଦ'ଟା ସାବଜା ପତ୍ର ଉପୁଜେଇପାରେ ।



# ଆଧୁନିକ କବିତାର ଗତି

ଆଧୁନିକ କବିତାର ବହିର୍ବ ଯେପରି ଗଭୀର ଚିନ୍ତାସାପେକ୍ଷ, ତାହାର ରଚନା ତା ଠାରୁ ବଳି ଗଭୀର ଚିନ୍ତା ଓ ଜ୍ଞାନର ଅଭିନିବେଶ ଆବଶ୍ୟକ କରେ । ପ୍ରଚଳିତ କାବ୍ୟ ସ୍ରୋତର ଧାରାକୁ ଛାଡ଼ିବା ସଙ୍ଗେ ସଙ୍ଗେ ଆମକୁ କବିତା ପ୍ରତି ପଦରୁ ଦୃଷ୍ଟିଭଙ୍ଗୀ ବଦଳେଇ ଏକ ବ୍ୟାପକ ଭିତ୍ତିରେ ତାହାର କ୍ଷେତ୍ର ପ୍ରସ୍ତୁତ କରିବାକୁ ହୋଇଥାଏ । ଆଧୁନିକତା ନାମରେ କେବଳ କବିତାର ଖୋଳ ବଦଳେଇ ନୂଆ ବୋତଲରେ ପୁରୁଣା ମଦ ପରିବେଷଣ କରିବାର ନୀତି ଗ୍ରହଣ ଆଧୁନିକ କବିତାର ଲକ୍ଷ୍ୟ ନୁହେଁ । ଯଦି ପୋଷାକ ବଦଳେଇ ଦେଲେ ଲୋକେ ଆଧୁନିକ ଓ ଶିକ୍ଷିତ ହୋଇଯିବାର ଯୋଗ୍ୟତା ହାସଲ କରନ୍ତେ, ତାହାହେଲେ ଦେଶର ଶିକ୍ଷା ପ୍ରସାର ପାଇଁ ଏତେ ବ୍ୟବସ୍ଥା କରିବାକୁ ଦରକାର ହୁଅନ୍ତା ନାହିଁ । ଜୀବନ, ସମସ୍ୟା ଓ ସର୍ବୋପରି ସୃଷ୍ଟି ପ୍ରତି ନୂତନ ଦୃଷ୍ଟିଭଙ୍ଗୀ ଓ ଜିଜ୍ଞାସାବାଦ ଆଧୁନିକତାର ପ୍ରଧାନ ପରିପୂରକ ଓ ସାହିତ୍ୟର ପ୍ରଗତିବାଦ । କିନ୍ତୁ ସମସ୍ତ ପ୍ରଗତିପର ଚିନ୍ତାରୁ ବିରତ ହୋଇ କିମ୍ବା ସେ ଦିଗରେ ପରାଜୟ ବରଣ କରି ଖାଲି ବାହ୍ୟାଡ଼ମ୍ବର ଚର୍ଚ୍ଚା କରିବା ଆଧୁନିକତା ନୁହେଁ ।

ଆଧୁନିକ କବିତାକୁ ବହୁମୁଖୀ ରୂପଦାନ କରିବାରେ ଯେଉଁମାନେ ଯୁଗ-ପ୍ରବର୍ତ୍ତକର କାର୍ଯ୍ୟ କରିଛନ୍ତି, ସେମାନଙ୍କ ଅବଦାନ ପ୍ରତି ଧ୍ୟାନ ଦେଲେ ଆମେ ଦିଗ୍‌ଦର୍ଶନର ସୁବିଧା ପାଇପାରିବା । ସେମାନେ ମଣିଷର ଏକକ ଏବଂ ସାମାଜିକ ଜୀବନ ପ୍ରତି କିପରି ଆତ୍ମମୁଖ୍ୟ ଗ୍ରହଣ କରିଛନ୍ତି, ତାହାର କିଛିମାତ୍ର ଆଲୋଚନା କଲେ ଆମ ପକ୍ଷରେ ଆଲୋକ ପାଇବା ସମ୍ଭବ ହେବ । ଏ କ୍ଷେତ୍ରରେ ସର୍ବବାଦୀ-ସମ୍ମତ ଅଗ୍ରଗାମୀ କବି ହେଉଛନ୍ତି ଏଜ୍‌ରା ପାଉଣ୍ଡ । Cino କବିତାରେ ଏହି ଆତ୍ମମୁଖ୍ୟ ସମ୍ପର୍କରେ ସେ କେତେକ ସୂଚନା ଦେଇ ଲେଖିଛନ୍ତି—

"ତିନୋଟି ନଗରରେ ମୁଁହିଁ ପାଇଅଛୁ ନାରୀର ସଙ୍ଗୀତ
ମାତ୍ର ସେ ସବୁ ସମାନ;

ଏବେ ମୁଁ ଗାଇବ ବସି ସୂର୍ଯ୍ୟର କବିତା ।
ଆଖି ଆଜ ସ୍ୱପ୍ନ ଓ ଅଧର, ପୁଣି ରାବି ଯାଏ ଗୃଳ ।
ସୂର୍ଯ୍ୟର ଉଦ୍ୟାନେ ଯାଏ ଅଚହ୍ନିତ ଯେ ନୂତନ ପଥ
ସଦା ସେଥିେ ମୁହିଁ ତାର କରଇ ସନ୍ଧାନ···
ଗାଇବ ମୁଁ ଏବେ ଗୀତ ଶ୍ୱେତ ବିହଙ୍ଗର
ଭସେ ଯାହା ଆକାଶର ନୀଳ ଜଳଧିରେ,
ମେଘ ସବୁ ଜଳକଣା ସେହି ସାଗରର ।"

ଏହାପରେ ଏଲପୃଷ୍ଠ ଅଧ୍ୟୟନ କଲେ ଆତ୍ମମୁଖ୍ୟର ଅନ୍ୟ ଏକ ଦିଗ ଦେଖାଯାଏ । ସେ ତାଙ୍କ Usk କବିତାରେ କହିଛନ୍ତି—

"ଭଙ୍ଗ ନାହିଁ ହଠାତ୍ ଡାଳଟି, କମ୍ବା
ଦେଖିବାକୁ କର ନାହିଁ ଆଶା
ଶ୍ୱେତ କୂପ ଅନ୍ତରାଳେ ଶ୍ୱେତ ହରିଣକୁ ।
କଟାକ୍ଷ ଫେରାଅ । ଉଚ୍ଚାରଣ କର ନାହିଁ
ପୁରୁଣା ମୋହନ ମନ୍ତ୍ର । ତାକୁ ଶୋଇବାକୁ ଦିଅ ।
ସେହିଠାରେ କର ଅନ୍ୱେଷଣ
ଧୂସର ଆଲୋକ ଯହିଁ ମିଶିଯାଏ ସବୁଜ ପବନେ
ତପସ୍ୱୀର ତପୋବନେ, ତୀର୍ଥଙ୍କର-ପ୍ରାର୍ଥନା ଗୁଞ୍ଜନେ ।"

ନୂତନ ଧାରାର କବିତାରେ ଏହି ଦୁଇ ବ୍ୟକ୍ତି ବର୍ତ୍ତମାନର ବିଶ୍ୱ ସାହିତ୍ୟରେ ସବୁଠାରୁ ପ୍ରଭାବଶାଳୀ ଆଦର୍ଶ ସୃଷ୍ଟି କରିଛନ୍ତି । ହୃଦୟର ଭାବାବେଗକୁ ଅଧିକ ପ୍ରଶ୍ରୟ ନ ଦେଇ ବୁଦ୍ଧିଶୀଳ ରଚନା ଏ ଯୁଗର ଲକ୍ଷ୍ୟ ହେଲେ ମଧ୍ୟ ଏଲପୃଷ୍ଠ ତାହାକୁ ପୂରା ସ୍ୱୀକାର କରି ନାହାନ୍ତି । ପାଉଣ୍ଡ୍‌ଙ୍କ କେତେକ କବିତାରେ ଭାବାବେଗ ମଧ୍ୟ ସମୃଦ୍ଧିତ ହୋଇଛି । ଏହା ସତ୍ତ୍ୱେ ଏହି ଉଭୟ ଯୁଗସ୍ରଷ୍ଟା ଜୀବନ, ସମାଜ ଓ ସମସ୍ୟା ପ୍ରତି ବ୍ୟାପକ ଦୃଷ୍ଟିଭଙ୍ଗୀ ଆରୋପ କରି ଆମକୁ ପ୍ରଭୂତ ନୂତନ କବିତା ଦେଇଛନ୍ତି । କିନ୍ତୁ ସେହି ନୂତନ କବିତାରେ ଆଦିମ ଯୁଗର ବାସ୍ତ୍ରାପ୍ତମୀ ପରିଚର୍ଯ୍ୟା କିମ୍ବା ରତିର ବନ୍ଦନା ନାହିଁ ; ଉଭୟ କବିଙ୍କ ପାଖରେ ସେହିଭଳି ଚିନ୍ତା ଖୁବ୍ ଅକିଞ୍ଚିତକର ହୋଇଥିବାର ଦେଖାଯାଏ । ଯେଉଁଠି ନୂତନ ଦୃଷ୍ଟି ଭଙ୍ଗୀରେ ସୃଷ୍ଟିଜିଜ୍ଞାସା ଓ ସମାଜର ଚିନ୍ତା ମୁଖ୍ୟ ସ୍ଥାନ ଅଧିକାର କରିଛି, ସେଠି ସମ୍ଭୋଗର ଏକ କ୍ଷୁଦ୍ର ଚିନ୍ତା ସ୍ଥାନ

ପାଇବ ବା କପରି ? ଆଉ ମଧ୍ୟ ତା ଦ୍ୱାରା କ ଆଧୁନିକ ତଥା ପ୍ରଗତିପନ୍ଥୀ ମନୋଭାବ ଅବା ପ୍ରକାଶ କରିହେବ ? ଏହା ବୋଲି ବୁଝିବାକୁ ହେବନାହିଁ ଯେ, ଆଧୁନିକ କବିତାରେ ପ୍ରେମର ସ୍ଥାନ ନାହିଁ । ପ୍ରେମ କ'ଣ, ଆମ ଜୀବନରେ ବର୍ତ୍ତମାନ ତାହା କପରି ଅବସ୍ଥାରେ ଅଛି, ଆଉ ତାକୁ ଆମେ କପରି ସମ୍ଭୋଗ କରିବାର ସୁବିଧା ପାଇଥାଉଁ, ତାହାର କଳାଗତ ବାସ୍ତବ-ବାଦୀ ପ୍ରତିଫଳନ ହେଉଛି ଅସଲ ପ୍ରଶ୍ନ । ପାଉଣ୍ଡ ଏହି ଚିନ୍ତାକୁ ଏକ ଗଦ୍ୟସ୍ଥାନ ଖଣ୍ଡରେ ପ୍ରକାଶ କରିଛନ୍ତି । Difference of opinion with Lygdamusରେ ସେ ଲେଖିଛନ୍ତି—

"ଆଜି ସିଏ ପ୍ରାଣହୀନ ଧୂଳିର କଣିକା
ଦିନେ ସିଏ ଥିଲା ଏକ କାମନାର ଦାସ ।
ମୋହ ପକ୍ଷେ ସୁଖରାତି ଏହି ଉଜ୍ଜ୍ୱଳତାମୟ,
ପ୍ରଳମ୍ବ ଆନନ୍ଦେ ମୋର ଶଯ୍ୟା ଆନନ୍ଦିତ;
ଅସଂଖ୍ୟ ବର୍ତ୍ତିକାତଳେ କଥିତ ହୁଅଇ ଏ ଯେ
ଅକଳନ୍ତ ଭାଷା,
ଆଲୋକର ସ୍ଥାନାନ୍ତର ପରେ ଜାଗଇ ସଂଗ୍ରାମ,
ଏବେ ନାରୀ ତାର ନଗ୍ନ ସ୍ତନଯୁଗ ବନ୍ଧି
ମୋ ସଙ୍ଗରେ ମଲ୍ଲଯୁଦ୍ଧ କରେ
କ୍ରମେ ଲୋଟି ପଡ଼େ ତାର
ତନୁର ନଚୋଳ;
ତାହାପରେ ନାରୀ ସେହି ଖୋଲି ମୋର ଆଖିର ପଲକ
ଶୋଇପଡ଼େ ତହିଁ
ଅଧର ରଖେ ତା' ମୋର ପଲକ ଉପରେ; ମୁଖ ତାର କହେ
ଅକର୍ମା ଗର୍ଦ୍ଦଭ !

ଏଲିଅଟ୍ The love song Prufrock କବିତାରେ ଏହାଠାରୁ ଭିନ୍ନ ଏକ ଅଭିବ୍ୟକ୍ତି ଦେଇଛନ୍ତି—

"ଜାଣିଛି ସକାଳ ସନ୍ଧ୍ୟା, ଅପରାହ୍ନ ସବୁ ।
କପି ଗୋଳା ଚାମଚରେ ମାପିଅଛି ଜୀବନକୁ ମୋର;

ଅନ୍ତିମ ପଡନ ସନ୍ଧ ଜାଣିଛୁ ମୁଁ ସ୍ୱରର ମୃତ୍ୟୁକୁ
ଦୂରବର୍ତ୍ତୀ କକ୍ଷେ ବସି ବାଦକର ଡଳେ ।
ହୋଇଯାଏ ବୁଢ଼ା ମୁହିଁ···ହୋଇଯାଏ ବୁଢ଼ା···
ପିନ୍ଧିବ ମୁଁ ପାଇଜାମା ତଳ ଡାର କରି ମୋଡ଼ା ମୋଡ଼ା ।
ବାଳ କେଶକୁ ମୁଁ ଦେବ ପଛେ କବା ଛୁଟି ?
ଖାଇବ କ ଗୋଟା ମିଠା କୋଳି ?
ପିନ୍ଧିବ ମୁଁ ପାଇଜାମା ଧଳା ରଙ୍ଗ ବନାତ କନାର
ବେଳା ପରେ ଯିବ ମୁହିଁ ବୁଲି ।
ଶୁଣିଛୁ ମୁଁ ମତ୍ସ୍ୟକନ୍ୟା ପରସ୍ପରେ ଗୀତ ଗାଏ ବୋଲି ।"

ଆଧୁନିକ କବିତାରେ ପ୍ରେମର ସ୍ଥାନ ନିର୍ଦ୍ଧାରଣ ଓ ତାହାର ପରିଚର୍ଯ୍ୟା ପାଇଁ ନୁହେଁ, ପାଉଣ୍ଡଙ୍କ 'ଲିଗଣ୍ଡାମସ' ଏବଂ ଏଲିୟଟଙ୍କ 'ପ୍ରୁଫ୍ରକ୍‌ଙ୍କ ପ୍ରେମ ସଙ୍ଗୀତ' କବିତା ଦୁଇଟି ଏକ ଏକ କାବ୍ୟ । ଏହା ବ୍ୟାପକ ପରିପ୍ରେକ୍ଷୀରେ ବିରାଟ ଭାବସମ୍ପଦ ତଥା ରହସ୍ୟବାଦରେ ପୂର୍ଣ୍ଣ । ଆଜି ମଧ୍ୟ, କବିତାରେ ଏକ କୁଜ୍‌ଝଟିକାଚ୍ଛନ୍ନ ଦୁର୍ବୋଧ୍ୟତାର ଅବବୋଧ ସୃଷ୍ଟି କରି କବିତା ପ୍ରତି ଏକ ଦୁର୍ବାର ଆକର୍ଷଣ ସେମାନେ ଗଢ଼ିଛନ୍ତି । ଗୋଟିଏ କବିତା ଗାଇବାକୁ ଯାଇ ଗୋଟା ଦୁନିଆର ବିଷୟକୁ ସ୍ୱପ୍ନାୟିତ ପ୍ରତିସ୍ପର୍ଦ୍ଧାରେ ଫେଣ୍ଟି ଆଧୁନିକ କବିତାର ଏକ ଏକ ପେଟେଣ୍ଟ ତିଆରି କରିଛନ୍ତି । ଏମାନଙ୍କ ସୂତ୍ର ହେଲା, ମନୋରାଜ୍ୟରେ ଚିନ୍ତାବିଶେଷର ଗତି ସାଙ୍ଗରେ ଛନ୍ଦ ଆଉ ରଚନାର ସାଦୃଶ୍ୟ ରକ୍ଷା କରିବାକୁ ହେବ । ପ୍ରକୃତରେ, ମନରେ ଗୋଟିଏ ବିଷୟ ଚିନ୍ତା କଲାବେଳେ ଅଶେଷ ଭାବନା ଝିଙ୍କ ମାରି ଦେଇଯାଏ, ସେହି ଭାବନା ସବୁ ପୁଣି ନିର୍ଦ୍ଦିଷ୍ଟ ଗଣ୍ଡି ବା କାଳରେ ଆବଦ୍ଧ ନୁହେଁ । ବିଜ୍ଞ କବିମନ ଅଧ୍ୟୟନ ବା ଶିକ୍ଷା ଫଳରେ ଇତିହାସ, ରାଜନୀତି, ସମାଜ-ବିଜ୍ଞାନ, ବିଜ୍ଞାନ, ମନସ୍ତତ୍ତ୍ୱ, ଦର୍ଶନ ଓ ଭୂଗୋଳରୁ ଯେତେ ଯେତେ ଅଭିଜ୍ଞତା ଆହରଣ କରିଥାଏ, ସେହିସବୁ କବିତା ରଚନା କାଳରେ ଯୁଗପତ୍ ଉନ୍ମେଷ ସୃଷ୍ଟି କରିଥାଏ । ତାହାକୁ କବିତାରେ ଏକାଧାରରେ ପ୍ରକାଶ କରିବା ଯେପରି ଆୟାସସାଧ୍ୟ, ସେହିପରି ପ୍ରତିଭାସାପେକ୍ଷ । ଏଥିପାଇଁ ଏଲିୟଟ କବିତା ସୃଷ୍ଟିରେ ମନ୍ତ୍ର ରଚନା ପ୍ରଣାଳୀ ଗ୍ରହଣ କରିଛନ୍ତି ବୋଲି କହନ୍ତି । ମନ୍ତ୍ରର ସମୁଦାୟ ଶ୍ଳୋକଟି ନ ପଢ଼ିଲେ ଯେପରି କିଛି ବୁଝି ହୁଏ ନାହିଁ, ସେହିପରି ଏଲିୟଟଙ୍କ କବିତାର ଅଂଶବିଶେଷ ଧରି ଚର୍ଚ୍ଚା କଲେ ତାହାର ପରିଚୟ ପାଇବା ସମ୍ଭବ ହେବ ନାହିଁ ।

ଏଲିୟଟଙ୍କ କବିତା ପାଇଁ କୁମାରୀ ୱେଷ୍ଟନ୍‌ଙ୍କ "From Ritual to Romance" ଏବଂ "ଫ୍ରେଜରଙ୍କ Goldan Bough" ବିଶେଷ ଭାବରେ ଉପାଦାନ ଯୋଗାଇଛି । କିନ୍ତୁ ପାଉଣ୍ଡଙ୍କ କବିତାର ଉପାଦାନ ହେଉଛି ସାରା ବିଶ୍ୱର ଜ୍ଞାନଭଣ୍ଡାର । ଏଥିଯୋଗୁ ଏହି ଦୁହିଁଙ୍କ କବିତା ସ୍ଥାନ ବିଶେଷରେ ଦୁର୍ବୋଧ୍ୟ ହେବାକୁ ବାଧ୍ୟ ହୋଇଛି ଏବଂ ପାଉଣ୍ଡ ନିଜେ ମଧ୍ୟ ତାହା ସ୍ୱୀକାର କରି କହିଛନ୍ତି, "ପ୍ରକୃତି ଭିତରେ ଏପରି କେତେକ ବସ୍ତୁ ରହିଛି, ଯାହାକୁ କାଗଜ ଉପରେ ପ୍ରତିଫଳିତ କରି ନ ପାରିଲେ ସତ୍ୟ ଯେ ଅସତ୍ୟ ହୋଇଯିବ, ତାହାର କୌଣସି କାରଣ ନାହିଁ । ଉପଯୁକ୍ତ ଭାବରେ ଘଟନାର ଆନୁକ୍ରମିକ ଆଲୋକପାତ ଦ୍ୱାରା ତାହା ଆମର ମାନସଗ୍ରାହ୍ୟ ହୋଇଥାଏ ।" ଏହି ସୂତ୍ର ଧରି ପାଉଣ୍ଡ ଯେତେବେଳେ କହନ୍ତି,

"ଭାରତ ବିରୁଦ୍ଧରେ ସିକନ୍ଦର କରିଛି ଷଡ଼ଯନ୍ତ୍ର,
ଟାଇଗ୍ରିସ ଓ ଇଉଫ୍ରେଟିସ ପ୍ରବାହିତ ହେବେ ଏବେ
ତାହାର ଆଜ୍ଞାରେ ।
ଭିତରେ ଭରିଯିବେ ରୋମାନ ପୁଲିସ,
ପାର୍ଥିଆର ଲୋକେ ଏବେ ଆମ ମୂର୍ତ୍ତି ନିର୍ମାଣର
କୌଶଳ ଶିଖିବେ, ଅଧିକାରୀ ହେବେ
ଏକ ରୋମକ ଧର୍ମର ;
ଗୋଟିଏ ଭେଳାରେ ବସି ପ୍ରେତପୁରୀ ନଦୀର ବନ୍ୟାରେ
ଏକ ସଙ୍ଗେ ଯିବେ ଭାସି —
ମାରିଅସ୍, ଯୁଗୁର୍ଥା ।"

ତାହାକୁ ମାନସଗ୍ରାହ୍ୟ କରିବାକୁ ବହୁ ବିଜ୍ଞଲୋକ ସୁଯୋଗ ପାଆନ୍ତି ନାହିଁ । ଏହିଭଳି ଚିନ୍ତାମୂଳକ ରଚନା ଭିତରେ ପାଉଣ୍ଡଙ୍କ Canto ଗୁଡ଼ିକ ଯୁଗାନ୍ତର ସୃଷ୍ଟି କରିଛି । ସେଥିରେ ରଚନାକୁ ସମସାମୟିକ ଘଟଣାମୂଳକ କରି ମଧ୍ୟ ସେ କିପରି ସ୍ଥାୟୀ କବିତାର ମୂଲ୍ୟ ଦାନ କରିଛନ୍ତି, ତାହା ଯେ କୌଣସି ଆଧୁନିକ କବିଙ୍କ ପକ୍ଷରେ ବିସ୍ମୟକର ବିଷୟ ହୋଇଥାଏ । ୭୯ ନମ୍ବର Canto ରେ ସେ ଗାଇଛନ୍ତି—

"ସାତଟି ହ୍ରଦର ପାଇଁ ଲେଖା ଏ କବିତା,
ଲେଖିନାହିଁ ମଣିଷ ଏହାକୁ

ବର୍ଷା, ଶୂନ୍ୟ, ନଦୀ, ଜଳ ଯାହା ଏକ,
ଅଗ୍ନି ଝରେ ଘନୀଭୂତ ମେଘର ଦେହରୁ ।

ଘୋର ବର୍ଷା ଗୋଧୂଳି ଲଗ୍ନରେ
କୋଠଘରର ଛାତ ତଳେ ଗୋଟିଏ ଲଣ୍ଠନ ।
ନଡ଼ା ସବୁ ହୋଇଅଛି ହଳଦୀ, ହୋଇଛି ଆନତ,
କଥା କହେ ଘାଟର ବାଉଁଶ
ଯେମିତି ସେ କାନ୍ଦୁଅଛି ବସି ।

କିନ୍ତୁ ତାଙ୍କର ୩୮ ନମ୍ବର Canto ଏହାଠାରୁ ସଂପୂର୍ଣ୍ଣ ଭିନ୍ନ:—

"ଯୁଦ୍ଧ କଣ ଲାଗିବ ? ନା, ମିସ୍ ଓ୍ୱାଲେଟ,
ଲାଗିବନି କେତେକ କାରଣ ଯୋଗୁ ।

କହିଲା, ସାବୁନ ଆଉ ହାଡ଼ ବ୍ୟବସାୟୀ ୧୯୧୪
ମଇ ମାସରେ

ଆଉ ମିଷ୍ଟର ଗାନ୍ଧି ଭାବିଲେ;
ଯଦି ଆମେ ନ କିଣୁ କିଛି ହେଲେ ଭୁଲ।
ଆଉ ତା ସାଙ୍ଗରେ ନ କିଣୁ ଗୋଟିଏ ହେଲେ ବନ୍ଧୁକ...
ମମିଏଁ ଅନ୍ୟେଲଙ୍କ ଦେଖା ମିଳିଲାନି ଜକି କ୍ଲବରେ
ମସ୍କୋ ବାହାରେ ସେମାନେ ଖୋଲିଲେ
ଏକ ଘଡ଼ି କାରଖାନା,
ସେଇ ଘଡ଼ି ସବୁ ଠିକ୍ ସମୟ ରଖିଲା,...
ଇଟାଲିର ଜନ୍ମଭୂମି
ଘୁରିଁ ଉଠିଥିଲା ଟାଇବେରିଅସ୍ ସମୟରୁ...
ସତେ, ପଚୁରିଲା ବର୍, ମାଛ ସବୁ ସମୁଦ୍ରରେ
କପଟ ଅଛନ୍ତି ।"

ଏହି ଯୁଗର କବି ନୂତନ କବିତା ରଚନାରେ ନିଜର ଆତ୍ମବିଶ୍ୱାସ ଘୋଷଣା କରି କହିଛନ୍ତି—

"ମାର୍ଗ ଗୁଡ଼ା ହେ ରୋମକ କବି,
ପଥ ପରିଷ୍କାର କର ତୁମ୍ଭେ ହେ ଗ୍ରୀସୀୟ ।

ବର୍ଷା, ଶୂନ୍ୟ, ନଦୀ, ଜଳ ଯାହା ଏକ,
ଅଗ୍ନି ଝଡ଼ରେ ଘନୀଭୂତ ମେଘର ଦେହରୁ ।

ଘୋର ବର୍ଷା ଗୋଧୂଳି ଲଗ୍ନରେ
କୋଠଘର ଛାତ ତଳେ ଗୋଟିଏ ଲଣ୍ଠନ ।
ନର୍ତ୍ତକୀ ସବୁ ହୋଇଅଛନ୍ତି ହସ୍ତୀ, ହୋଇଛନ୍ତି ଆନତ,
କଥା କହେ ଗୃହର ବାଉଁଶ
ଯେମିତି ସେ କାନ୍ଦୁଅଛି ବସି ।

କିନ୍ତୁ ତାଙ୍କର ୩୮ ନମ୍ବର Canto ଏହାଠାରୁ ସଂପୂର୍ଣ୍ଣ ଭିନ୍ନ:—

"ଯୁଦ୍ଧ କଣ ଲାଗିବ ? ନା, ମିସ୍ ଓ୍ୱାଲେଟ,
ଲାଗିବନି କେତେକ କାରଣ ଯୋଗୁ ।
କହିଲି, ସାବୁନ ଆଉ ହାଡ଼ ବ୍ୟବସାୟୀ ୧୯୧୪
ମଇ ମାସରେ
ଆଉ ମିଷ୍ଟର ଗାନ୍ଧି ଭାବିଲେ;
ଯଦି ଆମେ ନ କଣୁ କଟ୍ଟ ହେଲେ ତୁଳା
ଆଉ ତା ସାଙ୍ଗରେ ନ କଣୁ ଗୋଟିଏ ହେଲେ ବନ୍ଧୁକ···
ମମିଏଁ ଅନ୍ତୋଲଙ୍କ ଦେଖା ମିଳିଲାନି ଜକି କ୍ଲବରେ
ମସ୍କୋ ବାହାରେ ସେମାନେ ଖୋଲିଲେ
ଏକ ଘଡ଼ି କାରଖାନା,
ସେଇ ଘଡ଼ି ସବୁ ଠିକ୍ ସମୟ ରଖିଲା,···
ଇଟାଲୀର ଜନ୍ମଭୂମି
ସୃଷ୍ଟି ହୋଇଥିଲା ଟାଇବେରିଅସ୍ ସମୟରୁ···
ସତେ, ପଚାରିଲି ବର୍, ମାଛ ସବୁ ସମୁଦ୍ରରେ
କାହିଁକି ଅଛନ୍ତି ।"

ଏହି ଯୁଗର କବି ନୂତନ କବିତା ରଚନାରେ ନିଜର ଆତ୍ମବିଶ୍ୱାସ ଘୋଷଣା କରି କହୁଛନ୍ତି—

"ମାର୍ଗ ଛାଡ଼ ହେ ପ୍ରେମିକ କବି,
ପଥ ପରିଷ୍କାର କର ତୁମେ ହେ ଶ୍ରୀଯୀଶୁ ।

ବିରଚିତ ହେଉଅଛି ସୁମହାନ କାବ୍ୟ 'ଇଲିଅଡ଼',
ପଥ ପରିଷ୍କାର କରି ତମେ ଆହେ ଗ୍ରୀକ୍ !

ଆଧୁନିକ ଗଦ୍ୟ ଭଳି, ଆଧୁନିକ କବିତା ମଧ୍ୟ ଅନେକ ଭାବରେ ଦେହ-ଧର୍ମୀ । କିନ୍ତୁ ଦେହ ପଛରେ ଯେଉଁ ଜୀବନ ରହିଛି, ତାକୁ ଅସ୍ୱୀକାର କରିବାକୁ କେହି ଦୁଃସାହସ କରିପାରିବ ନାହିଁ । କାରଣ, ଜୀବନ ନ ଥିଲେ ଯେଉଁ ଦେହର ସତ୍ତା ରହିବ ନାହିଁ, ସେହି ଜୀବନକୁ ଅସ୍ୱୀକାର କରିଯିବ କିପରି ? ସୁତରାଂ ଜୀବନକୁ ପର୍ଯ୍ୟବେକ୍ଷଣ କରିବା ଭିତରେ ଆମେ ଏପରି ଏକ ବୃହତ୍ତର ପରିସ୍ଥିତିକୁ ଚାଲିଯିବା, ଯେଉଁଠି ରାଜନୀତିଠାରୁ ଆରମ୍ଭ କରି ନାନା ଆଦର୍ଶବାଦ ଏବଂ ତତ୍ତ୍ୱଦର୍ଶନର ନିନାଦରେ ଆମକୁ ସଂପୃକ୍ତ ହେବାକୁ ପଡ଼ିବ, ସେଇଠି ଫୁଟି ଉଠିବ ଜୀବନ ଏବଂ ସମାଜର ଚିତ୍ର । ଏଇ ଚିନ୍ତାରେ ପହଞ୍ଚ ପାଉଣ୍ଡ ଆଉ ଏଲିୟଟ ଆମକୁ କଣ କହିଛନ୍ତି ଦେଖାଯାଉ—

"ଦେଖିଛି ମୁଁ ରୌଦ୍ରତଳେ ଉତ୍ସବରେ ରତ ମତ୍ସ୍ୟଜୀବୀଗଣ
ଦେଖିଛି ମୁଁ ତାହାଙ୍କର ବିଶୃଙ୍ଖଳ ପରିବାର-ଲୀଳା,
ଦେଖିଛି ମୁଁ ସେମାନଙ୍କ ମୁଖଭରି ସ୍ମିତ
ଶୁଣିଛି ମୁଁ ସେମାନଙ୍କ ହାସ୍ୟ ଉଚ୍ଚକିତ
ନାହିଁ ଯହିଁ ଲଭର ପ୍ରତ୍ୟାଶା
ମାଛ ଯାଏ ହ୍ରଦ ଜଳେ ସନ୍ତରଣ କାଟି
କିନ୍ତୁ ନାହିଁ ସେମାନଙ୍କ ପରିଧେୟ କିଛି

× × ×

"ତଥାପି ବାଳିକା ଏକ କରୁଅଛି ଦେବତାର ନନ୍ଦା,
ଏହିସବୁ ଯୁବତୀ ଭିତରୁ କେହି ହେଲେ ଜଣେ
ପୃଥିବୀରେ ସୃଷ୍ଟିତତ୍ତ୍ୱ ଜାଣେନାହିଁ କିଛି
ଜାଣେନି କାରଣ ମଧ୍ୟ ଚନ୍ଦ୍ର ଗ୍ରହଣର
ନିରକର ତପ୍ତ ତେଜ ଅନ୍ତନମ ପରେ
କି ଘଟିବ ଭାବିନାହିଁ କିଛି ହିଁ ବିଷୟ,
ଅଦୃଷ୍ଟର ଉପହାସେ ବଜ୍ରପାତ କଥା,
ଭାବିନାହିଁ ମୃତ୍ୟୁତର ବିଷୟରେ କିଛି ।"

× × ×

"କିନ୍ତୁ ତୁମେ, ପ୍ରଭୁ ମୋର, ଈଶ୍ୱରର ଦୟା,
ଯାହା ମୁଁ ଜାଣିଛି ତାହା କରୁଛି ପ୍ରକାଶ ।
ତମେ ଥିଲ ଶାସ୍ତ୍ର ଅନଭିଜ୍ଞ ମୁଁ ମଧ୍ୟ ସେପରି
ଆହେ ବାମପନ୍ଥୀ ବୀର ।"

ଏହାପରେ ଏଲ୍ସୁଏଟ ଉସର ଭୂଇଁରେ ପଙ୍କିଳ ଜୀବନକୁ ଦେଖିଲେ ଆନ୍ତରିକ ଭିନ୍ନ ଭାବରେ—

ଗର୍ତ୍ତରେ ଚ୍ଛେଳଟା କାଶେ ଉପରର ଆଗ ପଡ଼ିଆରେ
ପାହାଡ଼, ସିଙ୍ଗଲ, ପାଷାଣଭେଦୀ ଲତା, ଲୁହା, ତାରକଣ୍ଟା ।
ହାଣ୍ଡିଶାଳ ସମ୍ମୁଖେ ନାଗଛି, ବୃଦ୍ଧା କରିଦିଏ
ପୋଡା ନଳୀଟାକୁ ଖେଞ୍ଚ ସଂଧ୍ୟାବେଳେ ଛୁଙ୍କି ଛୁଙ୍କି ମରେ
ବୁଢ଼ା ହଡ଼ା ମୁହିଁ
ବସିଅଛି ବତାସ ଭିତରେ, ମୋଟା ବୁଦ୍ଧି ଲୋକ ।"
"ମାର୍ଗେଟ ବାଳରେ ।
ଦୁଇଟି ଜନସ ଯାର ମୂଲ୍ୟ କିଛି ନାହିଁ
ତାକୁ ମୁହିଁ ଯୋଡ଼ଦେଇ ପାରେ ।
ମଇଳା ହାତର ଭଙ୍ଗା ଆଙ୍ଗୁଠିର ନଖ ।
ମୋ ଦେଶର ନଗର୍ହ ଜନତା
କିଛି ଗୃହେ ନାହିଁ ।
ଲଲ
କାର୍ଥେଜକୁ ଯାଇ ତାହା ପରେ ଫେରି ମୁଁ ଆସିଲି
ଜଳିଯାଏ ଜଳିଯାଏ ଜଳ ପୋଡ଼ିଯାଏ
ପ୍ରଭୁ ମତେ କର ହେ ଉଦ୍ଧାର
ହେ ପ୍ରଭୁ ଉଦ୍ଧାର କର
ଜଳ ପୋଡ଼ିଯାଏ ।"

ଆଧୁନିକ କବିତାର ଏହି ଦୁଇ ଦିକ୍‌ପାଳ ସାମାଜିକ ସଚେତନା ପାଇଁ ଦୁଇଟି ଦିଗରେ ଗତି କରିଥିବା ଦେଖାଯାଏ । ପାଉଣ୍ଡ ବାମପନ୍ଥୀ ବୀର ସାଇନୋଙ୍କ ଆରାଧନା କରିଥିବାବେଳେ ଏଲ୍ସୁଏଟ ଈଶ୍ୱର କୃପା ଭିତରେ ସାମାଜିକ

ମଣିଷରେ ଭବିଷ୍ୟତ ମୁକ୍ତିର ପନ୍ଥା ଦେଖିଛନ୍ତି । ଏଥିପାଇଁ ସେ ଉପନିଷଦର ଶାନ୍ତିବାଣୀ ଗାଇ ଆଧୁନିକ ସମାଜର ଚେତନା ଫେରାଇବାକୁ ମଧ୍ୟ ଦ୍ୱିଧା କରି ନାହାନ୍ତି । ତେଣୁ ହୃଦୟର ପରିବର୍ତ୍ତନ ଛଡ଼ା ସାଂପ୍ରତିକ ସମସ୍ୟାର ଆଉ କିଛି ସହଜ ମୀମାଂସାର ବାଟ ନାହିଁ ବୋଲି ସେ ସିଦ୍ଧାନ୍ତରେ ପହଞ୍ଚିଛନ୍ତି ।

ଦିନ ଥିଲା ଯେତେବେଳେ ଏଲିୟଟଙ୍କ ଏହି ଚିନ୍ତା ବୈଜ୍ଞାନିକ ନୁହେଁ ବୋଲି କେତେକ ସମାଲୋଚକ ମତ ପ୍ରକାଶ କରୁଥିଲେ ଏବଂ ବୈଜ୍ଞାନିକ ସାମ୍ୟବାଦର ପନ୍ଥାକୁ ଏକ ଧନତାନ୍ତ୍ରିକ କବି ଭାବରେ ସେ ପରିହାର କରିଛନ୍ତି ବୋଲି କୁହାଯାଇଥିଲା । କିନ୍ତୁ ଆଜି ବୈଜ୍ଞାନିକ ସମାଜବାଦର ଅବସ୍ଥା କଣ ହୋଇଛି ? ଦିନେ ବ୍ୟାପକ ନରହତ୍ୟା କରି ଚଣ୍ଡାଶୋକ ଅନୁଶୋଚନାରେ ପାଗଳ ହୋଇ ଶେଷକୁ ଧର୍ମାଶୋକ ହୋଇଥିଲେ; କିନ୍ତୁ ପୃଥିବୀର ଦିନେ ତଥାକଥିତ ସାମ୍ୟବାଦୀ ଆଜି ଯେଉଁ ଆକ୍ରମଣ ଓ ହତ୍ୟାକାଣ୍ଡ ଲୁଆଇବା ସତ୍ତ୍ୱେ ନିଜର ଆଦର୍ଶବାଦକୁ ଶ୍ରେଷ୍ଠରୂପେ ଧରି ବସିଛନ୍ତି, ସେଠି ସେମାନଙ୍କଠାରେ ଭଗବାନଙ୍କ ସ୍ୱୀକୃତି ଥିଲେ ତାହା ଘଟି ପାରନ୍ତା କି ବୋଲି ଚିନ୍ତା କରିବା ଅସଙ୍ଗତ ନୁହେଁ । ଏଲିୟଟ ଏ ଦିଗରେ ଅଧିକ ଅଗ୍ରସର ହୋଇ ଆହୁରି କହିଛନ୍ତି—

"ଗଙ୍ଗା ଶୁଖିଲା ପଡ଼ିଛି, ଗଛ ପତ୍ର ନିର୍ଜୀବ ନଷ୍ଟ ଭି
ରହିଅଛି ବର୍ଷା ପ୍ରତୀକ୍ଷାରେ, କଳା ମେଘମାଳା
ଘୋଟିଅଛି ବହୁ ଦୂରେ, ହିମବନ୍ତ ପରେ ।
ନିସ୍ତବ୍ଧ ଅରଣ୍ୟ ନୀରବରେ ନ୍ୟୁବ୍ଜ ହୋଇଅଛି
ସେତେବେଳେ ବଜ୍ର କହେ ଡାକ

"ଦତ୍ତ : କଣ ଦାନ କରିଛୁ ଆମେ ?"

ଆଜି ହିମାଳୟ ଉପରେ ଯେଉଁ ଝଡ଼ ଦେଖାଦେଇଛି, ତାହାକୁ କଣ ଏଲିୟଟ ତିରିଶ ବର୍ଷ ତଳେ ନିଜର ଦିବ୍ୟଦୃଷ୍ଟିରେ ଦେଖି ପାରିଥିଲେ ! ସେହିପରି ପାଉଣ୍ଡ ମଧ୍ୟ ଏକ ସ୍ଥାନରେ କହିଛନ୍ତି—

"ଶତ୍ରୁ ଲାଗି ଆମେ ଏଠି ପଡ଼ି ରହିଅଛୁ ।
ମଙ୍ଗୋଲଙ୍କ ଲାଗି ନାହିଁ ଆମ ସୁଖ କିଛି

କା ମୁଖରୁ ଫେରିଯିବା କଥା କେବେ ପ୍ରକାଶ ପାଇଲେ
ଅନ୍ୟ ମନେ ଭରିଯାଏ ବ୍ୟଥା ।
କେଉଁ ଫୁଲ ଫୁଟିଲା ସେ ଏବେ ?
କା ରଥ ଆସିଲା ? ସେନାପତିଙ୍କର ।
ତାଙ୍କ ଘୋଡ଼ାପାଳ ମଧ୍ୟ କ୍ଲାନ୍ତ ହୋଇଲେଣି ।"

ସ୍ୱତନ୍ତ୍ର ଆଙ୍ଗିକ ଭିତରେ ଆଧୁନିକ କବିତାର ଦୁଇ ଯୁଗସ୍ରଷ୍ଟା ଜୀବନକୁ କିପରି ବ୍ୟାପକ ଭିତ୍ତିରେ ସ୍ପର୍ଶକରିବାକୁ ପ୍ରୟାସ କରିଛନ୍ତି, ତାହାର କେତେକ ନମୁନା ଦେଖାଗଲା । ଏଥିପାଇଁ ସେମାନଙ୍କ କବିତାରୁ ଆହୁରି ଯଥେଷ୍ଟ ଉଦାହରଣ ମିଳିବ । ବର୍ତ୍ତମାନ ପ୍ରଶ୍ନ ହେଉଛି, ଆଧୁନିକ ବା ନୂତନ କବିତା ନାମରେ ଆମେ କରୁଛୁ କଣ ? ଆମେ ବୃହତ୍ତର ଜୀବନକୁ ଏକ ଉଚ୍ଚତର ସ୍ପର୍ଶ ନ ଦେଲେ କଦାପି ଆଧୁନିକ କବିତାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ପାରିବା ନାହିଁ ।

ଏହାପରେ ଆମକୁ ଆଉ ଗୋଟିଏ କଥା ସ୍ମରଣ ରଖିବାକୁ ହେବ, ତାହା ହେଉଛି 'ବୃତ୍ତଭଙ୍ଗ' । ଏହାର ଅର୍ଥ ହେଲା, ପୂର୍ବାଗ୍ରଜମାନଙ୍କର ପରିଧି ଲଙ୍ଘି ଆମକୁ ଆହୁରି ଆଗକୁ ଗତି କରିବାକୁ ହେବ । ପାଉଣ୍ଡ ଆଉ ଏଲିୟଟ ଆଧୁନିକ କବିତାର ଯେଉଁ ସୀମାରେଖା ସୃଷ୍ଟି କରିଥିଲେ, ତାହା ଲୁପ୍ତେଟି ଦଶନ୍ଧି ଅତିକ୍ରମ କରି ସାରିଲାଣି । ତେଣୁ ସେମାନଙ୍କର କବିତାକୁ ବାର ଭଙ୍ଗ ତେର ପ୍ରକାର କରି ନୂତନ କବିତା ସର୍ଜନାର ଅପ୍ରାଳନ କରିବା ଆଜି ହାସ୍ୟାସ୍ପଦ ହେବ । ତାହାଛଡ଼ା ସବୁ କବିତାକୁ ପ୍ରବେଗାମୀ ନୂତନ ଦୃଷ୍ଟି-ଭଙ୍ଗୀର ସ୍ପର୍ଶ ଏବଂ ସ୍ୱକୀୟତା ଓ ନିଜ ବସୁଧାର ଗନ୍ଧରେ ସ୍ୱାଦ୍ୟ ଓ ସୁରଭିତ କରିବାକୁ ପଡ଼ିବ ।



# ଆଧୁନିକ କବିତାର ଆତ୍ମିକ ଓ ଆଙ୍ଗିକ ରୂପାନ୍ତର

ବିଭିନ୍ନ ଯୁଗରେ ଯୌବନର ଉଦ୍ଦାମତା ପାରମ୍ପରିକ ମୂଲ୍ୟବୋଧକୁ ଅସ୍ୱୀକାର କରି ନୂତନର ସୃଷ୍ଟି କାମନାରେ ବ୍ରତୀ ହୋଇଛି । ପୁରାତନ ପ୍ରତି ଗଭୀର ଅସନ୍ତୋଷ ଆଧୁନିକତାର ମର୍ମବାଣୀ ରୂପେ ପ୍ରକାଶିତ ହୋଇଛି । ଯୁଗରୁଚିର ପରିବର୍ତ୍ତନ ସଙ୍ଗେ ସଙ୍ଗେ କାବ୍ୟିକ ଧାରାର ଭିନ୍ନତା ପରିଲକ୍ଷିତ ହେବା ସ୍ୱାଭାବିକ । କବିତା ଆଜି ଜଟିଳ ଯୁଗମାନସର ପ୍ରତିବିମ୍ବ ବହନ କରି ଦୁର୍ବୋଧ ହୋଇପଡ଼ିଛି । ଏହି ଦୁର୍ବୋଧତାକୁ ଆମେ ଆଧୁନିକତାର ଏକ ବାହ୍ୟ ଲକ୍ଷଣ ବୋଲି ଅନୁମାନ କରିଥାଉ । ସାମ୍ପ୍ରତିକ କାଳର ଲିଖିତ ଏହି ଲକ୍ଷଣାକ୍ରାନ୍ତ କବିତା ହିଁ ଆଧୁନିକ, ଏହା କହିବା ଭ୍ରମାତ୍ମକ । ଆଧୁନିକ କବିତାର ସଂଜ୍ଞା କୌଣସି ନିର୍ଦ୍ଦିଷ୍ଟ ସମୟ ଦ୍ୱାରା ନିର୍ଣ୍ଣୀତ ହୋଇପାରିବ ନାହିଁ । କବିତାର ଆଙ୍ଗିକ ଓ ଆତ୍ମା କେବଳ ଏହି ଆଧୁନିକତାର ନିର୍ଦ୍ଦେଶକ । ଆଧୁନିକ କବିତା ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତିର ଏକ ମଧୁର ସମନ୍ୱୟ । ଏକ ମିଶ୍ର ସଂସ୍କୃତିର ସ୍ୱାକ୍ଷର ବହନ କରି ଏହା କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଯୁଗରେ ପ୍ରାଣ ପ୍ରାଚୁର୍ଯ୍ୟ ଲାଭ କରିନାହିଁ, କବିତାର ଚିରନ୍ତନ ମୂଲ୍ୟବୋଧ ଯୋଗୁଁ ସର୍ବକାଳୀନ ଆଧୁନିକତା ଲାଭ କରି ପାରିଛି ।

ଏଇ କବିତାର ଆଧୁନିକତା ମୂଳରେ ବିଦେଶୀ ଭାବଧାରାର ସ୍ୱାକ୍ଷର ସ୍ପଷ୍ଟତର । କବିତା ଆଜି ୟୁରୋପର ଚିନ୍ତାବିକାଶ ସହିତ ଏକାନ୍ତ ଭାବରେ ଜଡ଼ିତ । ପ୍ରଥମେ ଶିଳ୍ପ ବିପ୍ଳବ ଓ ନୂତନ ଅର୍ଥନୈତିକ ବିବର୍ତ୍ତନକୁ ଭିତ୍ତି କରି ଲୋକ ଚିତ୍ତରେ ଯେଉଁ ନୂତନତ୍ୱର ସୃଷ୍ଟି ସମ୍ଭବ ହୋଇଥିଲା, ତାହା ବିଶେଷ ରୂପେ ପରିମାର୍ଜିତ ହୋଇଛି ପ୍ରଥମ ବିଶ୍ୱଯୁଦ୍ଧର ସର୍ବଗ୍ରାସୀ ଧ୍ୱଂସ ଲୀଳାର ପରବର୍ତ୍ତୀ ପ୍ରଭାବରେ । ଭାରତୀୟ କବିତା କ୍ଷେତ୍ରରେ ପୃଥିବୀର ଏ ବିରାଟ ପରିବର୍ତ୍ତନ ପ୍ରତ୍ୟକ୍ଷ ଭାବରେ ପ୍ରଭାବ ପକାଇ ନ ଥିଲେ ମଧ୍ୟ ପରୋକ୍ଷ ଭାବରେ ଯଥେଷ୍ଟ ପ୍ରଭାବାନ୍ୱିତ କରିଛି । ସାହିତ୍ୟର ଅନ୍ୟାନ୍ୟ ବିଭାଗ ଅପେକ୍ଷା କବିତାକ୍ଷେତ୍ରକୁ ଯେ ଏହାର ଅନୁପ୍ରବେଶ ସହଜସାଧ୍ୟ ହୋଇପାରିଛି, ଏହାର ଏକମାତ୍ର କାରଣ ହୋଇପାରେ କବିତା ପ୍ରତି ସାଧାରଣ ଜନତାର ଯୁଗଯୁଗ ଧରି ଗଭୀର

ଅନୁରକ୍ତ । ତଥାପି ପୁରାତନ କବିତାର ଧାରା ପରିବର୍ତ୍ତିତ ହୋଇଥିଲେ ମଧ୍ୟ କବିତା ତାର ସଂଗତି ହରାଇ ବସିନାହିଁ ।

ରେନେସାଁର ଚରମ ଅବଦାନ ହେଉଛି ବ୍ୟକ୍ତିସ୍ୱାତନ୍ତ୍ର୍ୟ । ବିଂଶ ଶତାବ୍ଦୀରେ ଯେତେବେଳେ ସାମାଜିକ ମୂଲ୍ୟବୋଧର ହ୍ରାସ ଦେଖା ଦେଇଛି, ସେତେବେଳେ ରେନେସାଁର ନୂତନତ୍ୱ ଆଧୁନିକ ମଣିଷ ମନରେ ସ୍ୱାଭାବିକ ଭାବେ ରେଖାପାତ କରିଛି । ସମାଜ-ମାନସ ସହିତ ଏକ ଦୈବକୃତ ଯୋଗ ସାଧନ ଫଳରେ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଏକ ଆତ୍ମସଚେତନ ମନୋଭଙ୍ଗୀରେ ପରିଣତ ହୋଇଅଛି । ଯୁଦ୍ଧର ଅଭିଜ୍ଞତା ମଣିଷକୁ ଅଧିକତର ସମାଜସଚେତନ କରାଇ ପାରିଛି । ପୁଣି ଧର୍ମଚେତନାକୁ ପରିହାରି କରି ଊନବିଂଶ ଶତାବ୍ଦୀର ଜଡ଼ବାଦୀ ଓ ଯୁକ୍ତିବାଦୀ ବିଜ୍ଞାନ ମନୁଷ୍ୟର ସମାଜ ଓ ତାର ମୂଲ୍ୟବୋଧକୁ ଏକ ଐକ୍ୟସୂତ୍ରରେ ଧରି ରଖିଛି । ବିଜ୍ଞାନର ଯୁଗାନ୍ତକାରୀ ଆବିଷ୍କ୍ରିୟା ବିଶେଷତଃ ପଦାର୍ଥ ବିଜ୍ଞାନ, ଜୀବ ବିଜ୍ଞାନ, ଗ୍ରହ ବିଜ୍ଞାନ ଓ କୃଷିବିଜ୍ଞାନ କ୍ଷେତ୍ରରେ ବିଭିନ୍ନ ଗୁଞ୍ଜଳିକର ତଥ୍ୟାନୁସନ୍ଧାନ ଫଳରେ ଜନସମାଜରେ ଏକ ନୂତନ ଭାବର ସୂର୍ଯ୍ୟୋଦୟ ଘଟିଛି । ଶେଷରେ ମନସ୍ତତ୍ତ୍ୱର ଯୌନକାମନା, କ୍ଷମତା ଲିପ୍ସା ଓ ପ୍ରାଣବାଦୀ ବ୍ୟାଖ୍ୟା ଊନବିଂଶ ଶତାବ୍ଦୀର ପାରମ୍ପରିକ ମୂଲ୍ୟବୋଧ ଉପରେ କୁଠାରାଘାତ କରିଛି । ମନୁଷ୍ୟର ଆଚରଣର ଯୌକ୍ତିକତା ଅର୍ଥଶୂନ୍ୟ ମନେ ହେଉଛି । ରୋମାଣ୍ଟିକ୍ କବିମାନେ ପ୍ରେମର ଯେଉଁ ଅତୀନ୍ଦ୍ରିୟ ଆଦର୍ଶ ସ୍ଥାପନ କରିଥିଲେ, ତାହା ଲୋକଚକ୍ଷୁରୁ ସମ୍ପୂର୍ଣ୍ଣ ଦୂରୀଭୂତ ହୋଇଯାଇଛି ।

ଏହିପରି ଏକ ସଂଶୟାଚ୍ଛନ୍ନ ମୁହୂର୍ତ୍ତ କବିକୁ କିଂକର୍ତ୍ତବ୍ୟବିମୂଢ଼ କରି ପକାଉଛି । ତେଣୁ ଏକ ନେତିବାଚକ ଦୃଷ୍ଟିଭଙ୍ଗୀ ଐତିହ୍ୟଗତ ଆଦର୍ଶକୁ ଚୂର୍ଣ୍ଣୀଭୂତ କରି ଦେଇଛି । ତାର କବିତାରେ ସେ ଭୂତ, ଭବିଷ୍ୟତ ଓ ବର୍ତ୍ତମାନର ଏକ ଅସ୍ପଷ୍ଟ ରୂପଦ୍ୟୋତନା ଦେଖିବାକୁ ପାଇଛି । ସଂଶୟବୋଧ, ଜୀବନଜିଜ୍ଞାସା, ବୈପ୍ଳବିକ ପରିବର୍ତ୍ତନ, ଜୀବନର କୁତ୍ସିତ ରୂପ ଦର୍ଶନ, ମାନସିକ ଦ୍ୱିଧାଦ୍ୱନ୍ଦ୍ୱ ଆଧୁନିକ କବିତାର ଉପଜୀବ୍ୟ ରୂପେ ଗୃହୀତ ହୋଇଛି । ଆଧୁନିକ କବିମାନେ ନୂତନ ଗଦ୍ୟଛନ୍ଦ ଓ ବିଚିତ୍ର ରୂପକଳ୍ପ ମାଧ୍ୟମରେ ଜଟିଳ ଜୀବନାନୁଭୂତିର ରାଜ୍ୟକୁ ବିସ୍ତୃତ କରିଛନ୍ତି । ଏହା ଫଳରେ ଆଧୁନିକ କବି ସାଧାରଣ ପାଠକ ନିକଟରେ ଦୁରୂହ ହୋଇ ଉଠିଛି, କିନ୍ତୁ ପ୍ରକୃତ ପକ୍ଷରେ ଦୁର୍ବୋଧ ହୋଇନାହିଁ । ଅବଶ୍ୟ ଗତ ତିରିଶ ବର୍ଷ ଧରି ଆଙ୍ଗିକର ଦ୍ରୁତ ପରିବର୍ତ୍ତନ ଏବଂ

ପ୍ରକାଶର ନିତ୍ୟ ନୂତନ ରୀତି, ସାଧାରଣ ପାଠକଙ୍କୁ କେତେକ ପରିମାଣରେ ଅସନ୍ତୁଷ୍ଟ କରିଛି ।

ବହିର୍ଜଗତର ଚେତନାକୁ ସୂକ୍ଷ୍ମତର ଭାବରେ ଅନ୍ତରରେ ପରିସ୍ଫୁଟ କରାଇବା ଲାଗି କବି ଅନ୍ତର୍ଦୃଷ୍ଟିର ଆଶ୍ରୟ ଗ୍ରହଣ କରିଛି । ଗଭୀର ଅନ୍ତର୍ଦୃଷ୍ଟି ତାକୁ ବିଶେଷ ଭାଷା, ଶୈଳୀ, ପ୍ରତୀକ ଓ ଚିତ୍ରକଳ୍ପ ବ୍ୟବହାର କରିବାରେ ସାହାଯ୍ୟ କରିଛି । ଯୁଗମାନସ ସହିତ ବ୍ୟକ୍ତିମାନସର ବିରୋଧ ଯୋଗୁଁ ସେ ସମସ୍ତ ଅତିକଥନ ବର୍ଜନ କରିଛି । ପରିବର୍ତ୍ତିତ ମୂଲ୍ୟବୋଧରେ ମଣିଷର ପ୍ରେମ, ଅଶ୍ରୁ ପରି ଚିରନ୍ତନ ସମସ୍ୟାଗୁଡ଼ିକର ଉପସ୍ଥାପନ ପାଠକ ନିକଟରେ ସମ୍ପୂର୍ଣ୍ଣ ନୂତନ ଭାବେ ଦେଖାଦେଇଛି । ଏହି ନୂତନତ୍ୱ ଭିତରେ କେତେକ ନିର୍ଦ୍ଦିଷ୍ଟ ଆଙ୍ଗିକ ଓ ଆତ୍ମିକ ଲକ୍ଷଣ ପରିଦୃଷ୍ଟ ହୋଇଥାଏ ।

ଯାନ୍ତ୍ରିକ ସଭ୍ୟତାର କ୍ରମବିକାଶରେ ମଣିଷ ଦିନକୁ ଦିନ ଯାନ୍ତ୍ରିକ ହେବାକୁ ଲାଗିଛି । ଅନେକ ସମୟରେ ସେ ସଚେତନ ହୋଇ ଭାବପ୍ରବଣତାକୁ ପ୍ରଶ୍ରୟ ଦେବାକୁ ଚେଷ୍ଟା କଲେ ମଧ୍ୟ ବିଫଳକାମ ହେଉଛି । ଏହି ଯାନ୍ତ୍ରିକତାର ନିଗଡ଼ ଭିତରୁ ସେ ନିଜକୁ ମୁକ୍ତ କରିବାକୁ ଅସମର୍ଥ ହେଉଛି । ତେଣୁ ତା ଜୀବନରେ ଗଭୀର କ୍ଲାନ୍ତି ଓ ନୈରାଶ୍ୟବୋଧ ଆସିଯାଉଛି । ଯୁଦ୍ଧୋତ୍ତର ପୃଥିବୀରେ ଏଇ ନୈରାଶ୍ୟବୋଧ କବିମନକୁ ବିକୃତ କରିଛି । ସେ ସ୍ୱପ୍ନ ପ୍ରବଣତାବିହୀନ ଜଟିଳ ଜୀବନଯନ୍ତ୍ରଣାକୁ ତାର କାବ୍ୟ ମାଧ୍ୟମରେ ରୂପାୟିତ କରିବାର ଚେଷ୍ଟା କରିଛି ।

କେତେକ ସ୍ଥଳରେ ଏକ ଗଭୀର ଅସନ୍ତୋଷ ଭିତରେ ସୃଷ୍ଟିର ନୂତନ ସ୍ୱର ପରିସ୍ଫୁଟ ହୋଇଛି ମାର୍କସ୍‌ବାଦୀ ଦର୍ଶନର ପ୍ରଭାବରେ । ଏଇ ଦର୍ଶନ ଯେପରି ଲୋକଚିତ୍ତରେ ଏକ ସମୟରେ ସମଗ୍ର ପୃଥିବୀରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା । ମଣିଷ ଦିନକୁ ଦିନ ଏପରି ଭାବରେ ବାସ୍ତବତାର ସମ୍ମୁଖୀନ ହୋଇ ନିଷ୍ପେଷିତ ହୋଇ ପଡ଼ୁଛି ଯେ, ତା ନିକଟରେ ବଞ୍ଚିବାର ମୋହ ଅର୍ଥଶୂନ୍ୟ ପ୍ରତୀୟମାନ ହେଉଛି । ସେ ସାମ୍ୟବାଦୀ ଓ ସମାଜବାଦୀ ଚିନ୍ତାଧାରା ଭିତରେ ଏକ ନୂତନ ପୃଥିବୀର ସନ୍ଧାନ କରିଛି । ନୂତନ ଭାବଧାରା ତାକୁ ନୂତନ ସମାଜ ସୃଷ୍ଟିର ଆଶାରେ ଆଶାନ୍ୱିତ କରିଛି । ଏଇ ଚେତନା କେତେ ବର୍ଷ ଧରି ଆଧୁନିକ କବିତାର ଆତ୍ମିକ ପରିବର୍ତ୍ତନରେ ଅନେକ ପରିମାଣରେ ସହାୟତା କରିଆସିଛି ।

ଫ୍ରେଜାର୍ ପ୍ରମୁଖ ନୃତାତ୍ତ୍ୱିକ, ପ୍ଲାଙ୍କ୍, ବୋର୍, ଆଇନଷ୍ଟାଇନ୍ ପ୍ରମୁଖ ପଦାର୍ଥ-ବିଜ୍ଞାନୀ ବିଜ୍ଞାନ କ୍ଷେତ୍ରରେ ଯେଉଁ ଅଭୂତପୂର୍ବ ପରିବର୍ତ୍ତନ ସୃଷ୍ଟି କଲେ, ତାହା ଆଧୁନିକ ଜନଜୀବନକୁ ଗଭୀର ଭାବରେ ପ୍ରଭାବିତ କରିଛି । ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ମଣିଷ ମନରୁ ଧର୍ମ ପ୍ରତି ଆସ୍ଥା ସମ୍ପୂର୍ଣ୍ଣ ଲୋପ ପାଇଛି । ବିଜ୍ଞାନ କ୍ରମଶଃ ଧର୍ମର ଆସନ ଅଧିକାର କରି ବସିଛି । ଯାହା ଅଲଭ୍ୟ, ଅସମ୍ଭବ ପଦାର୍ଥ ଥିଲା, ତାହା ମଣିଷର ଅତି ନିକଟରେ ଆସି ଉପସ୍ଥିତ ହୋଇଛି । ତେଣୁ ଧର୍ମ ମଣିଷ ନିକଟରେ ଅଫିମ ନିଶା ପରି ପ୍ରତିପନ୍ନ ହେବାରେ କୌଣସି ଅସ୍ୱାଭାବିକତା ନାହିଁ । ବିଜ୍ଞାନ ମଣିଷ ସମାଜର ଅର୍ଥ-ନୈତିକ ମାନଦଣ୍ଡ ବୃଦ୍ଧି କରିବାରେ ଏକ ଆଶୀର୍ବାଦ ଭାବରେ ଦେଖା ଦେଇଛି । କିନ୍ତୁ ଏହା ଫଳରେ ମଣିଷର ଅର୍ଥ ଓ କ୍ଷମତାଲିପ୍ସା ଖୁବ୍ ବେଶୀ ପରିମାଣରେ ବୃଦ୍ଧି ପାଇଛି । ସେ ପରସ୍ପରକୁ ଅବିଶ୍ୱାସ କରିବାକୁ ଲାଗିଛି । ଏପରି କି ଅନେକ ସମୟରେ ନିଜକୁ ମଧ୍ୟ ଅବିଶ୍ୱାସ କରିଛି । ଏହିପରି ଏକ ଅବିଶ୍ୱାସର ଧୂମକୁଣ୍ଡଳୀ ଭିତରେ ଶ୍ୱାସରୁଦ୍ଧ ହେବା ବେଳେ ତାର ମାନସିକ ପ୍ରତିଫଳନ କବିତା ଭିତରେ ପରିସ୍ଫୁଟ ହୋଇଉଠିଛି ।

'ବିଶ୍ୱବିଖ୍ୟାତ ମନସ୍ତତ୍ତ୍ୱବିତ୍ ଫ୍ରଏଡ୍‌ଙ୍କ ମନୋବିଜ୍ଞାନ ବିଶ୍ୱକ୍ଷେତ୍ରରେ ପୁଣି ଏକ ନୂତନ ପରିବର୍ତ୍ତନ ଆଣିବାରେ ସହାୟକ ହୋଇଛି । ତାଙ୍କର ମନସ୍ତତ୍ତ୍ୱ ଅନୁସାରେ ଅବଚେତନ ମନର କ୍ରିୟାକୁ ପ୍ରାଧାନ୍ୟ ଦିଆଯିବାରୁ ମଣିଷର ଚିନ୍ତାଧାରାରେ ବହୁ ପରିମାଣରେ ଅସଲଗ୍ନତା କ୍ରମଶଃ ପରିଲକ୍ଷିତ ହୋଇଛି । ଫ୍ରଏଡ୍‌ଙ୍କ ଆବିଷ୍କାର ଫଳରେ ବ୍ୟକ୍ତିଭିତର ସ୍ୱରୂପ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇଛି । ମଣିଷର ଅବଚେତନ ମନରେ ପୁଞ୍ଜୀଭୂତ ହୋଇ ରହିଥିବା ଅଭିଜ୍ଞତାମାନ ଯୌନକାମନା ସହିତ ସମ୍ପୃକ୍ତ ଏବଂ ଏହି କାମନାକୁ ଗୋଟିଏ ଶକ୍ତି ସବୁ ସମୟରେ ଅବଦମିତ କରି ରଖିବାକୁ ଚେଷ୍ଟା କରୁଥିବାରୁ ମଣିଷ ମନରେ ବିଭିନ୍ନ ପ୍ରକାରର complex ବା ବିକାର ସୃଷ୍ଟି ହୁଏ । ଫ୍ରଏଡ୍‌ଙ୍କ ପରେ ଏଡ୍‌ଲର୍ ଓ ୟୁଙ୍ଗ୍ ମଣିଷର ସହଜାତ କ୍ଷମତାଲିପ୍ସା କିପରି ତାର ଅବଚେତନ ମନକୁ ନିୟନ୍ତ୍ରଣ କରେ, ତାହା ଦର୍ଶାଇଥିଲେ । ଚେତନ ମନର ସକଳ କ୍ରିୟା ଅବଚେତନ ମନ ଉପରେ ନିର୍ଭର କରୁଛି ବୋଲି ଜଣାପଡ଼ିବା ଫଳରେ ମଣିଷର ସ୍ୱାଧୀନ ଇଚ୍ଛା ଉପରେ ଆଉ ବିଶ୍ୱାସ ସ୍ଥାପନ କରିହେଲା ନାହିଁ । ମଣିଷର ଅନ୍ତର୍ନିହିତ ବିପର୍ଯ୍ୟସ୍ତ ରୂପ କବିର ଲେଖନୀ ଭିତରେ ସ୍ପଷ୍ଟତର ହୋଇଉଠିଲା । ସ୍ନେହ, ପ୍ରେମ, କରୁଣା ପରି

ପ୍ରତିଷ୍ଠିତ ମୂଲ୍ୟବୋଧରେ ଘୋର ସଂଶୟ ଦେଖାଦେଲା ଏବଂ ଏହା ଫଳରେ ଯେଉଁ ଅନିଶ୍ଚିତ ଉଦ୍‌ବିଗ୍ନତା ପରିଲକ୍ଷିତ ହେଲା, ତାର ରୂପାୟନରେ କବିର ସୃଷ୍ଟି ଅସ୍ପଷ୍ଟ ହୋଇପଡ଼ିଲା । କ୍ରମଶଃ କବି ଦୈହିକ କାମନା, ବାସନା ଓ ଐକାନ୍ତିକ ଅନୁଭୂତିଗୁଡ଼ିକୁ ସ୍ୱୀକାର କରିବାକୁ ଲାଗିଲା । ତେଣୁ ଆଧୁନିକ କବିତାରେ ଯୌନ ଚେତନାର ପ୍ରାବଲ୍ୟ ପ୍ରାୟ ପରିଲକ୍ଷିତ ହୋଇଥାଏ ।

ମୂଳତଃ ଆଧୁନିକ କବି ପୃଥିବୀର ଭିନ୍ନ ଯୁଗୀୟ ସଂସ୍କୃତି ଓ ଐତିହ୍ୟର ସଚେତନତା ଲାଭ କରି ତାର କବିତାର ସ୍ୱତଃସ୍ଫୂର୍ତ୍ତ ପ୍ରବାହକୁ ଆହୁରି ଜଟିଳତର କରିପକାଇଛି । ପ୍ରତ୍ୟେକ ବସ୍ତୁର ସୂକ୍ଷ୍ମତମ ଅଧ୍ୟୟନ ଓ ମଣିଷର ଆତ୍ମନିରୋଧ ଭାବନାର ଏକ ବିଚିତ୍ର ସମନ୍ୱୟ ଘଟିଛି । ମଣିଷର ଅନିକେତ ମନୋଭାବ ତାର ନିଜସ୍ୱ ସ୍ଥିତି ସମ୍ପର୍କରେ ଅବିଶ୍ୱାସୀ କରି ତୋଳିଛି । ଫଳରେ ଭଗବାନ ଓ ପ୍ରଥାଗତ ନୀତିଧର୍ମ ପ୍ରତି ତାର ଆସ୍ଥା ତୁଟିଯାଇଛି । ସେ ପୁରାତନ ବିରୁଦ୍ଧରେ ପ୍ରତ୍ୟକ୍ଷ ଭାବରେ ବିଦ୍ରୋହ ଘୋଷଣା କରିଛି । ଏହି ବିଦ୍ରୋହର ଫଳ ସ୍ୱରୂପ ଯାନ୍ତ୍ରିକତାର ଜୟଗାନ ତା ପକ୍ଷରେ ସ୍ୱାଭାବିକ ହୋଇ ଉଠିଛି । ଆଜିର କବିତାରେ ଏ ସମସ୍ତର ଦୃଷ୍ଟାନ୍ତ ଅବିରଳ ନୁହେଁ ।

ଆତ୍ମିକ ପରିବର୍ତ୍ତନ ପରି ଆଙ୍ଗିକ କ୍ଷେତ୍ରରେ ମଧ୍ୟ ଏକ ବିରାଟ ପରିବର୍ତ୍ତନ ଲକ୍ଷିତ ହୋଇଛି । ପୁରାତନ ଭାବାବେଗର ମୃତ୍ୟୁ ସଙ୍ଗେ ସଙ୍ଗେ କାବ୍ୟିକ ଛନ୍ଦ, ପ୍ରବହମାନ ଗୀତିମୟ ଧାରା ଅବଲୁପ୍ତ ହୋଇଛି । ଛନ୍ଦ ଓ ଯତିପାତ ଆଧୁନିକ ଜଟିଳ ମନରେ ବକ୍ତବ୍ୟକୁ ପ୍ରକାଶ କରିବା ଲାଗି ଅକ୍ଷମ ହୋଇଛି । ସାମ୍ପ୍ରତିକ ଯୁଗଚେତନାର ବିକ୍ଷିପ୍ତତା ଓ ଜଟିଳତାକୁ ପ୍ରକାଶ କରିବା ଲାଗି ବର୍ତ୍ତମାନ ଗଦ୍ୟ ହିଁ ପ୍ରଧାନ ମାଧ୍ୟମ । ମଣିଷ ମନରେ ଯେତେବେଳେ ଗୀତିମୟତା ନାହିଁ, ତାର ଯନ୍ତ୍ରଣାଜର୍ଜରିତ କବିତା ଭିତରେ ଗୀତିମୟତା ଆସିବା ସମ୍ଭବ ହେବ କିପରି ? ଆଜିର ମାନସିକ ଦ୍ୱିଧାଦ୍ୱନ୍ଦ୍ୱର ପ୍ରକାଶନ ଗଦ୍ୟମୟ ହେବା ସ୍ୱାଭାବିକ । କିନ୍ତୁ ଏହି ଗଦ୍ୟଛନ୍ଦ ଭିତରେ ମଧ୍ୟ ଏକ ନୂତନ ଧରଣର ମାଧୁର୍ଯ୍ୟ ରହିଛି । ତାହା ହେଉଛି ଅନ୍ତର୍ଛନ୍ଦ ବା ମଧ୍ୟ ମିଳନ । ରୁକ୍ଷ ଗଦ୍ୟ ଛନ୍ଦ ଭିତରେ ଏହି ମଧ୍ୟ ମିଳନର ଧ୍ୱନିମାଧୁର୍ଯ୍ୟ ହିଁ ପାଠକକୁ କେତେକ ପରିମାଣରେ ଆନନ୍ଦଦାନ କରିଥାଏ । ନଚେତ୍ ଗଦ୍ୟ କବିତା ସଂପୂର୍ଣ୍ଣ ନୀରସ ଓ ବାହ୍ୟିକ କାବ୍ୟଧର୍ମ ବିବର୍ଜିତ ହୋଇ ପଡ଼ିଥାନ୍ତା ।

ଆଧୁନିକ କବିତାରେ ବାକ୍‌ଶକ୍ତି ସହିତ କାବ୍ୟଶକ୍ତିର ମିଳନ ଏକ ବୈପ୍ଳବିକ ପଦକ୍ଷେପ । ସାହିତ୍ୟର ଦରବାରରେ ବିଶେଷତଃ କବିତାର ଦରବାରରେ ବାକ୍‌ଶକ୍ତିର ସାମାନ୍ୟତମ ସମ୍ମାନ ନଥିଲା । କିନ୍ତୁ ଆଧୁନିକ ଯୁଗରେ ଏହା ସର୍ବଶ୍ରେଷ୍ଠ ସମ୍ମାନ ଲାଭ କରିଛି । ଆଧୁନିକ ମଣିଷ ମୁଖର ଭାଷା ପ୍ରୟୋଗର ଚେଷ୍ଟା କରିବାକୁ ଯାଇ କବି ପ୍ରଚଳିତ ଶବ୍ଦ, ଗ୍ରାମ୍ୟ ଶବ୍ଦ, ବିଦେଶୀ ଶବ୍ଦର ବ୍ୟବହାର କରିବାକୁ ଚେଷ୍ଟା କରିଛି । ଗଦ୍ୟ, ପଦ୍ୟ ଓ କଥ୍ୟ ଭାଷାର ବ୍ୟବଧାନ ଏହା ଫଳରେ ଦୂରୀଭୂତ ହୋଇଛି । ପ୍ରଚଳିତ କାବ୍ୟିକ ଶବ୍ଦର ବ୍ୟବହାର ମଧ୍ୟ ଏହା ସହିତ ସମନ୍ୱୟ ସାଧନ କରିଛି । ତେଣୁ ଭାଷା ସମ୍ବନ୍ଧୀୟ ରକ୍ଷଣଶୀଳତାର ସାମାନ୍ୟ ସ୍ପର୍ଶ ଆଧୁନିକ କବିତାରେ ଦେଖିବାକୁ ମିଳେ ନାହିଁ । କେତେକ ସ୍ଥଳରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ କାବ୍ୟ ପୁରାଣରୁ କମ୍ବା ଭାବନାରୁ ଉଦ୍ଧୃତି ଗୁଡ଼ିକର ସମାବେଶ ରହିଅଛି । କବିତାର ଭାଷା ପ୍ରୟୋଗ ଭିତରେ ଏହି ଉଦ୍ଧୃତିଗୁଡ଼ିକ ଏକ ନୂତନ ଆସ୍ୱାଦନ ପ୍ରଦାନ କରିଥାଏ ।

ପ୍ରାଚୀନ ଉପମା ଓ ଶବ୍ଦଗୁଡ଼ିକ ଅନେକ ସମୟରେ ପରିହାର କରାଯାଇଥିଲେ ମଧ୍ୟ କେତେକ ସ୍ଥଳରେ ନୂତନ ଅର୍ଥରେ ଏଗୁଡ଼ିକର ବ୍ୟବହାର ରହିଛି । ପୁଣି ଆଧୁନିକ ମାନସଲବ୍ଧ ପ୍ରତୀକ ଓ ଚିତ୍ରକଳ୍ପ ସଂଯୋଜନା ସମ୍ପୂର୍ଣ୍ଣ ଭିନ୍ନ । ଅଧିକାଂଶ ଅକାବ୍ୟିକ ବସ୍ତୁ ବିଶେଷତଃ ସାଧାରଣ ଦୃଷ୍ଟିରେ ଯୁଗ ଯୁଗ ଧରି ଅନାଦୃତ ବସ୍ତୁ ଆଜିର କବିକୁ ଆକୃଷ୍ଟ କରିଛି । ସେ ଏଗୁଡ଼ିକୁ ତାର ପ୍ରତୀକ ଓ ଚିତ୍ରକଳ୍ପ ଭାବରେ ଗ୍ରହଣ କରି ଆତ୍ମପ୍ରସାଦ ଲାଭ କରିଛି । ପାଠକ ଏହି ଅବହେଳିତ ବସ୍ତୁଗୁଡ଼ିକରେ ନୂତନତ୍ୱର ସନ୍ଧି ଲକ୍ଷ୍ୟ କରି ବିସ୍ମିତ ହୋଇଛି । ପ୍ରତୀକ ଓ ଚିତ୍ରକଳ୍ପ ବୌଦ୍ଧିକ ପୃଷ୍ଠଭୂମିରେ ବିଭିନ୍ନ ଅଭିବ୍ୟକ୍ତିକୁ ଏକାନ୍ତ ଅର୍ଥପୂର୍ଣ୍ଣ ଭାବରେ ପ୍ରକାଶ କରିବାକୁ ସମର୍ଥ ହୋଇଛି । ପୁଣି ଏଗୁଡ଼ିକର ରୂପ ବୈଚିତ୍ର୍ୟ ପାଠକ ମନରେ ଏକ ନୂତନ ରହସ୍ୟର ସଞ୍ଚାର କରିବା ସଙ୍ଗେ ସଙ୍ଗେ ତାକୁ ଏକ ଦୁର୍ବୋଧ ଅଥଚ ଆନନ୍ଦମୟ ଜଗତକୁ ଅପସାରିତ କରିଦେଇଛି ।

ସାମ୍ପ୍ରତିକ କବିତାରେ ଶବ୍ଦ ପ୍ରୟୋଗ ବା ଶବ୍ଦ ଗଠନରେ ବହୁ ପରିମାଣରେ ମିତବ୍ୟୟିତା ଅବଲମ୍ବନ କରାଯାଇଛି । ଏହା ଫଳରେ କବି ଅତିକଥନ ତ୍ୟାଗ କରି ଅର୍ଥଘନତ୍ୱ ଉପରେ ଗୁରୁତ୍ୱ ପ୍ରଦାନ କରିପାରିଛି । ଅତିକଥନର

ବର୍ଜନ ଫଳରେ ସେ କେତେକ ସ୍ଥଳରେ ମଧ୍ୟବର୍ତ୍ତୀ ଚରଣକୁ ମଧ୍ୟ ଉଲ୍ଲେଖ କରୁନାହାନ୍ତି । ତେଣୁ ତାଙ୍କ ଚିନ୍ତାଧାରାରେ ଏକ ଉଲ୍ଲମ୍ଫନ ସୃଷ୍ଟି ହୋଇ ଦୁଇଟି ଚରଣ ଭିତରେ ପରସ୍ପର ସମ୍ପର୍କହୀନତା ପ୍ରତୀୟମାନ ହେଉଛି । ଏହା ପ୍ରାଥମିକ ସ୍ତରରେ ପାଠକଙ୍କୁ ହଠାତ୍ ବିଚଳିତ କରିଛି । କିନ୍ତୁ ପରେ ପାଠକ ମନରେ ଏହି ସ୍ୱତ ଗଭୀର ରେଖାପାତ କରିପାରିଛି ।

ଉପରୋକ୍ତ ଲକ୍ଷଣମାନ ସମସ୍ତ ଆଧୁନିକ କବିତାରେ ପ୍ରକାଶ ଲାଭ କରିଛି ବୋଲି କହିଲେ ଅତ୍ୟୁକ୍ତି ହେବ । କବି ତାଙ୍କ କବିତାକୁ ଯଥାସମ୍ଭବ ସଂକ୍ଷିପ୍ତ ଓ ରସଘନ କରିବାର ଚେଷ୍ଟା କରିଥିଲେ ମଧ୍ୟ ଏହି ସଂକ୍ଷିପ୍ତ ପରିସର ଭିତରେ ଅଧିକାଂଶ ଲକ୍ଷଣ ଭିନ୍ନ ଭିନ୍ନ କବିତାରେ ଲକ୍ଷିତ ହୋଇଅଛି । ପ୍ରବୃତ୍ତିର କାରାଗାରରେ ବନ୍ଦୀ ମାନବଆତ୍ମାର ବ୍ୟଥିତ ରୂପ ପରିସ୍ଫୁଟନ ଲାଗି ଭିନ୍ନ ଲକ୍ଷଣାକ୍ରାନ୍ତ କାବ୍ୟିକ ପରିପ୍ରକାଶରେ ଯେଉଁ ବୈଚିତ୍ର୍ୟ ପରିଲକ୍ଷିତ ହୋଇଛି, ତାହା ଆଜି ବିଦଗ୍ଧ ପାଠକ ସମାଜରେ ଆଗ୍ରହର ସହିତ ଗୃହୀତ ହୋଇପାରିଛି ।



---

ସହାୟକ ଗ୍ରନ୍ଥ : (୧) ଆଧୁନିକ ବାଂଲା କାବ୍ୟ ପରିଚୟ, (୨) କବିତାର ଧର୍ମ ଓ ବାଂଲା କବିତାର ଋତୁ ବଦଳ, (୩) କବିତାର କଥା (ଜୀବନାନନ୍ଦ)

# ପ୍ରତୀକବାଦ

"ମାନୁଷର ଭାଷା ଟିକୁ ଅର୍ଥ ହିସ୍ତେ ବନ୍ଧ ଗୃହଧାରେ"; ନିତ୍ୟ ବ୍ୟବହାର ଫଳରେ ତାହା ପୁଣି ଜୀର୍ଣ୍ଣ ଓ ଦୁର୍ବଳ । ସେହି ଜୀର୍ଣ୍ଣ ଭାଷାରେ ନୂତନ ସ୍ୱର ନ ସଞ୍ଚାରିଲେ କାବ୍ୟ ସୃଷ୍ଟି ସମ୍ଭବ ନୁହେଁ । ଜୀବନର ଏକାନ୍ତ ପ୍ରୟୋଜନରୁ ଯେଉଁ ଭାଷାର ଜନ୍ମ, ପ୍ରାତ୍ୟହିକ ଜୀବନ ଯାହାର ତୁଚ୍ଛ ଆଳାପ ଆଲୋଚନା ପାଇଁ ତାହା ଅବଶ୍ୟ ଯଥେଷ୍ଟ; କିନ୍ତୁ ମଣିଷର ବ୍ୟକ୍ତ ଓ ଅବ୍ୟକ୍ତ ଜଗତ ମଧ୍ୟରେ ଚିନ୍ତା ଓ ଚେତନାର ଯେଉଁ ଅନନ୍ତ ସାଗର ପରିସ୍ପନ୍ଦମାନ ରହିଛି, ତା'ର ଵିଚିତ୍ର ଗଭୀର ତରଙ୍ଗ ଲୀଳାର ସକଳ ବିସ୍ମୟ ଓ ରହସ୍ୟକୁ ପ୍ରକାଶ କରିବାକୁ ତାହା ପର୍ଯ୍ୟାପ୍ତ ନୁହେଁ । ଜୀବନ ଓ ଜଗତ ପ୍ରତି ମନରେ ଅତୃପ୍ତ କୌତୂହଳକୁ ପ୍ରକାଶ କରିବାକୁ ଭାଷାର ଏହି ଦୈନ୍ୟ ଭାଷା ବିକାଶର ଅଳ୍ପ କାଳ ପରେ ମଣିଷ ଉପଲବ୍ଧି କରିଥିବ—ଭାଷା ସାହାଯ୍ୟରେ ଅନବରତମାତ୍ର ଭାବଲୋକକୁ ସେ ପୂର୍ଣ୍ଣ ଉଦ୍‌ଘାଟିତ କରିପାରେ ନାହିଁ; ଅଲୌକିକତାର ସ୍ୱରଟିକୁ ସେ ଠିକ୍ ଧରିପାରେ ନାହିଁ । ଯେଉଁ ଅନୁଭୂତି ବା ଭାବରହସ୍ୟକୁ ଭାଷାର ପରିଧିରେ ଆୟତ୍ତ କରିବାକୁ ମଣିଷ ସମର୍ଥ ହୁଏ ନାହିଁ, ତାହାର ପରି-ପ୍ରକାଶ ପାଇଁ ସାହିତ୍ୟରେ ବ୍ୟବହୃତ ହୁଏ ପ୍ରତୀକ ବା ସଙ୍କେତ । ଅବଶ୍ୟ ଭାଷା ଏହି ସଙ୍କେତ ଭିନ୍ନ ଅନ୍ୟ କିଛି ନୁହେଁ । ଅର୍ଥବାନ୍ ଧ୍ୱନିସମଷ୍ଟିର ଭାଷା; ଆଜି ସେ ସବୁ ଧ୍ୱନିବିଶେଷ ପ୍ରାଣୀ ବା ବସ୍ତୁର ସଙ୍କେତ ମାତ୍ର । ମାନବ ଚିନ୍ତା ଓ ଅଭିଜ୍ଞତାର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ଏହି ଧ୍ୱନିର ବୈଚିତ୍ର୍ୟ ବିକଶିବା ଫଳରେ ଭାଷାରେ ଜଟିଳତା ଦେଖାଦେଇଛି । କିନ୍ତୁ ଏହି ଭାଷା-ସଙ୍କେତ ଭିନ୍ନ ଅନ୍ୟ ବହୁପ୍ରକାର ସଙ୍କେତ ବା ପ୍ରତୀକ ସାହିତ୍ୟରେ ବ୍ୟବହୃତ ହୋଇଛି । ମଣିଷ ଯେଉଁଠି ଅପୂର୍ଣ୍ଣ, ତାର ଭାଷା ସେଠି ପୂର୍ଣ୍ଣତାର ଦାବି କରି ନ ପାରେ । ଭାଷା ତେଣୁ ସବୁବେଳେ ପୂର୍ଣ୍ଣଭାବ ଓ ଆଦର୍ଶକୁ ରୂପ ଦେବାକୁ ଅସମର୍ଥ ହୁଏ । ପ୍ରକୃତରେ ମଣିଷର ଭାଷା ଦାରିଦ୍ର୍ୟ ଉତ୍କଟତର । ଅନୁଭବକୁ

ଅନିର୍ବଚନୀୟ କହିଲ ବେଳେ ମଣିଷର ଦୁର୍ବଳତା ଫୁଟିଉଠେ । ପ୍ରତୀକ ମଣିଷକୁ ଏହି ଦାରିଦ୍ର୍ୟରୁ ରକ୍ଷା କରେ । W. B. Yeats କହି ରଖିଛନ୍ତି, "Symbols are the only things free enough from all bonds to speak of perfection" (Ideas of good and evil). ନାରୀର ସୌନ୍ଦର୍ଯ୍ୟକୁ ଅଜସ୍ର କଳ୍ପନାର ଇନ୍ଦ୍ରଜାଲ ମଧ୍ୟରେ ବର୍ଣ୍ଣନା କରାଯାଇ ପାରେ । କିନ୍ତୁ ଠିକ୍ ରୂପଟିକୁ ସେଠି ଧରିହେବ ନାହିଁ । ଆମ ପ୍ରାଚୀନ ଗ୍ରନ୍ଥ-ସାହିତ୍ୟରେ ଏ ପ୍ରଚେଷ୍ଟା ପ୍ରଚୁର । କିନ୍ତୁ କବି ଯେତେବେଳେ କହନ୍ତି—

"My love is like a red red-rose

× × ×

My love is like a melody
That is sweetly played in tune."

ସେତେବେଳେ ନାରୀସୌନ୍ଦର୍ଯ୍ୟର ପୂର୍ଣ୍ଣ ଆଦର୍ଶ ଫୁଟିଉଠେ । ଦୁଇଟି ପ୍ରତୀକ ଏଠି ପ୍ରଯୁକ୍ତ । ଗୋଟିଏ ରକ୍ତ ଗୋଲାପ, ଅନ୍ୟଟି ସଙ୍ଗୀତର ମଧୁ ମୂର୍ଚ୍ଛନା । ଏହି ପ୍ରତୀକର ନବୀନ ମହିମାରେ ନାରୀ-ସୌନ୍ଦର୍ଯ୍ୟର ଚିର-କାଳୀନ ଆଦର୍ଶ ଝଲସି ଉଠିଛି । ଆମେ ଭଗବାନଙ୍କ ସାଧନା କ୍ଷେତ୍ରରେ ମୂର୍ତ୍ତିର ପ୍ରତୀକ ବ୍ୟବହାର କରୁ । ଏହି ପ୍ରତୀକ ମାଟି କିମ୍ବା ପଥରର ହେଲେ ହେଁ ସେଥିରେ ଭଗବାନଙ୍କର ପୂର୍ଣ୍ଣ ମହିମା ଉପଲବ୍ଧ ହୁଏ । ଏପରି କି ଶାଳଗ୍ରାମ ଶିଳା ସେଠି ଯଥେଷ୍ଟ । ସେପରି କ୍ରୁଶ ବି ଖ୍ରୀଷ୍ଟଙ୍କର ପ୍ରତୀକ । ନିର୍ଜୀବ ଜଡ଼ ପଦାର୍ଥ ଯେପରି ପ୍ରତୀକ ରୂପେ ବ୍ୟବହୃତ ହୋଇ-ପାରେ, ଠିକ୍ ସେପରି ମଣିଷ ବି କୌଣସି କୌଣସି ଭାବାଦର୍ଶର ପ୍ରତୀକ ହୋଇପାରେ । ରାମଚନ୍ଦ୍ର—ଚିରକାଳୀନ ଆଦର୍ଶପୁତ୍ରର ପ୍ରତୀକ । ଯୁଧିଷ୍ଠିର—ଧାର୍ମିକ ପୁରୁଷର ପ୍ରତୀକ । ରାବଣ—ଦୁର୍ଦ୍ଦାନ୍ତ ମଣିଷ ପ୍ରକୃତିର ପ୍ରତୀକ । କିନ୍ତୁ ଏଠି ସ୍ମରଣ ରଖିବାକୁ ହୁଏ ଯେ, ସେହିସବୁ ବ୍ୟକ୍ତି ଓ ବସ୍ତୁ ପ୍ରତୀକ ରୂପେ ବ୍ୟବହୃତ ହୋଇ ପାରନ୍ତି, ଯାହା ସମ୍ବନ୍ଧରେ ମଣିଷ ମନରେ ବହୁକାଳ ପୋଷିତ ସୁସ୍ଥ ଧାରଣା ଓ ସଂସ୍କାର ବଳବତ୍ତର ରହିଛି ।

ସାହିତ୍ୟରେ ଚିରକାଳ ପ୍ରତୀକର ବ୍ୟବହାର ହୋଇଆସିଛି । ଆର୍ଥର ସିମନ୍ସ (A. Symons) କହନ୍ତି, "without symbolism there

can be no literature" ପ୍ରତୀକ ବ୍ୟତୀତ ସାହିତ୍ୟର ଅସ୍ତିତ୍ୱ କଳ୍ପନା କରି ହୁଏ ନାହିଁ । W. B. Yeats ମଧ୍ୟ କହି ରଖିଛନ୍ତି, "All art that is not mere story telling or mere portraiture is symbol" ଗଳ୍ପକଥନ ଓ ଚିତ୍ରାଙ୍କନ ଭିନ୍ନ ସବୁ ଶିଳ୍ପୀ ତ ପ୍ରତୀକାତ୍ମକ । ଶିଳ୍ପୀ ଶିଳ୍ପକଳାରେ ରଙ୍ଗରେଖା ଓ ସ୍ୱରଛନ୍ଦରେ ମଧୁର ସମନ୍ୱୟ ସାଧନ କରେ । ଫଳରେ ମଣିଷ ମନରେ ଅନବଚ୍ଛିନ୍ନ ଭାବବ୍ୟଞ୍ଜନା ଉଦ୍‌ଭାସିତ ହୋଇ ଉଠେ । ତେଣୁ ଏଠି ଶିଳ୍ପକଳାର ସାଧନ ଓ ଉପକରଣକୁ ପରିସ୍ପୃଷ୍ଟ ଭାବ-ପ୍ରକାଶର ପ୍ରତୀକ ରୂପେ ଗ୍ରହଣ କରାଯାଏ । Yeats ଙ୍କ ଭାଷାରେ ତାହା "Emotional symbol" । ସଂସ୍କୃତ ଅଳଙ୍କାରଶାସ୍ତ୍ରରେ ଧ୍ୱନିବାଦୀଗଣ ଏପରି ପ୍ରତୀକର ଯଥେଷ୍ଟ ଆଲୋଚନା କରିଛନ୍ତି । ବ୍ୟକ୍ତ ଧ୍ୱନି ମଧ୍ୟରେ ନିଗୂଢ଼ ଭାବବ୍ୟଞ୍ଜନାର ସଙ୍କେତ ନ ଫୁଟିଲେ ଠିକ୍ କାବ୍ୟର ଜନ୍ମ ସମ୍ଭବ ନୁହେଁ । କେବଳ ପ୍ରତୀକାତ୍ମକ ଶବ୍ଦ ନୁହେଁ, ଚରିତ୍ର ଓ ଘଟଣାର ଅନ୍ତର୍ନିହିତ ବ୍ୟଞ୍ଜନା ବି ରହସ୍ୟର ଦ୍ୟୋତନା ଆଣେ । ଆମର ପରିଜ୍ଞାତ ଓ ପରିଦୃଶ୍ୟମାନ ଜଗତର ନେପଥ୍ୟରେ ଯେଉଁ ରହସ୍ୟାଚ୍ଛନ୍ନ ଭାବଲୋକ ବର୍ତ୍ତମାନ, ପ୍ରତୀକ ତାହାର କିଞ୍ଚିତ୍ ଆଭାସ ଆଣି ଦେଇପାରେ । ପ୍ରକୃତରେ ଯେଉଁଠି ପ୍ରତୀକ, ସେଠି କିଛି ରହସ୍ୟର ସଙ୍କେତ ଫୁଟେ । ସେଠି ଭାଷା ନାହିଁ, ଆଭାସ ମାତ୍ର ରହିଛି । ସାଧାରଣ ବ୍ୟାକରଣ ଯେଉଁଠି ଅବସନ୍ନ, ସାଧାରଣ ପ୍ରକାଶଭଙ୍ଗୀ ଯେଉଁଠି ଗୂଢ଼ାତିଗୂଢ଼ ଭାବ ପରିସ୍ଫୁଟନରେ ନିସ୍ତେଜ, ସେଠି ପ୍ରତୀକ କିଛି ଆଶାର ସଞ୍ଚାର କରେ । ତାହା ସ୍ପଷ୍ଟ ଓ ଉଜ୍ଜ୍ୱଳରେଖାରେ ଅବଶ୍ୟ ବସ୍ତୁ ଓ ଭାବକୁ ରୂପ ଦେଇ ପାରେନାହିଁ, କେବଳ କୁହେଳିକାଚ୍ଛନ୍ନ ରହସ୍ୟ ଜାଲ ମଧ୍ୟରେ ସେହି ବସ୍ତୁ ଓ ଭାବର ଇଙ୍ଗିତ ମାତ୍ର କରେ । ଠିକ୍ ଗୋଧୂଳିର ଲଗ୍ନ ପରି ପ୍ରତୀକର ମାୟା, କିଛି ଆଲୋକ ଓ ଅନ୍ଧକାରର ଲୁଚକାଳି ଖେଳ । ଯାହା ଅଦୃଶ୍ୟ, ଅମେୟ ଓ ଅଗାଧ୍ୟ ତାକୁ ବର୍ଣ୍ଣନ କରିବା ନିର୍ବୋଧତା । ତାକୁ କେବଳ ହୃଦୟରୁ ହୃଦୟାନ୍ତର ସଞ୍ଚାର କରାଯାଇପାରେ । ସିମନ୍‌ସ୍‌ଙ୍କ ଭାଷାରେ "To name is to destroy, to suggest is to create" ଯାହା ନାମହୀନ ତାକୁ ନାମ ଦେଲେ ତାହା ନିଃଶେଷ ହୋଇଯାଏ । ଆଧୁନିକ ଯୁଗର ସାହିତ୍ୟିକ ଏ ପ୍ରୟୋଜନ ଦୃଷ୍ଟିରୁ ପ୍ରତୀକ ପ୍ରୟୋଗ କରନ୍ତି । ବେଳେ ବେଳେ ତାଙ୍କ ସାହିତ୍ୟ ସୃଷ୍ଟି ଓ ଶିଳ୍ପକଳା ଦୈନନ୍ଦିନ ଜୀବନର ପ୍ରତ୍ୟକ୍ଷ ବାସ୍ତବତା ଠାରୁ ଦୂରେଇ ଚାଲିଯାଏ । ଅର୍ଥାତ୍ କବି ମଣିଷ ମନର ଚିରନ୍ତନ

ଭବ-ରହସ୍ୟକୁ ଉନ୍ମୋଚତ କଲେ ମଧ୍ୟ ତାହାର ସହିମ୍ବ ବାସ୍ତବରୂପଟିକୁ ଆଛନ୍ନ କରି ନିସ୍କ୍ରିୟ ଭବରୂପଟିକୁ ଅଧିକ ପ୍ରକଟିତ କରି ବସନ୍ତି । ଫଳରେ ସାଧାରଣ ପାଠକ ପାଖରେ ସେସବୁ ଦୁର୍ବୋଧ ପ୍ରତିପନ୍ନ ହୁଏ ।

ବାସ୍ତବ ଜଗତକୁ ନେପଥ୍ୟରେ ରଖି ପ୍ରତୀକ ନୂତନ ଜଗତର ସମ୍ବାଦ ବହନ କରି ଆଣିଥାଏ । ଆମର ବୁଦ୍ଧିବଦ୍ଧ ଇନ୍ଦ୍ରିୟଗ୍ରାହ୍ୟ ଜଗତର ଅନ୍ତରାଳରେ ଯେଉଁ ଅଦୃଶ୍ୟ ଇନ୍ଦ୍ରିୟାତୀତ ଜଗତଟି ରହିଛି, ତାହା ଯେପରି ବର୍ଣ୍ଣହୀନ, ସେପରି ବି ଶବ୍ଦହୀନ । ସାଧାରଣ ରଙ୍ଗ ଓ ରେଖା, ଭଷା ଓ ପ୍ରକାଶ ଭଙ୍ଗୀ ସେ ଜଗତରେ ପ୍ରବେଶ କରିପାରେ ନାହିଁ । କେବଳ ପ୍ରତୀକ ସେ ଜଗତ ସହିତ ଆମର ସମ୍ପର୍କ ସ୍ଥାପନ କରେ । ଦୃଶ୍ୟମାନ ଜଗତ ସେଠି ଏକମାତ୍ର ସତ୍ୟ ନୁହେଁ କି ଅତୀନ୍ଦ୍ରିୟ ଜଗତ କେବଳ ମିଥ୍ୟା ନୁହେଁ । ସିମନ୍ସ ପ୍ରତୀକାତ୍ମକ ସାହିତ୍ୟର ସଂଜ୍ଞା ନିର୍ଦ୍ଦେଶ କରି କହିଛନ୍ତି, "Literature in which the visible world is no longer a reality, and the unseen world no longer a dream." (The symbolist movement)

ଆମର ବାସ୍ତବ ଜଗତ ନିତ୍ୟ ପରିବର୍ତ୍ତନଶୀଳ । ଅବକ୍ଷୟ ତା'ର ଧର୍ମ । ତେଣୁ ଏ ଜଗତ ଶିଳ୍ପୀକୁ ପୀଡ଼ିତ କରେ, ଆଘାତ ଓ ବେଦନାରେ ବିବ୍ରତ କରେ । ତେଣୁ ସେ ଏହି ଜଗତରୁ ମୁକ୍ତ ହୋଇ ଅତୀନ୍ଦ୍ରିୟ ରହସ୍ୟଲୋକକୁ ଉତ୍ତୀର୍ଣ୍ଣ ହେବାକୁ ଚାହାନ୍ତି । ଆମର ବସ୍ତୁ ଚେତନାସତ୍ତାର ଗଭୀର ଅନ୍ତରାଳରେ ଆଧ୍ୟାତ୍ମିକ ରହସ୍ୟାଳୟ । ସେଠି ଆତ୍ମା ଯେପରି ଅମର, ଅମଳିନ ଠିକ୍ ସେପରି ସେ ଜଗତ ବି ଶାଶ୍ୱତ ଚିରକାଳୀନ । ସେହି ଜଗତର ଉପଲବ୍ଧିରେ ପ୍ରତୀକ ହିଁ ଏକମାତ୍ର ସାଧନ । କବି ସେହି ପ୍ରତୀକ ଲାଗି ଆଶ୍ୱସ୍ତ, ଅପୂର୍ଣ୍ଣ, ଅଶାନ୍ତ । ଏହି ପ୍ରତ୍ୟକ୍ଷ ବାସ୍ତବ ଜଗତର ଯାହା କିଛି ଅପରିତୃପ୍ତି ଓ ଅସନ୍ତୋଷ, ସବୁ ସେଠି ପରିପୂର୍ଣ୍ଣତାର ଆସ୍ୱାଦରେ ଶାନ୍ତ ଓ ଶୀତଳ ମନେ-ହୁଏ । ପ୍ରତୀକବାଦୀ କବି ସେହି ଜଗତର ଅନୁସନ୍ଧାନରେ ବ୍ରତୀ ଓ ପ୍ରତୀକ ତାଙ୍କର ଏକମାତ୍ର ଉପକରଣ ।

## ପ୍ରତୀକ ଓ ରୂପକ

ବର୍ଣ୍ଣିତ ଘଟଣା ଓ ଚିତ୍ର ମାଧ୍ୟମରେ ଗୂଢ଼ତତ୍ତ୍ୱର ଆଭାସ ଆଣିବାକୁ ସାହିତ୍ୟରେ ଦୁଇଟି ଉପାୟ ଅବଲମ୍ବନ କରାଯାଇଥାଏ । ଉଦ୍ଦେଶ୍ୟକୁ ପ୍ରଚ୍ଛନ୍ନ

ଉକ୍ତି ଉପାୟକୁ ସ୍ପଷ୍ଟ କରିବାର ଏ ପ୍ରଚେଷ୍ଟା । ପ୍ରଥମଟି ପ୍ରତୀକ ଓ ଦ୍ୱିତୀୟଟି ରୂପକ ରଚନା । (Allegory) (୧) । ଏ ଦୁଇଟି ମଧ୍ୟରେ ସାଧର୍ମ୍ୟ ଅପେକ୍ଷା ସୂକ୍ଷ୍ମ ପାର୍ଥକ୍ୟ ଯଥେଷ୍ଟ । W. B. Yeats ଙ୍କୁ ଏଠି ସ୍ମରଣ କରିବାକୁ ହୁଏ । ସେ କହନ୍ତି, "A symbol is indeed the possible expression of some invisible essence, a transparent lamp about a spiritual flame, while allegory is one of an embodied thing of familiar principle and belongs to fancy and not to imagination, the one is revelation, the other an amusement." (୨)

ପ୍ରତୀକାତ୍ମକ ରଚନାରେ ଅରୂପକୁ ରୂପ ମଧ୍ୟରେ ପ୍ରକାଶିତ କରିବାର ପ୍ରଚେଷ୍ଟା ରହିଛି; କିନ୍ତୁ ରୂପକ ରଚନା ରୂପକୁ ରୂପାନ୍ତରରେ ପ୍ରକାଶ କରେ ମାତ୍ର । ପ୍ରତୀକରେ ଆଧ୍ୟାତ୍ମିକ ଅନୁଭୂତିର ରହସ୍ୟ ଉନ୍ମୋଚିତ ହୁଏ, ରୂପକରେ ନୈତିକ ଉଦ୍ଦେଶ୍ୟର ସୌନ୍ଦର୍ଯ୍ୟ ଫୁଟେ । ଆଧ୍ୟାତ୍ମି ଜଗତର ରୂପରଙ୍ଗ ରସ ବାକ୍ୟରେ ପ୍ରକାଶ କରିବା କଠିନ ବ୍ୟାପାର; କିନ୍ତୁ ନୈତିକ ଜଗତର ରୂପ ଉନ୍ମୋଚନ ଅପେକ୍ଷାକୃତ ଅଧିକ ସହଜ । ପ୍ରତୀକ ଅପ୍ରକାଶ୍ୟକୁ ପ୍ରକାଶିତ କଲାବେଳେ ସ୍ୱପ୍ନର ମାୟାଜାଲ ରଚେ; ରୂପକ କିନ୍ତୁ ଅପ୍ରକାଶ୍ୟକୁ ଭିନ୍ନ ରୂପରେ ସ୍ପଷ୍ଟ ପ୍ରକାଶିତ କରିଦିଏ ।

ରୂପକ ରଚନା ନୈତିକ ଭାବଚିନ୍ତାର ଦାର୍ଶନିକ ତତ୍ତ୍ୱକୁ ବ୍ୟକ୍ତ ରୂପ ରସ ସୌନ୍ଦର୍ଯ୍ୟ ମଧ୍ୟରେ ଆଚ୍ଛନ୍ନ କରି ରଖେ । ସେ ସବୁ ତତ୍ତ୍ୱ ଯବନିକା ଅନ୍ତରାଳରେ ଥିଲେ ମଧ୍ୟ ସେଗୁଡ଼ିକୁ ଚିହ୍ନିବାର ମୂଳସୂତ୍ର କେତୋଟିର ସନ୍ଧାନ ପାଇଗଲେ ସେ ସବୁର ପୂର୍ଣ୍ଣ ପରିଚୟ ଲାଭରେ କୌଣସି ଅସୁବିଧା ହୁଏ ନାହିଁ । ଅବଶ୍ୟ ଉଦ୍ଦିଷ୍ଟ ସତ୍ୟ ବା ତତ୍ତ୍ୱର ସ୍ପଷ୍ଟ ଓ ପ୍ରତ୍ୟକ୍ଷ ବିବୃତି ଅପେକ୍ଷା ରୂପକ ରଚନା ଅଧିକ ପ୍ରଭାବଶାଳୀ । ଆଖ୍ୟାନ ଓ ଉପାଖ୍ୟାନ ମାଧ୍ୟମରେ ତାହା ତତ୍ତ୍ୱଟିକୁ ହୃଦୟଗ୍ରାହୀ କରିଦିଏ । ପୃଥିବୀପ୍ରସିଦ୍ଧ Fairy Queen, Divine Comedy ଓ Pilgrims Progress ଚମତ୍କାର ତତ୍ତ୍ୱଗର୍ଭ ରୂପକ ରଚନା । ଆମର ପୁରାଣ ସାହିତ୍ୟରେ ଅଜସ୍ର ରୂପକ ରହିଛି । ଧ୍ରୁବ ଉପାଖ୍ୟାନ ତ ମାନବ ଜୀବନର ଚରମ ସତ୍ୟଟିକୁ ରୂପାନ୍ତରରେ ପ୍ରକାଶ କରିଛି । ମଣିଷ ଉତ୍ଥାନପାଦ । ସୁରୁଚିର ଅନୁବର୍ତ୍ତନରେ ସେ ଉତ୍ତମ ହୋଇ-

ପାରେ, ମାତ୍ର ଧ୍ରୁବପଦ ଲଭିପାରିବ ନାହିଁ । ସେଥିପାଇଁ ପ୍ରୟୋଜନ ସୂମାନ୍ତରେ । ଦୁଇଟି ବିଭିନ୍ନ ଚିନ୍ତା କ୍ଷେତ୍ରର ଅନ୍ତର୍ଗତ ଯେଉଁ ଦୁଇଟି ବସ୍ତୁ ହେଉ ରୂପକର ପରିଚୟ, ସେ ଦୁଇଟି ବସ୍ତୁ ମଧ୍ୟରେ ଗଭୀର ସାଦୃଶ୍ୟବୋଧ ଥାଏ, ଠିକ୍ ଯେପରି କାୟା ସହିତ ଛାୟାର । ଛାୟା ପ୍ରତି ଦୃଷ୍ଟି ପଡ଼ିଲେ କାୟା ସମ୍ପର୍କରେ ଆମର କଳ୍ପନା ଉନ୍ମୁଖ ହୋଇଉଠେ । ପରିକଳ୍ପିତ ଏକ କୃତ୍ରିମ ରୂପକ ରଚନା ଠିକ୍ ସେପରି ଅଲୌକିକ ତାତ୍ପର୍ଯ୍ୟ ବାଟରେ ମନକୁ ଆକୃଷ୍ଟ କରିନିଏ । ତାତ୍ପର୍ଯ୍ୟଟିକୁ ସ୍ପଷ୍ଟ ଓ ପ୍ରାଞ୍ଜଳ କରି ନେବାକୁ ସମାନ୍ତରାଳ ରୂପକଟିରେ ଯଥେଷ୍ଟ ସୁଯୋଗ ଓ ସାହାଯ୍ୟ ଦିଆଯାଇଥାଏ; କିନ୍ତୁ ପ୍ରତୀକ ଯେଉଁ ବ୍ୟକ୍ତ ଓ ଅବ୍ୟକ୍ତ ଜଗତର ଯୋଗସୂତ୍ର ରୂପେ ପ୍ରଯୁକ୍ତ ହୁଏ, ସେଠି କିଛି ସ୍ପଷ୍ଟ ନୁହେଁ କି ପ୍ରାଞ୍ଜଳ ନୁହେଁ । ଏକ ଚିନ୍ତାକ୍ଷେତ୍ରର ଦୁଇଟି ବସ୍ତୁ ହେଉ ପ୍ରତୀକର ବ୍ୟବସାୟ । ସାଦୃଶ୍ୟବୋଧ ନୁହେଁ । ସଂସ୍ପର୍ଶବୋଧ ହିଁ ଯଥେଷ୍ଟ । ପାଦୁକା ସିଂହାସନରେ ରାମଙ୍କର ପ୍ରତିନିଧିତ୍ୱ କରିପାରେ, ଖଣ୍ଡେ ରୁମାଲ ପ୍ରେୟସୀର ସକଳ ପ୍ରୀତି-ସୌନ୍ଦର୍ଯ୍ୟକୁ ବ୍ୟକ୍ତ କରିପାରେ । ରୂପକ ରଚନାରେ ସମଗ୍ରତା ଲକ୍ଷ୍ୟ କରିଯାଏ; କିନ୍ତୁ ପ୍ରତୀକରେ ଥାଏ ସଙ୍କୀର୍ଣ୍ଣତା, ମନୋଜଗତର କୌଣସି ତତ୍ତ୍ୱ ନୁହେଁ । ମନୋଜଗତର ଅତୀତ ଏକ ସୀମାହୀନ ଅନିର୍ବଚନୀୟ ଅଧ୍ୟାତ୍ମଲୋକକୁ କେବଳ ଆଭାସ ଓ ଇଙ୍ଗିତରେ ପ୍ରକାଶ କରିବାକୁ ପ୍ରତୀକର ଚେଷ୍ଟା । ବ୍ୟାଖ୍ୟା ନୁହେଁ, ରହସ୍ୟ ତା'ର ପ୍ରାଣଧର୍ମ । ସେଠି ଶିଳ୍ପଚେତନା ଶେଷକଥା ନୁହେଁ, ଅଧ୍ୟାତ୍ମ ସାଧନା ପ୍ରତି ବି ଗଭୀର ଅନୁରାଗ ରହିଥାଏ । ରୂପକ ରଚନା ଯେବେ ବସ୍ତୁର ପ୍ରତିବିମ୍ବ ହୁଏ, ତେବେ ପ୍ରତୀକ ବସ୍ତୁର ପ୍ରତିନିଧି । ରୂପକରେ ବସ୍ତୁ ସମ୍ପର୍କ ଆରୋପିତ; କିନ୍ତୁ ପ୍ରତୀକରେ ସମ୍ପର୍କ ସ୍ୱାଭାବିକ ।

ଆଧୁନିକ କବି ଅର୍ଜୁନ ପରି ପ୍ରତୀକ-କୃଷ୍ଣ-ମହିମା ସ୍ୱୀକାର କରିଛନ୍ତି, ତେଣୁ ବିପୁଳ ବର୍ଣ୍ଣନାର ନାରାୟଣୀ ସେନାରେ ତାଙ୍କର କୌଣସି ପ୍ରୟୋଜନ ନାହିଁ । ପ୍ରକୃତରେ ପ୍ରତୀକ କାବ୍ୟର ଚିତ୍ର ମନ୍ତ୍ର ନୁହେଁ, କାବ୍ୟର ବିଶ୍ୱରୂପ ଧ୍ୟାନ । ଶବ୍ଦର ହୁଏତ ପ୍ରତିଶବ୍ଦ ଅଛି, କିନ୍ତୁ ପ୍ରତୀକର ନାହିଁ । ତାହା ମଧ୍ୟ କୌଣସି ବିଶେଷ ଗୋଟିଏ ଅର୍ଥର ପ୍ରତିନିଧିତ୍ୱ କରେନାହିଁ, ଅନେକ ତାର ଅର୍ଥ—ସେଥିରୁ ଅଧିକାଂଶ ପୁଣି ଚିରକାଳ ଅବୋଧ ଓ ଅପ୍ରକାଶିତ ରହିଯାଏ । ପ୍ରତୀକକୁ ତେଣୁ ବ୍ୟାଖ୍ୟା କରି ବୁଝେଇ ହୁଏନାହିଁ ।

ତାହା କହିବାକୁ ଚାହେଁ, ଅଥଚ କିଛି ସ୍ପଷ୍ଟକରି କହେ ନାହିଁ । ତା'ର ବକ୍ତବ୍ୟ କେଉଁଠାରେ ପରିଷ୍କାର ନୁହେଁ, ଅଥଚ ଭାଷା ସବୁବେଳେ ଆବେଗକମ୍ପିତ ଓ ଆଗ୍ରହ ବ୍ୟାକୁଳ । ଏପରି କ୍ଷେତ୍ରରେ କବିଙ୍କର ବକ୍ତବ୍ୟ ପାଠକ ପାଖରେ ଦୁର୍ବୋଧ୍ୟ ରହିଯିବା ବିଚିତ୍ର ନୁହେଁ । କାବ୍ୟ ଯେବେ ସମ୍ବୋଧନ ହୁଏ, ଆବେଦନ ପାଠକ ନିର୍ଭର । ଏବେ ପ୍ରତୀକ ଯେତେବେଳେ ଭାଷା ଓ ଭାବର ସମତଳ ପ୍ରଦେଶରେ ପାଠକକୁ ଛାଡ଼ି ଦେବାକୁ ପ୍ରସ୍ତୁତ ନୁହେଁ, ସେତେ-ବେଳେ ଅକ୍ଷମ ପାଠକର ବ୍ୟସ୍ତବିବ୍ରତ ଭାବ ଏକାନ୍ତ ସ୍ୱାଭାବିକ କଥା । ଅର୍ଥାତ୍ କାବ୍ୟରୁ ଯେଉଁ ପାଠକ ସୁସ୍ପଷ୍ଟ କିଛି ଅର୍ଥ ଚାହାନ୍ତି, ସେମାନଙ୍କପାଇଁ ପ୍ରତୀକର କିଛି ପ୍ରୀତିକର ଉପହାର ନ ଥାଏ, କାରଣ ତାହା ନିରର୍ଥକ ଇଙ୍ଗିତମୟ ଅର୍ଥକୁ ହିଁ ସଂପ୍ରସାରିତ କରେ । ସେଠାରେ ବହୁବେଳେ ଚମତ୍କାର ଆକାଂକ୍ଷାର ଉଦ୍‌ବୋଧନ ହୁଏ ସିନା, ଶାନ୍ତି ଓ ସନ୍ତୋଷର କିଛି ନାହିଁ । ବିନ୍ଦୁରେ ସିନ୍ଧୁର ଦିଗ୍‌ଦର୍ଶନ ଯଥେଷ୍ଟ । ବ୍ୟାପ୍ତି ଓ ସୀମାର ପରିପୂର୍ଣ୍ଣତା ଖୋଜିବସିବା ଶିଳ୍ପକ୍ଷେତ୍ରରେ ନିର୍ବୋଧତା ହେବ । ଅନେକ ତ ମନେକରନ୍ତି, ପ୍ରତୀକ କାବ୍ୟର ପାରମାଣବିକ ଶକ୍ତି— ଅନନ୍ତ ଶକ୍ତି ଓ ସମ୍ଭାବନାର ପ୍ରତୀକ, ତେଣୁ କବିତାର ସବୁ ଦୈନ୍ୟ ଓ ଅସଂପୂର୍ଣ୍ଣତା ଏବେ ଧ୍ୱଂସହେବ । ଅତୀତର ପ୍ରତୀକ ଆନ୍ଦୋଳନ କବିତାର ଏହି ସୌଭାଗ୍ୟୋଦୟପ୍ରଶଂସୀ ଏକ ନୂତନ ସକାଳ ଥିଲା ।

## ପ୍ରତୀକ ଆନ୍ଦୋଳନ

କବିତା କ୍ଷେତ୍ରରେ ପ୍ରତୀକ ଆନ୍ଦୋଳନ ପ୍ରଥମେ ଦେଖାଦିଏ ଫ୍ରାନ୍‌ସରେ । ୧୮୮୦ ପରେ ଏ ଆନ୍ଦୋଳନର ସୂତ୍ରପାତ । ଏ ଆନ୍ଦୋଳନର କର୍ତ୍ତା ହେଉଛନ୍ତି Phileppe Auguste Mathias Villiers do Lisle Adam. ୧୮୩୮-୮୯ Adam (ଅଡାମ) ନାମରେ ପ୍ରସିଦ୍ଧ । ତାଙ୍କର ନାଟକ Axel ବିଶ୍ୱବିଶ୍ରୁତ । ବିଦେହ ମାନୁଷୀ ଆଦର୍ଶର ରୂପ ସେଥିରେ ଅଙ୍କିତ । ଏହି ନାଟକଟି ପ୍ରତୀକବାଦର ଯଥାର୍ଥ ଉଦାହରଣ । ବସ୍ତୁବାଦ ଓ ଯଥାର୍ଥବାଦ ବିରୁଦ୍ଧରେ ପ୍ରତୀକବାଦ ଏକ ପ୍ରତିବାଦ । ବସ୍ତୁବାଦ ବସ୍ତୁ ଜଗତର ସବୁ ଆବରଣ ଉନ୍ମୋଚନ କରିଦେଲା । ବିଜ୍ଞାନର ଆଶୀର୍ବାଦରୁ ବସ୍ତୁବାଦର ବିଜୟ ଉତ୍ସବ ମଧ୍ୟ ପାଳିତ ହେଲା । ବସ୍ତୁ ହିଁ ସେଠି ଶେଷ କଥା । ଏହି ବସ୍ତୁ ସମ୍ଭୋଗରେ ହିଁ ଇନ୍ଦ୍ରିୟର ପରମ ପରିତୃପ୍ତି; କିନ୍ତୁ ଏହି ବସ୍ତୁବାଦର (realism) ଦୃଷ୍ଟିଭଙ୍ଗୀର

ଜନ୍ମଭୂତା ବେଶି ଦିନ ସ୍ଥାୟୀ ହୋଇ ରହିଲା ନାହିଁ । ବସ୍ତୁଃସର୍ବସ୍ୱ ଦୃଷ୍ଟିର ପ୍ରଚଣ୍ଡତା ଅଚିରେ ଶିଥିଳ ହୋଇଯିବାର କଥା । ପ୍ରତୀକବାଦ ସେହି ବସ୍ତୁବାଦ ବିରୁଦ୍ଧରେ ପ୍ରତିକ୍ରିୟା ମାତ୍ର । ବସ୍ତୁପୁଞ୍ଜ ପୃଥିବୀର ଶେଷ କଥା ନୁହେଁ; ବସ୍ତୁ-ପୁଞ୍ଜର ଗଭୀର ଜ୍ଞାନ ବି ଯଥେଷ୍ଟ ନୁହେଁ । ବସ୍ତୁର ଅନ୍ତରାଳରେ ଯେଉଁ ଅମୂର୍ତ୍ତ ଜଗତ ବିସ୍ତୃତ ରହିଛି, ତାକୁ ଜାଣି ଜଣାଇବାକୁ ପଡ଼ିବ । ଇନ୍ଦ୍ରିୟ ସେପରି ସୂକ୍ଷ୍ମ ଗୂଢ଼ ଭାବଲୋକକୁ ଉପଲବ୍‌ଧି କରିପାରେ ନାହିଁ । ସେଠି କିନ୍ତୁ ଅତୀନ୍ଦ୍ରିୟ ସାଧନାର ପ୍ରୟୋଜନ । ବସ୍ତୁବାଦର ସୁସ୍ପଷ୍ଟତା ବିରୁଦ୍ଧରେ ପ୍ରତୀକବାଦର ପ୍ରବଳ ବିଦ୍ରୋହ । ବସ୍ତୁଜଗତର ଅବିକଳ ରୂପାଙ୍କନ, ଭାବୋଚ୍ଛ୍ୱାସ ଓ କଳ୍ପନା-ବିଳାସର ଉତ୍ପାତରୁ କବିତାକୁ ରକ୍ଷା କରିବାକୁ ହେବ । ମନର ଅନୁଭୂତି ଓ ପ୍ରେରଣାକୁ ଯେଉଁଠି ପ୍ରକାଶ କରିବାକୁ ପଡ଼ିବ, ସେଠି ପ୍ରତୀକହିଁ ଏକମାତ୍ର ଉପାୟ । ସେଠି ପୁଣି ନୂତନ ପ୍ରତୀକର ପ୍ରୟୋଜନ । ତେଣୁ ବିଶିଷ୍ଟ ଅର୍ଥରେ ବିଶେଷ ବସ୍ତୁ, ଶବ୍ଦ ଓ ଧ୍ୱନି ପ୍ରୟୋଗର ଆରମ୍ଭ ହୋଇଗଲା—ଘଟଣା ସ୍ଥଳରେ ଦେଖାଦେଲା ରହସ୍ୟ ଓ ବର୍ଣ୍ଣନା ସ୍ଥଳରେ ଦେଖାଦେଲା ବ୍ୟଞ୍ଜନା । ସେଠି କବିତା ସଦ୍ୟମୁକ୍ତିର ଆନନ୍ଦରେ ବିହ୍ୱଳ । ବସ୍ତୁ ଭାବର ପ୍ରତୀକ ମାତ୍ର । ଅଳଙ୍କାରର କୃତ୍ରିମତା ସର୍ବପ୍ରକାରେ ପରିତ୍ୟଜ୍ୟ । ତେଣୁ ପ୍ରାଚୀନ ବ୍ୟବହାରର ଶବ୍ଦ ଓ ଭାଷା ଠାରୁ ଆରମ୍ଭ କରି ପ୍ରାଚୀନ ପ୍ରତୀକ, ପ୍ରାଚୀନ ସଂସ୍କାର ଓ ବିଶ୍ୱାସ ପର୍ଯ୍ୟନ୍ତ ସବୁ କିଛି ପରିହାର କରି ସାହିତ୍ୟକୁ ଗୀତି କବିତାର ମାଧ୍ୟମରେ ଅମୂର୍ତ୍ତ ଅଧ୍ୟାତ୍ମ ଜଗତକୁ ଉତ୍ତୀର୍ଣ୍ଣ କରି ନିଆଗଲା । ସିମନ୍‌ସ କହିଛନ୍ତି, It is an attempt to spiritualise literature to evade the old bondage of Rhetoric, the old bondage of extriority । ଏହି ପ୍ରତୀକବାଦୀଙ୍କ ମତରେ କବିତା ସୌନ୍ଦର୍ଯ୍ୟର ବର୍ଣ୍ଣନା ନୁହେଁ, ରହସ୍ୟ ଓ ବିସ୍ମୟର ବାହନ ମାତ୍ର । ତାଙ୍କର ଜଗତ ଏହି ବସ୍ତୁ ବିଶ୍ୱ ନୁହେଁ । ତାଙ୍କର ଜଗତ ବସ୍ତୁର ଅତୀତ ଏକ ପରିସୂକ୍ଷ୍ମ ଭାବ ରହସ୍ୟର ବିଶ୍ୱ । ସେହି ବିଶ୍ୱର ସୌନ୍ଦର୍ଯ୍ୟ ଚିରକାଳର ସୌନ୍ଦର୍ଯ୍ୟ । ସେଠି ମାନବ ମନର ଗଭୀର ଉପଚେତନାକୁ ଆଭାସ ଓ ଇଙ୍ଗିତରେ କିଞ୍ଚିତ୍ ପ୍ରକାଶ କରିପାରିଲେ ଯଥେଷ୍ଟ । ସାଧାରଣ ଭାଷା ଯେଉଁ ରହସ୍ୟ ଲୋକର ଦ୍ୱାରରୁ ଲଜ୍ଜିତ ହୋଇ ଫେରିଆସେ, ସେଠି ପ୍ରତୀକ ଭାବର ଉଦ୍‌ବୋଧନ କରିପାରେ । ବାକ୍ୟର ଅତୀତ ମୌନ ନୀରବତାକୁ ପ୍ରତୀକ ସବାକ୍ କରିଦିଏ । ଏହି ଆନ୍ଦୋଳନର

ଆଗୁର୍ଯ୍ୟଗଣ ସମଗ୍ର ପୃଥିବୀକୁ ସେହି ରହସ୍ୟ-ଲୋକର ବାର୍ତ୍ତା ଶୁଣାଇଛନ୍ତି । ସେମାନଙ୍କ ଶୁଭେଚ୍ଛା ଓ ଆଶୀର୍ବାଦ ଲଭି ଆଧୁନିକ କବିତାର ଜନ୍ମ ଓ ବିକାଶ ସମ୍ଭବ ହୋଇଛି ।

ଅନେକ ମନେକରନ୍ତି, ପ୍ରତୀକ-ପ୍ରୟୋଗ ସେପରି କିଛି ବିଚକ୍ଷଣତାର ଅପେକ୍ଷା ରଖେ ନାହିଁ । Plato ପ୍ରତୀକ ପ୍ରୟୋଗ କଲାବେଳେ କହୁଥିଲେ, "...it is easier to say what a thing is like than what it is." ବୁଦ୍ଧିର ବିଶ୍ଳେଷଣୀ କ୍ଷମତାର ଅଭିବୃଦ୍ଧି ସଙ୍ଗେ ତେଣୁ ପ୍ରତୀକର ପ୍ରୟୋଗ ଓ ପ୍ରଭାବ କମିଆସେ । ବୁଦ୍ଧିଜୀବୀ ଅପ୍ରତ୍ୟକ୍ଷତାକୁ ପ୍ରତୀକ ମାଧ୍ୟମରେ ବୁଝିବାକୁ ଚାହେଁ ନାହିଁ ; ବରଂ ସେହି ଅପ୍ରତ୍ୟକ୍ଷ ସତ୍ତ୍ୱରେ ବୁଦ୍ଧିଗ୍ରାହ୍ୟ ବିଶ୍ଳେଷଣ ଲୋଡ଼େ । ଦର୍ଶନ ଓ ବିଜ୍ଞାନରେ ତେଣୁ ପ୍ରତୀକ ଅଚଳ । ସେ ଯାହାହେଉ ପ୍ରତୀକ ଆନ୍ଦୋଳନର ପ୍ରଥମ ପର୍ବଟି ଉଚ୍ଚକୋଟୀର ସାହିତ୍ୟାଦର୍ଶ ଦୃଷ୍ଟିରୁ ଗୌରବୋଜ୍ଜ୍ୱଳ ନୁହେଁ । ଦୁର୍ବଳ ଶିଳ୍ପୀ ପ୍ରତୀକ ସାହିତ୍ୟକୁ ବି ଦୁର୍ବଳ କରେ । ବସ୍ତୁ ସେଠି ଭାବର ପ୍ରତୀକ ରୂପେ ବ୍ୟବହୃତ । ଆଙ୍ଗିକ ଓ ପ୍ରକାଶ-ଭଙ୍ଗୀ ପ୍ରତି ଅହେତୁକ ଗୁରୁତ୍ୱ ଆରୋପ ଫଳରୁ କବିତାର ଆତ୍ମା ଯଥେଷ୍ଟ ଦୁର୍ବଳ ହୋଇପଡ଼ିଛି । ପ୍ରତୀକବାଦୀମାନଙ୍କର କାହାଣୀ ଯେପରି ଅସ୍ୱାଭାବିକ ଭାବରେ ଜୁଗୁପ୍ସା ଉପୁଜାଏ, ଚରିତ୍ର ଗୁଡ଼ିକ ସେପରି ଅଶାଳୀନ । (୩) କବିର ପ୍ରଜ୍ଞା ଓ ବିଚକ୍ଷଣତା ସେପରି କୌଣସି ଗୌରବ ଦାବୀ କରିପାରେ ନାହିଁ । ସେଠି ମଣିଷ ପ୍ରତୀକର ଦୁର୍ଗମ ବନପଥରେ ଘୁରି ବୁଲେ, ବସ୍ତୁ-ଜଗତ ସମ୍ପୂର୍ଣ୍ଣ ରୂପେ ବିଚଳିତ ହୋଇ ଅଶରୀରୀ ଅଧ୍ୟାତ୍ମ-ଲୋକରେ ହଜିଯାଏ । ଅପରିଜ୍ଞାତ ସେହି ଅମୂର୍ତ୍ତ ଭାବ-ଜଗତର ରହସ୍ୟ ଉନ୍ମୋଚନ ସେହି ସାହିତ୍ୟର ମର୍ମକଥା । ବଦଲେୟାରଙ୍କର ଶିଷ୍ୟ ପ୍ରଶିଷ୍ୟ ଏହି ଯୁଗର କାବ୍ୟକର୍ତ୍ତା । ପରେ ବଳିଷ୍ଠ ପ୍ରତିଭାବାନ୍ ଶିଳ୍ପୀ ଏ କ୍ଷେତ୍ରକୁ ଅବତରଣ କରିଛନ୍ତି । ମାଲର୍ମେ, ର‌ମ୍ବୋ, ଲାଫର୍ଗ, ଭର୍ଲେନ ଓ ପଲ୍ ଭେଲେରି ଏହି ଆନ୍ଦୋଳନର ପ୍ରତିଷ୍ଠିତ ଶିଳ୍ପୀ । ଧୀରେ ଧୀରେ ଏହି ଆନ୍ଦୋଳନର ପ୍ରଭାବ ସମଗ୍ର ପୃଥିବୀରେ ବିସ୍ତାରିତ ହୋଇଛି ଓ ସାହିତ୍ୟର ସକଳ ବିଭାଗରେ ଅନୁପ୍ରବେଶ କରିଛି । କବିତା କ୍ଷେତ୍ରରେ T.E. Hulme, W.B. Yeats, Ezra Pound ଓ T. S. Eliot ଏହି ଫରାସୀ ଆଚାର୍ଯ୍ୟମାନଙ୍କ ନିକଟରୁ ଉତ୍ସାହ ଓ ପ୍ରେରଣା ସଂଗ୍ରହ କରିଛନ୍ତି । ନାଟକ କ୍ଷେତ୍ରରେ ଚେକଭ୍, ମାଟରଲିଙ୍କ୍, ଓ' ନିଲ୍ ଓ ଇବ୍‌ସେନ ତଥା ଉପନ୍ୟାସ କ୍ଷେତ୍ରରେ ଜଏସ୍,

ରବର୍ଟ ବେରଫମାନ୍ ପ୍ରଭୃତି ପୃଥିବୀପ୍ରସିଦ୍ଧ ବହୁ ସାହିତ୍ୟିକ ସେମାନଙ୍କ ନିକଟରେ ଋଣ ସ୍ୱୀକାର କରିଛନ୍ତି । ପ୍ରତୀକ ଆନ୍ଦୋଳନର କେତେକ ବିଶିଷ୍ଟ ଆଚାର୍ଯ୍ୟଙ୍କ ଭାବଚେତନାର ପରିଚୟ ଏଠି ପ୍ରସଙ୍ଗକ୍ରମେ ବିଚାର କରା ନ ଗଲେ ଆନ୍ଦୋଳନର ମର୍ମ ଉପଲବ୍ଧି କରିହେବ ନାହିଁ ।

## ବଦଲେୟାର

( Pierre Charles Baudelaire—1821-67 )

ପ୍ରତୀକ ଆନ୍ଦୋଳନର କବିଗଣ ପ୍ରାୟ ପୂର୍ବବର୍ତ୍ତୀ ବଦଲେୟାରଙ୍କ ଶିଷ୍ୟ ପ୍ରଶିଷ୍ୟ । ତାଙ୍କର correspondences କବିତାଟିରେ ପ୍ରତୀକବାଦୀ କବିଗଣଙ୍କର କାବ୍ୟାଦର୍ଶ ଲିପିବଦ୍ଧ ରହିଛି । ସେ କବିତାଟିର ବଙ୍ଗଭାଷାର ଅନୁବାଦ ଏଠି ଉଦ୍ଧାର କରାଯାଉଛି । ସେ କବିତାଟିକୁ ନ ବୁଝିଲେ ପ୍ରତୀକ ଆନ୍ଦୋଳନକୁ ବୁଝିହେବ ନାହିଁ ।

ପ୍ରକୃତି, ମନ୍ଦିର ଏକ, ସ୍ତମ୍ଭରାଜି ପ୍ରାଣେର କଂପନେ
ମାଝେ ମାଝେ ଅସ୍ପଷ୍ଟ ପ୍ରଳାପେ ଦେୟ ସଙ୍କେତ ଗୁଞ୍ଜନେ
ସେଖାନେ ମାନୁଷ ଆସେ ପ୍ରତୀକେର ଅରଣ୍ୟ ପେରିୟେ
ଯେ ଅରଣ୍ୟ ଦ୍ୟାଖେ ତାରେ ଅନୁକ୍ଷଣ ଅଭ୍ୟସ୍ତ ନୟନେ
ବହୁ ଭିନ୍ନ ପ୍ରତିଧ୍ୱନି—ଦୂରାଗତ, ଗଭୀର, ଅଚିର
ଅବଶେଷେ ଗୁଂଜେଯାୟ ଅନ୍ଧକାର, ଗାଢ଼ ସମତାନ
ନିଶୀଥେର ମତୋ ବ୍ୟାପ୍ତ ସ୍ୱଚ୍ଛତାର ମତୋ ମହୀୟାନ
ସେଇ ମତୋ ବର୍ଣ୍ଣ, ଗନ୍ଧ ପରସ୍ପର ଜାନାୟ ଉତ୍ତର । (୪)
(ଅନୁବାଦକ : କବି ବୁଦ୍ଧଦେବ ବସୁ)

ଏ କବିତାର ବ୍ୟାଖ୍ୟା କରିଛନ୍ତି Cleanth Brooks ତାଙ୍କ Literary Criticism—A Short History ଗ୍ରନ୍ଥରେ—

....All nature is viewed as temple, a natural temple whose living pillars are the trees. As the wind blows through these forests of symbols confused words are now and then breathed forth. The poet, because of

his special endowment is able to apprehend these words, for in all things there is a symbolic sense and every object in nature has its special connection with a spiritual reality.

ସମଗ୍ର ପ୍ରକୃତି ଏକ ମନ୍ଦିର, ବୃକ୍ଷରାଜି ତା'ର ଜୀବନ୍ତ ସ୍ତମ୍ଭ । ପ୍ରତୀକର ଅରଣ୍ୟରେ ବାୟୁପ୍ରବାହ ଯେଉଁ ଶିଙ୍ଗାର ତୋଳେ ସେଥିରେ ଅସ୍ପଷ୍ଟ ପ୍ରକାରର ବହୁ ବିଚିତ୍ର ସଙ୍କେତ ଫୁଟିଉଠେ । ସାଧାରଣ ମଣିଷ ଅଭ୍ୟସ୍ତ ନୟନରେ ଅବଶ୍ୟ କିଛି ଦେଖିପାରେ ନାହିଁ । ମାତ୍ର କବି ସେ ବିଚିତ୍ର ଧ୍ୱନି-ସମ୍ପଦର ଉପଲବ୍‌ଧି କରେ । ପ୍ରାକୃତିକର ସବୁକିଛି ପ୍ରତୀକାତ୍ମକ । ଏହି ପ୍ରତ୍ୟକ୍ଷ ବସ୍ତୁ ବିଶ୍ୱର ଇନ୍ଦ୍ରିୟାତୀତ ଅମର୍ତ୍ତ୍ୟ ଅଧ୍ୟାତ୍ମ-ଲୋକ ସହିତ ଗଭୀର ସମ୍ପର୍କ ରହିଛି । କବି ସେହି ସମ୍ପର୍କର ସୂତ୍ରଟିକୁ ଖୋଜିପା'ଏ । ସେଠି ବର୍ଣ୍ଣ, ଗନ୍ଧ ଓ ଧ୍ୱନି ମଧ୍ୟରେ ଗଭୀର ସାମଞ୍ଜସ୍ୟ ରହିଛି । ପ୍ରତୀକ ଏଠି ଯୋଗସୂତ୍ର ସ୍ଥାପନ କରେ । ବଦଲେୟାରଙ୍କ ମତରେ ମାନବ-ସତ୍ତାର ଦୁଇଟି ପ୍ରକାଶ ରହିଛି, ବାସ୍ତବତା ଓ ଆଧ୍ୟାତ୍ମିକତା । ପ୍ରତୀକ ସେହି ଦୁଇ ସତ୍ତା ମଧ୍ୟରେ ସ୍ୱର୍ଣ୍ଣସେତୁ ।

ଏଠି Edgar Allen Poeଙ୍କୁ ସ୍ମରଣ କରିବାକୁ ହୁଏ । ବଦଲେୟାର ପୋଙ୍କ ପାଖରେ ନିଶ୍ଚିତ ରୂପେ ଋଣୀ । ପୋ ତାଙ୍କର The Poetic Principle ପ୍ରବନ୍ଧରେ କବିତା ସମ୍ପର୍କରେ ଆଲୋଚନା କରିଛନ୍ତି । କବିତାର ସତ୍ୟ ଓ ଶିବ ସହିତ ଯାହା ସମ୍ପର୍କ ଥାଉନା କାହିଁକି, ତାହା ନିଶ୍ଚିତଭାବରେ ସୁନ୍ଦର ହୋଇଥିବା ଉଚିତ । ତାହା ପୁଣି ଦୀର୍ଘ ହୋଇ ନ ପାରେ । କାବ୍ୟକ ଉତ୍ସାହ ଉତ୍ତେଜନାର ମାତ୍ର ଦୀର୍ଘ କବିତାଟିକୁ ଆଚ୍ଛନ୍ନ କରିପାରେ ନାହିଁ । ସ୍ୱପ୍ନ ଓ ସଙ୍ଗୀତ କବିତାର ଏକମାତ୍ର ଆଦର୍ଶ । କବିକୁ ଏହି ସକଳ-ବସ୍ତୁ-ଜଗତର ଊର୍ଦ୍ଧ୍ୱରେ ଥିବା ସୌନ୍ଦର୍ଯ୍ୟ ଲୋକରେ ପହଞ୍ଚିବାକୁ ହେବ । ବସ୍ତୁ-ଜଗତ ସେହି ଅତୀନ୍ଦ୍ରିୟ ସୌନ୍ଦର୍ଯ୍ୟ-ଜଗତର ପ୍ରତିବିମ୍ବ ମାତ୍ର । ତେଣୁ କବିତାରେ ଏହି ମର୍ତ୍ତ୍ୟ ସୌନ୍ଦର୍ଯ୍ୟର ବର୍ଣ୍ଣନା ଯଥେଷ୍ଟ ନୁହେଁ, ବରଂ କବିତା ଊର୍ଦ୍ଧ୍ୱ-ଲୋକର ସୌନ୍ଦର୍ଯ୍ୟ-ଅବବୋଧର ସାଧନ ହେବ । ସେ କହି ରଖିଛନ୍ତି— " It is desire of the moth for the star. It is no mere appreciation of the beauty before us—but a wild effort

to reach the beauty above. " କବିତା ସମ୍ପର୍କରେ Poeଙ୍କ ଅଭିମତଟିକୁ W.B.Yeats ଚମତ୍କାର କାବ୍ୟ ରୂପ ଦେଇଛନ୍ତି ପ୍ରାୟ ଗୋଟିଏ ଶତାବ୍ଦୀ ପରେ ।

Forms that are or seem
When sleepers wake and yet still dream
And when it's vanished still declare
With only bed and bedstead there
The heavens had opened. (*)

ଏହି Waking Dream ହିଁ କବିତାର ଆଦର୍ଶ ରୂପ । ଏହି ପରିଦୃଶ୍ୟମାନ ଜଗତ ଊର୍ଦ୍ଧ୍ୱସ୍ଥିତ ଏକ ଅତୀନ୍ଦ୍ରିୟ ଜଗତର ପ୍ରତିବିମ୍ବ । ତେଣୁ ଏହି ପ୍ରତିବିମ୍ବକୁ ଦେଖି ଊର୍ଦ୍ଧ୍ୱ ଲୋକର ସେହି ମୌନ ମହିମାକୁ ଉପଲବ୍ଧି କରିଯାଇ ପାରେ । ବସ୍ତୁ ଓ ଚିନ୍ତା ତେଣୁ ସେଠି ଅଭିନ୍ନ । ଦୁହିଁଙ୍କୁ ଅଲଗା କରି ଦେଖି ହେବନାହିଁ । ବଦଲେୟାର ଏହି କଥା କହିବାକୁ ଚାହିଁଛନ୍ତି । ତାଙ୍କର କବିତା ଆଲୋଚନା କରିବାକୁ ଯାଇ Marcel Raymond କହିଛନ୍ତି—

"From the world of the senses the poet takes the material in which to forge a symbolic vision of himself or of his dream; what he asks of the world of the senses is that it gives him the means of expressing his soul."

ବଦଲେୟାର ଦିବ୍ୟ ସମ୍ପଦ ଲୋଭରେ ଅସ୍ଥିର । ସେ ମାତ୍ରବାଦୀ ନୁହନ୍ତି, ଅଥଚ କଳା ପାଇଁ କଳାର ସୃଷ୍ଟିକୁ ଅଭିନନ୍ଦନ ଜଣାଇ ପାରନ୍ତି ନାହିଁ । ସେ ନୂଆ କଥା କହିଛନ୍ତି ବୋଲି ବିଶ୍ୱାସ କରନ୍ତି ନାହିଁ । ସେ କେବଳ ଦିବ୍ୟ ମିଷ୍ଟିକ୍ ଭାଷାରେ mystic ପାଠୋଦ୍ଧାର କରିଛନ୍ତି । ବାସ୍ତବ ଜଗତ ଅତୀନ୍ଦ୍ରିୟ ଦିବ୍ୟ ସୌନ୍ଦର୍ଯ୍ୟର ଅବବୋଧ କ୍ଷେତ୍ରରେ ସାହାଯ୍ୟ କରେ ବୋଲି ରହିଛି, ନଚେତ ତା'ର ବର୍ଣ୍ଣନା କାବ୍ୟରେ ପ୍ରୟୋଜନ ନୁହେଁ । ସମୁଦ୍ର, ଜାହାଜ, ଶବ, କଫିନ ଓ କବର ପ୍ରଭୃତି ତାଙ୍କର ଏକାନ୍ତ ପ୍ରିୟ ପ୍ରତୀକ ।

## ମାଲର୍ମେ

(Stephane Mallarme—1842-98 )

ଏ କ୍ଷେତ୍ରରେ ଷ୍ଟିଫେନ୍ ମାଲ୍ଲର୍ମେ ହେଉଛନ୍ତି ଯଶସ୍ୱୀ ଶିଳ୍ପୀ । କିନ୍ତୁ ସେ ଲୋକପ୍ରିୟ କବି ନ ଥିଲେ । ତାଙ୍କର ସିଦ୍ଧି ବି ସ୍ୱଳ୍ପ ଓ ସାଧନା ମନ୍ଥର । କିନ୍ତୁ ସେ ଫ୍ରାନସର ମଙ୍ଗଳବାରଆ ସାହିତ୍ୟ-ସଂସଦର ପ୍ରବକ୍ତା ଭାବରେ ବିଶ୍ୱବିଶ୍ରୁତ । ସେ ସାହିତ୍ୟ ସଂସଦକୁ ଆସିଛନ୍ତି ଅସ୍କାର ଓ୍ୱାଇଲଡ, ଆର୍ଥର ସିମନସ୍, ଜର୍ଜ ମୁର, ଆସିଛନ୍ତି ବି ସ୍ପିଣ୍ଟସ । ତାଙ୍କ ମତରେ କବିତା କେବଳ କାବ୍ୟ ପ୍ରେରଣାର ଆକସ୍ମିକ ଝଲକ ନୁହେଁ କି ବୀଣାପାଣୀଙ୍କର ଆଶୀର୍ବାଦ ନୁହେଁ । କବିତା ସ୍ୱତନ୍ତ୍ର ଏକ ଅଧ୍ୟବସାୟ, ମନ ବୁଦ୍ଧିର ସକଳ ଶକ୍ତି ପ୍ରଦର୍ଶନର ଏକମାତ୍ର କ୍ଷେତ୍ର । ଶିଳ୍ପଚାତୁର୍ଯ୍ୟ ପ୍ରକଟନ ବଡ଼ କଥା । ତେଣୁ ଠିକ୍ ସ୍ୱତଃସ୍ଫୂର୍ତ୍ତତା ନୁହେଁ, ବୈଦଗ୍ଧ୍ୟ ହିଁ କବିତାର ଲକ୍ଷ୍ୟ । "ତାହା ସ୍ୱୟଂପ୍ରକାଶ ତଥାପି ପ୍ରକାଶର ଅପେକ୍ଷା ରଖେ ।" ପୁନଶ୍ଚ କବିତା ବସ୍ତୁ ଓ ବିଷୟର ବର୍ଣ୍ଣନା ମାତ୍ର ହୋଇ ନ ପାରେ । ଏହି ଜୀବନର ପରିଦୃଶ୍ୟମାନ ସ୍ତରରେ ଯେଉଁ ସ୍ୱଚ୍ଛ ଓ ପ୍ରାଞ୍ଜଳ ଅର୍ଥ ରହିଛି, ତାର ଅନ୍ତରାଳରେ ବ୍ୟଞ୍ଜନାର ଅନ୍ତଃଶୀଳା ସ୍ରୋତ ଚିର ପ୍ରବହମାନ । ମାଲ୍ଲର୍ମେ ତାକୁ ସଙ୍ଗୀତ ଆଙ୍ଗିକରେ ଫୁଟାଇବାକୁ ଚାହିଁଛନ୍ତି, ତନ୍ନିମନ୍ତେ ପରେ ଶବ୍ଦ ଖୋଜି ବୁଲିଛନ୍ତି । ତାଙ୍କ ମତରେ—"Poetry is the expression by means of human language restored to its essential rhythm of the mysterious sense of the aspects of the existence. It endows our sojourn with authenticity and constitutes the soul spiritual task." କବିତା ସେହି ବ୍ୟଞ୍ଜନାର ସନ୍ଧାନ ରଖେ, ଭଙ୍ଗୁର ଜୀବନକୁ ଅର୍ଥପୂର୍ଣ୍ଣ କରେ ଓ ଅଧ୍ୟାତ୍ମଲୋକର ଦିବ୍ୟ ସୌନ୍ଦର୍ଯ୍ୟର ବାର୍ତ୍ତା ବହିଆଣେ । ତାଙ୍କର କବିତା ପ୍ରାୟ ଅଧିକାଂଶ ଲୋକଙ୍କ ପକ୍ଷରେ ଦୁର୍ବୋଧ୍ୟ । କାରଣ ସାଧାରଣ ମଣିଷର ଅଭିଜ୍ଞତା ବାହାରୁ କବିତାର ବିଷୟବସ୍ତୁ ସେ ସଂଗ୍ରହ କରିଛନ୍ତି । ଅନେକଙ୍କ ମତରେ ସେ କବିତାକୁ ରକ୍ଷା କରିଛନ୍ତି । ଭାଷାର ଅତି ବ୍ୟବହାର ଫଳରୁ ଗଦ୍ୟ ଓ ପଦ୍ୟର ଯେଉଁ ପ୍ରଭେଦ ଦୂର ହେବାକୁ ବସିଥିଲା, ସେଥିରୁ କବିତାକୁ ସେ ରକ୍ଷା କରିଛନ୍ତି । କବିତାର ଆଙ୍ଗିକ ଓ ପ୍ରାଣଧର୍ମକୁ ଅଚ୍ଛେଦ୍ୟ ବନ୍ଧନରେ ଧରି ରଖିବାକୁ ବି ଚାହିଁଛନ୍ତି ସେ ।

ପ୍ରତୀକ ସମ୍ପର୍କରେ ତାଙ୍କର ଅଭିମତଟିକୁ ଉଦ୍ଧାର ନ କଲେ ଏଠି ଚଳିବ ନାହିଁ । ଦୀର୍ଘ ଉଦ୍ଧୃତି ବିରକ୍ତିକର ହୋଇପାରେ, ମାତ୍ର ଅପରିତ୍ୟଜ୍ୟ । Parnassianism ବିରୁଦ୍ଧରେ ତାଙ୍କର ପ୍ରବଳ ବିଦ୍ରୋହ । ତାଙ୍କ ପୂର୍ବରୁ ଦଳେ କବି ବର୍ଣ୍ଣନାତ୍ମକ କାବ୍ୟ ରଚନା କରିଛନ୍ତି । ତାଙ୍କର କାବ୍ୟ ସଂକଳନଟି ହେଉଛି Le Parnase Contemporian. ସେମାନଙ୍କ ବିରୁଦ୍ଧରେ କବିଙ୍କର ପ୍ରବଳ ବିଦ୍ରୋହ ରହିଛି । ବସ୍ତୁକୁ ସେମାନେ ଅବିକଳ ଉପସ୍ଥାପିତ କରନ୍ତି । ସେଠି ବିସ୍ମୟ ନାହିଁ କି ରହସ୍ୟ ନାହିଁ । ତେଣୁ ମଣିଷର ମନକୁ ସେମାନେ ସଦ୍ୟ ବିସ୍ମୟର ସୌରଭରୁ ବଞ୍ଚିତ କରନ୍ତି । ପ୍ରତୀକ ଏହି ଆନନ୍ଦାବହ ବିସ୍ମୟର ଉତ୍ସ । ତେଣୁ ପ୍ରତୀକର ଗୌରବ ସମ୍ପର୍କିତ ନିର୍ଦ୍ଦେଶ କରିବାକୁ ସେ କହନ୍ତି, To name an object is to do away with three quarters of the enjoyment of the poem which is derived from the satisfaction of guessing little by little to suggest it. That is the illusion. It is the perfect handling of the mystery that constitutes the symbol. To evoke an object little by little in order to show a state of mind or universly to choose an object and to disengage from it a state of mind, by a series of uniddlings." ଯାହା ନାମହୀନ ତାକୁ ନାମଧାମରେ ସ୍ପଷ୍ଟ କରିଦେଲେ କାବ୍ୟ ରହସ୍ୟର ସରସତା ବହୁ ପରିମାଣରେ ବିନଷ୍ଟ ହୋଇଯାଏ । ପ୍ରତୀକ-ମାୟା କୋଳରେ ବରଂ କବିତା ସତେଜ ରହେ । ମାନସିକ ଏକ ଅବସ୍ଥାର ପ୍ରକଟନ ଲାଗି ବସ୍ତୁ ବା ଘଟଣାର ଉଦ୍‌ବୋଧନରେ କିମ୍ବା ବସ୍ତୁ ବା ଘଟଣାର ନିର୍ବାଚନ ପରେ ତା'ଠାରୁ କ୍ରମାଗତ ବିସ୍ମୟ ମୋଚନ ଫଳରେ ମାନସିକ ଅବସ୍ଥାର ସମ୍ପର୍କ ତ୍ୟାଗରେ ସାର୍ଥକ ପ୍ରତୀକ ସୃଷ୍ଟି ହୋଇପାରେ । କବିତା ତାଙ୍କର ରହସ୍ୟମୟ ଊର୍ଦ୍ଧ୍ୱଲୋକର ପ୍ରତିଚ୍ଛବି—ତା'ର ଅବବୋଧ ଅବଶ୍ୟ ସେ ଅତୀନ୍ଦ୍ରିୟ ରହସ୍ୟାଳୟର ଉପଲବ୍ଧି ଅପେକ୍ଷା ସହଜତର ବ୍ୟାପାର । ତଥାପି ସ୍ପଷ୍ଟ ବୋଧଗମ୍ୟତା ଦର୍ଶନ ଓ ବିଜ୍ଞାନର ଧର୍ମ ହୋଇ-ପାରେ, ମାତ୍ର କବିତାର ନୁହେଁ । ଶବ୍ଦ ତାଙ୍କର ସୁନିର୍ବାଚିତ, ଅର୍ଥପୂର୍ଣ୍ଣ ଓ ବ୍ୟଞ୍ଜନାମୟ । ତା'ର ଓଜନ ଓ ଘନତ୍ୱ ବି ସ୍ୱୀକୃତ । ତାହା କଷ୍ଟିଟା ବି ଦୁର୍ବୋଧ୍ୟ । ସେଠୁ ଭାବ ଅଜସ୍ରଧାରରେ ବିଚ୍ଛୁରିତ ହୁଏ । ତେଣୁ ତାଙ୍କର କବିତା ଯେପରି ଏକ କ୍ଷୁଦ୍ର ରହସ୍ୟାଳୟ ।

## ର଼େମ୍ବା (Jean Arthur Rimband 1854-91)

ର଼୍ୟାଁବୋ କହନ୍ତି, କବି ନିଶ୍ଚିତ ରୂପେ ହେବ Voyant. ଏ ଶବ୍ଦଟିର ପ୍ରତିଶବ୍ଦ ମିଳିବା ଦୁଷ୍କର । ଇଂରାଜୀ 'Visionary' କିମ୍ବା ଓଡ଼ିଆ 'ଭବିଷ୍ୟଦ୍ରଷ୍ଟା' ତା'ର ନିକଟବର୍ତ୍ତୀ ହୋଇପାରନ୍ତି ।

ଭବିଷ୍ୟଦ୍ରଷ୍ଟା ହେବାକୁ କବିର ସ୍ୱକୀୟ ଚେଷ୍ଟାର ପ୍ରୟୋଜନ ରହିଛି । ତାଙ୍କ ଦୃଷ୍ଟିରେ ସମଗ୍ର କବି-ଜଗତରେ ବଦଲେୟାର ହିଁ Voyant—କବିସମ୍ରାଟ । ଏହି Voyant ଜଗତରେ ଉପନୀତ ନ ହେଲେ କବିତା ରଚନା ଏକ ପ୍ରକାର ଅସମ୍ଭବ । ପ୍ରାଚୀନ ରୀତିନୀତି, ଚିନ୍ତା, ବିଶ୍ୱାସ ଓ ରୁଚି, ଅଭ୍ୟାସ ବିସର୍ଜନ ଦେବାକୁ ହେବ । ଏପାଇଁ ଯେକୌଣସି ଉପାୟ ଅବଲମ୍ବନ କରିଯାଇପାରେ । ବିବେକ-ବୁଦ୍ଧିର ସକଳ ଶୃଙ୍ଖଳ ଛିନ୍ନ କରିବାକୁ ହେବ—ନଚେତ୍ Voyant ହେବାର ସମ୍ଭାବନା ନାହିଁ । କବିର ପ୍ରଚେଷ୍ଟା ସମ୍ପର୍କରେ ର଼୍ୟାଁବୋ ପ୍ରଥମରୁ ନିର୍ଦ୍ଦେଶ ଦେଇଛନ୍ତି, "The poet makes himself Voyant by a long vast reasoned derangement of all the senses" (Letters do Voyant 1871) ତାଙ୍କର କବିତା ପ୍ରାୟ ଦୁର୍ବୋଧ । ତାଙ୍କର ଯେଉଁ ତରଣୀଟି ପ୍ରମତ୍ତ ଲୀଳାରେ ଦିଗ୍‌ବିଦିଗ୍ ଶୂନ୍ୟ ହୋଇ ଭାସି ଚାଲିଛି, ତା'ର କୂଳରେ ପହଞ୍ଚିବାର କୌଣସି ସମ୍ଭାବନା ନାହିଁ—ତଥାପି ତାଙ୍କର ଶୋଚନା ନଥିଲା —ତଦ୍ଦ୍ୱାରା ଯଦି ପରବର୍ତ୍ତୀ କବିମାନଙ୍କ ପାଇଁ ସେ କିଛି ନୂତନ ଦିଗନ୍ତର ରେଖା ନିର୍ଦ୍ଦେଶ କରିପାରନ୍ତି, ତାହା ଯଥେଷ୍ଟ । ବଦଲେୟାର ଯେଉଁ ଅଜ୍ଞାତ ରହସ୍ୟଲୋକକୁ ଶବ୍ଦ ସାହାଯ୍ୟରେ ଆଙ୍କିବାକୁ ଚାହିଁଥିଲେ, ସେଠି ର଼୍ୟାଁବୋ କହନ୍ତି—କେବଳ ଶବ୍ଦ ନୁହେଁ, କବି ତନୁ ମନ ପ୍ରାଣ ଦେଇ ସେ ରହସ୍ୟାଲୋକର ସନ୍ଧାନ ନେବ । ସେ ତେଣୁ ବସ୍ତୁ-ଜଗତରୁ ପ୍ରତୀକ ସଂଗ୍ରହ କରି ସନ୍ତୁଷ୍ଟ ନୁହଁନ୍ତି, ବରଂ ମନ୍ମୟ ପ୍ରତୀକର ସନ୍ଧାନ ନେଇଛନ୍ତି । ତାଙ୍କ ପ୍ରତୀକଗୁଡ଼ିକ ପ୍ରାୟ ମନ୍ମୟ ।

## ଲଫର୍ଗ (Jules Laforgue 1850-87)

ଲଫର୍ଗ ମୁକ୍ତଛନ୍ଦର ଆଦିପ୍ରବର୍ତ୍ତକ ରୂପେ ଗୌରବାନ୍ୱିତ । କାବ୍ୟ କ୍ଷେତ୍ରରେ ସେ ପ୍ରଥାଗତ ଶବ୍ଦ ପ୍ରୟୋଗର ଘୋର ବିରୋଧୀ ଥିଲେ । କାରଣ ତାଙ୍କର ଅଭିମତ ହେଉଛି, ଅପ୍ରଚଳିତ ଶବ୍ଦ ଓ ଛନ୍ଦର ବ୍ୟବହାରରେ ବିସ୍ମୟବୋଧକୁ ଜାଗ୍ରତ କରାଯାଇପାରେ । କବି ବଡ ଆଶାବାଦୀ କାବ୍ୟ-ଚେତନା କ୍ଷେତ୍ରରେ । ସେ ଏଲିଏଟଙ୍କର କାବ୍ୟଗୁରୁ । ଭାବନାକୁ ଚିନ୍ତାରେ ରୂପାୟିତ କରିବା ଓ ଚିନ୍ତାକୁ ଭାବନାରେ ବିବର୍ତ୍ତିତ କରିଦେବା ତାଙ୍କ କାବ୍ୟର ପ୍ରଧାନ କୃତିତ୍ୱ । T. S. Eliot ସେହିକଥା କହିଛନ୍ତି, "Transforming ideas into sensations, transforming an observation in to a state mind." ଲଫର୍ଗ ମନେ କରନ୍ତି, କବିଚିନ୍ତା ଆକସ୍ମିକ ଭାବରେ ଏକ ଭାବନାକ୍ଷେତ୍ରରୁ ଅନ୍ୟ ଏକ ସମ୍ପୂର୍ଣ୍ଣ ପୃଥକ୍ ଭାବନାକ୍ଷେତ୍ରକୁ ସଂକ୍ରମଣ କରିପାରେ । ଆଧୁନିକ କବିତାର ଏହା ଏକ ପ୍ରତିଷ୍ଠିତ ଲକ୍ଷଣ । ଫଳରେ କବିତା ଅସମ୍ଭବ ପ୍ରଳାପ ପରି ମନେ ହୋଇପାରେ ।

## ପଲଭର୍ଲେନ Poul Verlaine 1844-96)

ଭର୍ଲେନ କହନ୍ତି, ସଙ୍ଗୀତଧର୍ମୀ କବିତାର ଏକମାତ୍ର ଆଦର୍ଶ । ସଙ୍ଗୀତରେ କେବଳ ପରମ ସୌନ୍ଦର୍ଯ୍ୟର ଉପଲବ୍ଧି ରହିଛି । Poeଙ୍କ ଅଭିମତକୁ ସେ ଧ୍ୱନିବଞ୍ଜନ କରିଛନ୍ତି । Poeଙ୍କ ଭାଷାରେ କବିତା ହେଉଛି "Rhythmical creation of beauty" ତେଣୁ ଭର୍ଲେନ. କାବ୍ୟର ସଙ୍ଗୀତ ଧର୍ମ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । କବିତା ତାଙ୍କର ସଙ୍ଗୀତମୟ । Michaud ତାଙ୍କ କବିତା ସମ୍ପର୍କରେ କହିଛନ୍ତି, "The language is vapourized and is reabsorbed into the mellody" "ସେଠି କିଛି ବୋଲି କିଛି ଖାଦ ନାହିଁ, ବିଶୁଦ୍ଧ ମାଧୁର୍ଯ୍ୟର ନିର୍ଝର ହେଉଛି କବିତା । ଆଙ୍ଗିକ ଓ ଭାବାନୁଶୀଳନ ସେଠି ଏକାକାର ।"

## ପଲ ଭଲେରି (Paul Valery)

ଭଲେରି ମାଲାର୍ମେଙ୍କର ଶିଷ୍ୟ । ନିଜକୁ କବିରୂପେ ପରିଚିତ କରାଇବାକୁ ତାଙ୍କର ଯଥେଷ୍ଟ ସଙ୍କୋଚ ଥିଲା । କବି ଜୀବନରେ କୋଡ଼ିଏ ବର୍ଷ ପ୍ରାୟ

ସେ କବିତା ରଚନା କରି ନାହାନ୍ତି । ତଥାପି ତାଙ୍କୁ ଏ ଆନ୍ଦୋଳନର ଜଣେ ବଶିଷ୍ଟ କବି ରୂପେ ସ୍ମରଣ ରଖିବାକୁ ହୁଏ । ସେ ରୋମାଣ୍ଟିକ ଉପ-ଚେତନା ପ୍ରତି ଘୋର ବିମୁଖ ଥିଲେ ।

କାବ୍ୟର ଆବେଗ ତାଙ୍କର ନିରୁତ୍ସାହ ଓ ବୈଦଗ୍ଧ୍ୟ ଶାଣିତ । କାବ୍ୟ ତାଙ୍କର ସ୍ଥାପତ୍ୟଧର୍ମୀ, ଘୋର ଅଧ୍ୟବସାୟର ଫଳ । ପ୍ରତ୍ୟେକଟି ଶବ୍ଦ ସତର୍କ ଚିନ୍ତାର ନିର୍ବାଚନ । କବିତା ସମ୍ପର୍କରେ ତାଙ୍କର ଅଭିମତ ହେଉଛି, ସ୍ୱତଃ-ସ୍ଫୂର୍ତ୍ତ ଭାବଧାରାଟିକୁ ନିଜର ଭାବଧାରରେ ପରିଣତ କରିବାକୁ ହେଲେ କବି ତା'ର ମନ୍ତବେଗକୁ ବ୍ୟାହତ କରିବାକୁ ବାଧ୍ୟ । କାବ୍ୟ ପ୍ରେରଣାଟିକୁ କବି ସତର୍କ ଯତ୍ନ ବଳରେ ସଂଗଠିତ କରିନେବେ । କାବ୍ୟର ଭାଷା ସର୍ବଦା କଥିତ ଭାଷାଠାରୁ ସ୍ୱତନ୍ତ୍ର ହୋଇ ରହିବ ।

ଏହି ଆଚାର୍ଯ୍ୟଗଣ ଏକାଧାରରେ କାବ୍ୟକାର ଓ କାବ୍ୟ ସୂତ୍ରକାର । ଆଧୁନିକ କବିତା ବହୁ ପରିମାଣରେ ଏହିମାନଙ୍କର ଚିନ୍ତା ଓ ପ୍ରଚେଷ୍ଟାର ଫଳ । ଓଡ଼ିଆ ସାହିତ୍ୟରେ ଏମାନେ ଆସି ପହଞ୍ଚିଗଲେଣି । ଅତୀତ ଯୁଗରେ ଭରତ, ଭାମହ, ଆନନ୍ଦବର୍ଦ୍ଧନ, ରାଜଶେଖର ଯେପରି ଆମ ସାହିତ୍ୟକୁ ନିୟନ୍ତ୍ରଣ କରୁଥିଲେ, ଠିକ୍ ସେପରି ଏମାନେ ଆଧୁନିକ କବିତାକୁ ନିୟନ୍ତ୍ରିତ କରୁଛନ୍ତି । ଆଜି ଆମର କବିଏ କାଳିଦାସ, ଭବଭୂତି ଓ ମାଘଙ୍କଠାରୁ କାବ୍ୟପ୍ରେରଣା ସଂଗ୍ରହ ନ କରି ଏଜ୍ରାପାଉଣ୍ଡ ଓ ଟି. ଏସ୍. ଇଲିଅଟଙ୍କ ଦ୍ୱାରସ୍ଥ ହୋଇଛନ୍ତି । ଏ କବିଗୁରୁଦ୍ୱୟ ସେହି ଫରାସୀ ଆଚାର୍ଯ୍ୟଗଣଙ୍କର ନିକଟତମ ଶିଷ୍ୟ ପ୍ରଶିଷ୍ୟ । ଓଡ଼ିଆ ସାହିତ୍ୟରେ ଏମାନଙ୍କର ଆଗମନକୁ ସମ୍ବର୍ଦ୍ଧନା କରିବାକୁ ହେବ ।

ଭର୍ଲେନ ଓ ରାମ୍ବୋ ପ୍ରଥମେ ନିଜକୁ Decadent ବୋଲି ପରିଚିତ କରାଇ-ଥିଲେ । ବୁର୍ଜୁଆ ଗୋଷ୍ଠୀର ପ୍ରାଚୀନ ରୀତି, ନୀତି, ଆଚାର ଆଚରଣ ଓ ଭାବଚିନ୍ତା ବିରୁଦ୍ଧରେ ପ୍ରତିକ୍ରିୟା ପ୍ରକାଶ ଏହି ଡେକାଡେଣ୍ଟମାନଙ୍କର ଅଭିମୁଖ୍ୟ ଥିଲା । ଜୀବନଠୁଁ ନିରୁଦ୍‌ବେଗ, ନିଷ୍କ୍ରିୟତାର ନୀରସତା ଦୂର କରିବାକୁ ସେ ଚାହିଁଥିଲେ । ଯଥାସମ୍ଭବ ୧୮୮୫ରେ ଏହି ଶବ୍ଦଟିକୁ ପରିଚୟ ପଟରୁ ଉଠାଇ ଦେଇ ସେମାନେ Symbolist ନାମରେ ପରିଚିତ ହେଲେ । ଏହି ଶବ୍ଦଟି ଯେପରି ତାଙ୍କ କାବ୍ୟ ଅଭିମୁଖ୍ୟର ଏକମାତ୍ର ସ୍ପଷ୍ଟ ପରିଚୟ; କିନ୍ତୁ

ଭାଲେରିଙ୍କର ଏହି ଶବ୍ଦଟି ପ୍ରତି ବିଶେଷ ଉତ୍ସାହ ନଥିଲା । କାରଣ ବହୁ ବିଭିନ୍ନ ମତ ଓ ଚିନ୍ତାଧାରାର ବହୁ ସାହିତ୍ୟିକ ନିଜକୁ Symbolist ବୋଲି କହିଛନ୍ତି । ସେମାନେ ଅବଶ୍ୟ କାବ୍ୟ-ଜଗତକୁ ନୂତନ ଭାବଚିନ୍ତାରେ ଅଭିଷିକ୍ତ କରିଛନ୍ତି; କିନ୍ତୁ ସେ ଚିନ୍ତାଧାରାର ଏକ ସାର ସଙ୍କଳନ ସମ୍ଭବ ନୁହେଁ । ବହୁ ମତ ବହୁ ପଥର ଏକ ବିମିଶ୍ର କାବ୍ୟଚେତନା ସେଠି ସନ୍ନିବିଷ୍ଟ । ପ୍ରକୃତରେ ପ୍ରତୀକ ବାଦର ଏକ ସଂଗଠିତ ଚିନ୍ତାଧାରା କେବେ ଥିଲା ବୋଲି ଅନେକେ ସନ୍ଦେହ କରନ୍ତି । ତେବେ କାବ୍ୟର ଭାଷା ସଂପର୍କରେ ସେମାନେ ପ୍ରାୟ ଗୋଟିଏ କଥା କହନ୍ତି । କାବ୍ୟ ଭାଷାର ଏକମାତ୍ର ଆଦର୍ଶ, ସ୍ୱପ୍ନ ଓ ସଙ୍ଗୀତ; ବୁଝି ହେଉଥିବ, ଅଥଚ ବୁଝି ହେଉ ନ ଥିବ । ଗୋଧୂଳିର ଆଲୋକଚ୍ଛାୟା ମିଶ୍ରିତ ଏକ ରହସ୍ୟାବୃତ ପରିଧିରେ ତା'ର ଲୀଳା । ଏହାହିଁ ତ ଶ୍ରେଷ୍ଠ ଶିଳ୍ପୀର ଧର୍ମ । Fowlei ତାଙ୍କ ମାଲର୍ମେଙ୍କ ସଂପର୍କିତ ଗ୍ରନ୍ଥରେ ପ୍ରତୀକବାଦର ସଂଜ୍ଞା ନିରୂପଣ କରିବାକୁ ଏହି କଥା କହିଛନ୍ତି ।

"The theory of suggestiveness of words comes from a belief that a primitive language half forgotten, half living, exists in each man. It is language possessing extradinary affinitis with music and dream."

ପ୍ରତ୍ୟେକଟି ଶବ୍ଦର ଅର୍ଥ ମଣିଷ ପାଖରେ ପ୍ରାଞ୍ଜଳ ନୁହେଁ; ସେଥିରୁ କିଛି ଅର୍ଥ ବିସ୍ମୃତି ଗର୍ଭରୁ ଉଙ୍କିମାରୁଥାଏ ତ କିଛି ଅର୍ଥ ସ୍ୱପ୍ନର ରହସ୍ୟ ପରି ଅସ୍ପଷ୍ଟ ରେଖାରେ ବିସ୍ମୟାବୃତ ରହିଯାଏ । ସଙ୍ଗୀତ ପରି ତା'ର ଧ୍ୱନି ଅନ୍ତରରେ ଶିହରଣ ଜଗାଇଲା ବେଳେ ବୁଦ୍ଧି ତା'ର ଅର୍ଥଟିକୁ ଠିକ୍ ଧରିପାରେ ନାହିଁ । କବି ଶବ୍ଦ ନିର୍ବାଚନ ବେଳେ ଶବ୍ଦର ଏହି ଯାଦୁକରୀ ମହାସମ୍ମୋହନକ୍ଷମ ଶକ୍ତି ସଂପର୍କରେ ନିଶ୍ଚିତ ସଚେତନ ରହିବେ । ପ୍ରତୀକବାଦର ଆଚାର୍ଯ୍ୟଗଣ କବିଙ୍କୁ ଏଥିଲାଗି ସତର୍କ କରି ଦେଇଛନ୍ତି ।

## ପ୍ରତୀକ ଆନ୍ଦୋଳନ ଓ ଆଧୁନିକ କବିତା

ଆଗରୁ କୁହାଯାଇଛି W. B. Yeats, T. E. Hulme, Ezra Poud ଓ T. S. Eliot—ଏହିସବୁ ବିଶ୍ୱବିଶ୍ରୁତ ଆଧୁନିକ କବିଗଣ ପ୍ରତୀକ ଆନ୍ଦୋଳନ ପ୍ରତି ଗଭୀର ଶ୍ରଦ୍ଧା ଓ ଆନୁଗତ୍ୟ ନିବେଦନ କରିଛନ୍ତି । ଆଧୁନିକ

କବିତାର କେତେକ ଲକ୍ଷଣ ଓ ସ୍ୱଭାବ ସେଠାରୁ ଶକ୍ତି ଓ ଉତ୍ସାହ ସଂଗ୍ରହ କରିଛି । ଶବ୍ଦ ନିର୍ବାଚନ ଓ ପ୍ରୟୋଗ କ୍ଷେତ୍ରରେ ସେମାନଙ୍କର ବାଣୀ ତ ଏବେ ବେଦବଚନ ପରି ଗୃହୀତ । ପ୍ରଥାବଦ୍ଧ ପଦାନ୍ୱୟ ଆଜି ପରିତ୍ୟକ୍ତ । ଶବ୍ଦ ନିର୍ବାଚନ କ୍ଷେତ୍ରରେ କୌଣସି ନିୟମ ନିୟନ୍ତ୍ରଣ ସହ୍ୟ କରାଯାଇ ପାରେ ନାହିଁ । କବିତା ମଧ୍ୟରେ ଅନ୍ୟ କବିଙ୍କ ରଚନାର ଉଲ୍ଲେଖ ଓ ଉଦ୍ଧୃତି ରହିପାରେ । ତେଣୁ ପାଠକର ରସବୋଧ କାବ୍ୟ ଉପଭୋଗ ଲାଗି ଯଥେଷ୍ଟ ନୁହେଁ; ତା'ର ଅଧ୍ୟୟନ ପରିସର ବିପୁଳ ହୋଇଥିବା ପ୍ରୟୋଜନ । ମୁକ୍ତ ଛନ୍ଦରେ ଭାବର ସ୍ୱାଭାବିକ ଛନ୍ଦ ଧରିପାରେ । ଆଙ୍ଗିକ ଓ ଭାବାନୁଶୀଳନ ଦୁଇ ପୃଥକ୍ ଯତ୍ନର ଫଳ ହୋଇ ନ ପାରନ୍ତି । ଦୁହେଁ ନିଶ୍ଛିଦ୍ର ବନ୍ଧନରେ ଆଜନ୍ମରୁ ସଂଗ୍ରନ୍ଥିତ । ଭାବନାକୁ ଚିତ୍ରକୁ ଓ ଚିତ୍ରକୁ ଭାବନାକୁ ନେଇଯିବା ହେଲା କାବ୍ୟର ଧର୍ମ । ଏଠି ଭାବଚେତନାର ଆକସ୍ମିକ ଉଦ୍‌ବେଳନ ଦୋଷାବହ ନୁହେଁ, ବ୍ୟାଖ୍ୟା ନୁହେଁ, ବିସ୍ମୟ ଉଦ୍‌ବୋଧନ କବିତାର ପ୍ରାଣର କଥା । ବର୍ଣ୍ଣନା ନୁହେଁ, ବ୍ୟଞ୍ଜନା କବିର ଲକ୍ଷ୍ୟ । ଶବ୍ଦ ଅଭିଧାଗତ ଅର୍ଥ ବନ୍ଧନରୁ ମୁକ୍ତି ପାଇବନାହିଁ ପାଇବ । ଆଧୁନିକ କବି ସଂପୂର୍ଣ୍ଣ ଚିତ୍ରଟିକୁ ଅଙ୍କନ କରିବାକୁ ବାଧ୍ୟ ନୁହେଁ । କବିତାର ଶବ୍ଦ ଭାବ ଓ ଚିତ୍ରକଳା ପାଠକ ମନରେ ପ୍ରବେଶ କରି ପୁନର୍ଗଠିତ ହେଲେ ଯଥେଷ୍ଟ ହୁଏ । କବିକୁ ଏପରି ସାହସ ଦେଇଛନ୍ତି ପ୍ରତୀକବାଦର ଅଗ୍ରଦୂତଗଣ । Joseph Chiari ତାଙ୍କ Contemporary French Poetry ଗ୍ରନ୍ଥରେ ଏହି କଥା କହିଛନ୍ତି ।

"...a poetry which by means of myths and symbols seems to convey rather than to describe the extremely complex, emotional and intellectual state whence an experience similar to that of the poet will arise."

ସେମାନେ କାର୍ଯ୍ୟ ଓ କର୍ମରେ ପ୍ରକାଶ କରି ଯାଇଛନ୍ତି, କାବ୍ୟର କୌଶଳ ରହସ୍ୟମୟତା । ସ୍ୱପ୍ନ ଓ ସଙ୍ଗୀତ ପରି ରହସ୍ୟାଚ୍ଛନ୍ନତା କବିତାର ଧର୍ମ । ତେଣୁ ସଂପୂର୍ଣ୍ଣ ବୋଧଗମ୍ୟତା କାବ୍ୟର ଧର୍ମ ନୁହେଁ । ପ୍ରତୀକ ବ୍ୟବହାର ଏହି ସ୍ପଷ୍ଟ ବୋଧଗମ୍ୟତାର ଲଜ୍ଜାକର ପରିସ୍ଥିତିରୁ କାବ୍ୟକୁ ରକ୍ଷା କରେ । କାବ୍ୟ ପ୍ରେରଣା ବି କାବ୍ୟ ରଚନା କ୍ଷେତ୍ରରେ ଶେଷ କଥା ନୁହେଁ । ଅଭିଜ୍ଞତା ଓ ପ୍ରେରଣା ନ ଥିଲେ ବି ଚିନ୍ତା ଓ ଅଧ୍ୟବସାୟ ଉତ୍କୃଷ୍ଟ କାବ୍ୟ ସୃଷ୍ଟି କରିପାରେ । ସ୍ୱତଃସ୍ଫୂର୍ତ୍ତିତା ବି ବଡ଼ କଥା ନୁହେଁ । ବରଂ ସ୍ୱତଃସ୍ଫୂର୍ତ୍ତି

ଭାବପ୍ରବାହ ଗତିକୁ ବ୍ୟାହତ କରି କବି ଯତ୍ନ ଓ ଅଧ୍ୟବସାୟ ବଳରେ ସେଥିରେ କିଛି ବୈଦଗ୍ଧ୍ୟ ଓ ବିଦ୍ୱତ୍ତାର ସଂଯୋଗରେ ତାକୁ କପୂନ୍ଵିତ କରିନେବେ । ଏସବୁ କଥା ପ୍ରାଚୀନ କାବ୍ୟ କବିତା ପଠନ ଅଭ୍ୟସ୍ତ ଲୋକଙ୍କୁ ବିସ୍ୱାଦକର ମନେ ହୋଇପାରେ; କିନ୍ତୁ ନୂତନତାର ଶକ୍ତି ଓ ବିଶ୍ୱାସ ସେମାନଙ୍କୁ ଅଚିରେ ଅଭିଭୂତ କରିବ ହିଁ କରିବ । ଯାହା ସମଗ୍ର ପୃଥିବୀକୁ ଗଭୀର ଭାବରେ ସ୍ପର୍ଶ କରିଛି, ତା'ର ସ୍ପର୍ଶରେ ଓଡ଼ିଆ କବିତା ନିଶ୍ଚିତ ଭାବରେ ଗୌରବାନ୍ୱିତ ହେବ । ସ୍ପର୍ଶକାତରତା ବରଂ ଲଜ୍ଜାକର କଥା ।

---

(୧) Allegory ର ପରିଭାଷା ସଂସ୍କୃତ ଅଳଙ୍କାର ଶାସ୍ତ୍ରଦୃଷ୍ଟିରୁ ସାଙ୍ଗ ରୂପକ ହୋଇପାରେ ।

(୨) Donald A. Staufferଙ୍କ The Nature of Poetry ଗ୍ରନ୍ଥରେ ଏହା ଉଦ୍ଧୃତ ରହିଛି—ପୃଷ୍ଠା ୧୬୯ ।

(୩) Form and Expression count more with them than substance. Their characters are often degenerate, their themes repulsive, their wit ridolant of the gutter and their notions of art rather subversive of morality than otherwise. (E. of American Vol 26, page 162) ରେ ଏହା ମନ୍ତବ୍ୟ ରହିଛି ।

(୪) କବିତାଟି ଡ. ପ୍ରଣତି ତ୍ରିପାଠୀଙ୍କ ଆଧୁନିକ ବାଂଲା କାବ୍ୟ ପରିଚୟ ଗ୍ରନ୍ଥରୁ ଉଦ୍ଧୃତ ।

(୫) Literary Criticism—A Short History ଗ୍ରନ୍ଥରୁ ଉଦ୍ଧୃତ ।

## ସହାୟକ ଗ୍ରନ୍ଥାବଳୀ

(୬) (i) Literay Criticism—A Short History by Wimsatt and Brookes.

(ii) Essays and Introduction—W. B. Yeats.

(iii) The Symbolist Movement—A. Symons.

(iv) ଆଧୁନିକ ବାଂଲା କାବ୍ୟ ପରିଚୟ—ଡଃ. ପ୍ରଣତି ତ୍ରିପାଠୀ

(v) Theory of Literature, By Rene Wallek and Austin Warren.



# ଆମର ସଂକଟବୋଧ ଓ ସାଂପ୍ରତିକ କବିତା

ପୃଥିବୀର, ମୂଳତଃ, ଅଧିକାଂଶ ଜାତିର ସାଂପ୍ରତିକ ସାହିତ୍ୟରେ ଏବେ କେତୋଟି ବର୍ଷ ହେଲା, 'ଆଧୁନିକତା' ଗୋଟାଏ ପର୍ଯ୍ୟାୟ ବା ଅବସ୍ଥା । ଅବଶ୍ୟ ଉର୍ଦ୍ଦୁ, ଆରବୀ-ଗୋଷ୍ଠୀୟ, ଦକ୍ଷିଣ ମାର୍କିନ ବା କେତେକ ଆଫ୍ରିକୀୟ ସାହିତ୍ୟ ପରି ଅନେକେ ଆଧୁନିକତାର ଉଗ୍ରତାରୁ ମୁକ୍ତ; ପକ୍ଷାନ୍ତରେ ସେଗୁଡ଼ିକ ପରଂପରା ଅଥବା ପରିପାର୍ଶ୍ୱ ସହିତ ବିଶେଷ ଭାବରେ ସଂଶ୍ଳିଷ୍ଟ । ପାଶ୍ଚାତ୍ୟ ଓ ମାର୍କିନ ସାହିତ୍ୟ ଏହି 'ଆଧୁନିକତାବାଦ'ର ଅଗ୍ରଣୀ ✢ । ସେଥିରୁ, ବିଶେଷତଃ ଇଂରେଜି ସାହିତ୍ୟରୁ ପ୍ରାପ୍ତ ପ୍ରେରଣା ଓ ପ୍ରଭାବରେ ଭାରତୀୟ ସାହିତ୍ୟମାନଙ୍କରେ ତଦନୁସଟିତ ଆଧୁନିକତା ପରିସ୍ଫୁଟ । ଏଥିରେ ଫ୍ରାନ୍‌ସ୍ ବା ଆମେରିକାର ପ୍ରାଚୀନ ଆଧୁନିକତା, ଆଧୁନିକତା ଓ ଆଧୁନିକ-ଆଧୁନିକତା ଆଦି ବିଭିନ୍ନ ପର୍ଯ୍ୟାୟ ମଧ୍ୟ ନିର୍ବିଶ୍ବରରେ ଗର୍ଭିତ । ତଥାପି ଏହି ଆଧୁନିକତା ସର୍ବମୁଖ୍ୟ, ପ୍ରକଟିତ ଲକ୍ଷଣ ହେଉଛି--ବ୍ୟକ୍ତିର ଓ ତାର ପରିପାର୍ଶ୍ୱର ତଥା ବିଶ୍ୱର

---

✢ ତହିଁରେ ପୁଣି କାଳକ୍ରମିକ ଭାଗବିଭାଗର ନିର୍ଣ୍ଣୟ କରାଯାଇ ତାହାକୁ କୁହାଯାଉଛି—ପ୍ରାଚୀନ ଆଧୁନିକତା, ଆଧୁନିକତା ଅତ୍ୟାଧୁନିକତା; ଆଧୁନିକ-ଆଧୁନିକତା ଇତ୍ୟାଦି । କବିତାର ଧର୍ମ ମୌଳିକ ଅନ୍ତରଙ୍ଗତାରୁ ବ୍ୟତିକ୍ରାନ୍ତ ହୋଇ ଆଙ୍ଗିକ ତଥା ଫେସନ୍ ଆଦି ବହିରଙ୍ଗତାରେ ପର୍ଯ୍ୟବସିତ ହୋଇ-ଯାଉଥିବାରୁ କବି-ସହୃଦୟ ଆର୍କିବାଲ୍‌ଡ୍ ମାକ୍‌ଲିଶଙ୍କ ପରି ବହୁ ସମାଲୋଚକ ଏ ଶ୍ରେଣୀର ନବୀତନ ବା ନବତମ କବିଙ୍କ ଫେସନ୍‌ବାଜ ଓ ନିରନ୍ତରଙ୍ଗତାରେ ବିରକ୍ତ ହୋଇ ପଡ଼ିଲେଣି । ତେଣୁ, ସେମାନେ ନୂତନତାର ଅନୁକୃତି-ମାତ୍ରରେ ଲିପ୍ତ ହୋଇ ନ ଯାଇ ମଣିଷ ହୋଇ ରହିବାକୁ ସେ ଆଶାପୋଷଣ କରିଛନ୍ତି, ଏବଂ 'ମେଣ୍ଢା'ରେ ପରିଣତ ହୋଇ ନ ଯିବାକୁ ପରାମର୍ଶ ଦେଇଛନ୍ତି (The Poet and the Age.—by Irving Sablosky.)

ଅନ୍ତରଙ୍ଗ ବହିରଙ୍ଗ ସଂଘର୍ଷ, ଦ୍ୱନ୍ଦ୍ୱ, ପରିବର୍ତ୍ତନ, ପ୍ରଗତି ଇତ୍ୟାଦିର ଓତଃପ୍ରୋତ ଚେତନାଜନିତ ପ୍ରମୂର୍ତ୍ତତା; ସ୍ଥୂଳତଃ ବୁଝାଯାଇପାରେ—ନିଜର ଓ ପରିପାର୍ଶ୍ୱର ସଂକଟବୋଧ ଏବଂ ତାର ଆନୁଷଙ୍ଗିକ ଧର୍ମାବଳୀ। ପୁଣି ଏ ସମସ୍ତରେ ବନ୍ଧନ ଓ ଯନ୍ତ୍ରଣା ସାହିତ୍ୟରେ କିପରି ରୂପ ନେଇପାରେ ଏବଂ ଏହା ସଂଗେ ତନ୍ତ୍ରୀରୁ ବେଦନା ଓ ସଂବେଦନା କିପରି ସଂଜାତ ହୋଇପାରେ—ଏହି ପରିପ୍ରେକ୍ଷୀରେ ଏଲିଅଟ୍ ହିଁ କେତେ ଦଶକ ହେଲା ମୁଖ୍ୟ ଆଧୁନିକ କବିରୂପେ ସର୍ବତ୍ର ପରିଗଣିତ ତଥା ଅନୁକୃତ ହୋଇ ଆସିଛନ୍ତି। ତଥାପି ତାଙ୍କର ପ୍ରଭାବ ଯଥେଷ୍ଟ ମଉଳି ପଡ଼ିଲାଣି। ତାଙ୍କ କବିତାର ବିରୋଧରେ ବହୁ କାଳାଗତ ଆଲୋଚନା-ବିବେଚନା କରାଗଲାଣି। ଦୃଷ୍ଟାନ୍ତ ସ୍ୱରୂପ, ଏଲିସିଓ ଭିଭାସ୍‌ଙ୍କର ବିଚାରବିମର୍ଷ କିଂବା ସୁସେନ୍ ଲାଙ୍ଗର୍‌ଙ୍କ ନନ୍ଦନତତ୍ତ୍ୱ-ଭିତ୍ତିକ ବିବେଚନା ଅନୁଶୀଳନ କଲେ ଏହା ବୁଝିହେବ। ଆମ ସାରସ୍ୱତ ବିମର୍ଷରେ ପରଂପରାରେ— ତାର କାରଣ, ସଂଭବତଃ ବେଦନା ଓ ସଂବେଦନର ଅତ୍ୟନ୍ତ କୌଣସି ଅମୃତ-ଚେତ ବା ଆଧ୍ୟାତ୍ମିକ ମହତ୍ତ୍ୱର ଅଭାବ। ଏ ଶ୍ରେଣୀର ଅଭାବ ବାଲ୍ମୀକି, ବ୍ୟାସ, କାଳିଦାସ, ହୋମର୍, ଭର୍ଜିଲ୍, ଦାନ୍ତେ, ସେକ୍‌ସ୍‌ପିୟର୍ (ତଥା ଟଲ୍‌ଷ୍ଟୟ୍) ପ୍ରଭୃତିଙ୍କଠାରେ ନ ଥିବାରୁ ସେମାନେ ନିତ୍ୟନୂତନ କବି, ସୃଷ୍ଟିକାର।

ଏହି ବିବେଚନାରେ ଲକ୍ଷ୍ୟ କଲେ ଜାଣିହେବ ଯେ, ଆମର ପ୍ରାନ୍ତୀୟ ସାହିତ୍ୟ ସମ୍ବନ୍ଧରେ ଆମର ପରଂପରାଗତ କିଂବା ପରିପାର୍ଶ୍ୱଗତ ଏକପ୍ରାଣତା ଓ ଅବିଚ୍ଛିନ୍ନତାର ନିଜସ୍ୱ ନିତାନ୍ତ ଅଳ୍ପ; କିନ୍ତୁ ଅନୁକୃତ ଓ ଛଳନା-ଘଟିତ ପାଶ୍ଚାତ୍ୟ ପରସ୍ୱ ପ୍ରଚୁର। ଆମ ସାହିତ୍ୟ-ଉପବନରେ ବିଦେଶୀ ଗୁଛ ମର୍ମନ୍ତୁଦ ଭାବରେ ଅସଂଖ୍ୟ; ମର୍ମନ୍ତୁଦ—କାରଣ, ପ୍ରାୟ ଦେଶୀ ଗୁଛ ସହିତ ଏ ଗୁଡ଼ିକର ସହାବସ୍ଥାନ-ପର୍ଯ୍ୟନ୍ତ ନାହିଁ। ବରଂ ସେ ଗୁଡ଼ିକର ଉତ୍ପାଟନ-ଜନିତ ଶୂନ୍ୟ ସ୍ଥାନରେ ଯେପରି ଏ ଗୁଡ଼ିକର ସ୍ଥିତି! ସାହିତ୍ୟର ଚିରନ୍ତନ ସ୍ୱଭାବ—'ସହିତଭାବ' ବା 'ସହିତ-ସଂପର୍କ' ଏଥିରୁ ବିଚ୍ଛିନ୍ନ। ଏହି ସହିତ ସଂପର୍କରେ ଆସିବାର କଥା— ପ୍ରାକ୍‌ତନ ଓ ବର୍ତ୍ତମାନ କାଳର ଅନୁଭବ ଏବଂ ଆଗାମୀ କାଳର ସଂଭାବନା ଓ ବିଶ୍ୱାସ। ଆମ କବିମାନଙ୍କର ଏହି ସହିତ-ସଂପର୍କ ପ୍ରତି ବିମୁଖତା, ପକ୍ଷାନ୍ତରେ, ପାଶ୍ଚାତ୍ୟ ମୁଖୀତା ଯୋଗୁ, ୧୯୫୬ ମସିହାରେ, ଟୋକ୍ୟୋରେ ଅନୁଷ୍ଠିତ ଆନ୍ତର୍ଜାତିକ ପି. ଇ. ଏନ୍.

କଂଗ୍ରେସ୍‌ରେ କବି ଷ୍ଟିଫେନ ସ୍ପେଣ୍ଡର୍ ଆମ ସାହିତ୍ୟ—ଆଧୁନିକତାରେ ଏଇ ବିପଦ ପ୍ରତି ଆମକୁ ସାବଧାନ କରିଦେଇଛନ୍ତି । କାରଣ, ପରଂପରା-ସଂପର୍କଚ୍ୟୁତ ନୂଆ ନୂଆ 'ବାଦ' ବା 'ଇଜମ୍'ର ବ୍ୟର୍ଥ ପରିଣତି ୟୁରୋପର କବି, ସାହିତ୍ୟିକ ତଥା ପାଠକମାନେ ଜୀବନରେ ଭୋଗିସାରିଛନ୍ତି । ଭବିଷ୍ୟ-ବାଦ (Futurism), ନାସ୍ତିବାଦ (Dadaism ବା Nihilism) ପ୍ରଭୃତି ତାର କେତୋଟି ଦୃଷ୍ଟାନ୍ତ । ୟୁରୋପରେ, ଏବେ ଆଧୁନିକ ସାହିତ୍ୟ କିମ୍ବା କଳା ସାଧନାର ନିଷ୍କର୍ଷ ହେଉଛି—ଗୋଟାଏ ବୈପ୍ଳବିକ ପରଂପରା । ସେଠାରେ କବି, ସାହିତ୍ୟିକ, ଶିଳ୍ପୀ ତାଙ୍କର ପାରିପାର୍ଶ୍ୱିକ ସମାଜ ବା ଇତିହାସର ଗତି ସହିତ ନିଜ ସୃଷ୍ଟିର ସମୀକରଣ କରୁଛନ୍ତି, ନିଜ ସୃଷ୍ଟିରେ ପରିପାର୍ଶ୍ୱର ବିଭିନ୍ନ ବିଭାଗକୁ ଏକାତ୍ମ କରୁଛନ୍ତି ଏବଂ ଏଇ ନବୀକରଣ ବା ରୂପ-ବଦଳ (Transformation) ହେଉଛି ନନ୍ଦନତତ୍ତ୍ୱର ଭିତ୍ତି ଓ ବିଚାର ଭିତରେ । ସେମାନେ ପରଂପରାକୁ ନିର୍ବାସିତ କରୁନାହାନ୍ତି; ଅଥଚ ତାହାକୁ ବୈପ୍ଳବିକ ରୂପ ଦେଇ ନବୀକରଣ କରୁଛନ୍ତି । ଏ ସମ୍ପର୍କେ, ସ୍ଥୂଳ-ଭାବରେ କୁହାଯାଇପାରେ—ଶିଳ୍ପବିପ୍ଳବ ଓ ବୈଜ୍ଞାନିକ ପ୍ରଗତିରେ, ଦୁଇଟି ମହାଯୁଦ୍ଧର ପରିଣତିରେ, କାଁ ଭାଁ ଗୃହଯୁଦ୍ଧ ଓ ଶୀତଳ ଯୁଦ୍ଧର ପ୍ରତିକ୍ରିୟାରେ ବିଭିନ୍ନ ରାଜନୈତିକ ବା ସାମାଜିକ ଉତ୍ତେଜନାରେ ପାଶ୍ଚାତ୍ୟ ଜାତିଗୋଷ୍ଠୀ ବହୁ ପ୍ରତ୍ୟକ୍ଷ ଅଭିଜ୍ଞତା ଅର୍ଜନ କରିଛନ୍ତି । ତାଙ୍କର ଏ ସଂଘର୍ଷ ଜାତିର ଜୀବନର—ତେଣୁ ସାହିତ୍ୟର ମର୍ମଗାଥା ହୋଇପଡ଼ିଛି । ସେଥିପାଇଁ ଗୋଟାଏ ବିପର୍ଯ୍ୟସ୍ତ ଅବସ୍ଥାରେ ଆତ୍ମକେନ୍ଦ୍ରିକତା ବା ଆତ୍ମନିର୍ବାସନ, ଆତ୍ମଖଣ୍ଡତା, ବ୍ୟକ୍ତି ବିଚ୍ଛିନ୍ନତା, ସ୍ଥିତିବାଦିତା, ଆତ୍ମପୀଡ଼ନ ଓ ଆତ୍ମରତି ପ୍ରଭୃତି ବହୁ ବର୍ଣ୍ଣର ଜୀବନଭଂଗୀ ପାଶ୍ଚାତ୍ୟ ସାହିତ୍ୟରୁ ଉପଲବ୍ଧ ହେଉଛି ।

ତଥାପି କବି-ସମାଲୋଚକ ଆର୍ଚିବାଲ୍ଡ ମାକ୍‌ଲିଶ୍ ନବତମ ଆଧୁନିକତାଧର୍ମୀ ମାର୍କିନ୍ ତଥା ପାଶ୍ଚାତ୍ୟ କବିମାନଙ୍କୁ ବିଶ୍ଳେଷଣ କରିଛନ୍ତି, "ସେମାନେ ପ୍ରାପ୍ତ ବିନାପ୍ରଶ୍ନରେ ଓ ବିନା ଚିନ୍ତାରେ ଜୀବନର ଦୁଃଖାନ୍ତ (tragic) ଦୃଷ୍ଟିଭଂଗୀକୁ ଓ ଜୀବନର ଉଦ୍‌ଭଟ (absurd) ଦୃଷ୍ଟିଭଂଗୀକୁ ସ୍ୱୀକାର କରନ୍ତି । ସେମାନେ କହନ୍ତି, "ଏହାହିଁ ବାସ୍ତବତା, ଏହାହିଁ ନିଗଡ଼ ସତ୍ୟ-ଦୃଷ୍ଟି—ଯାହା ପୂର୍ବଜମାନେ ଅଂଗୀକାର କରିବାକୁ ଦ୍ୱିଧାବୋଧ

କରିଥିଲେ ।" ଆପଣ ଏଇକଥା ଏପରି ଲୋକଙ୍କଠାରୁ ଶୁଣିବେ—ଯେଉଁମାନେ ମୂଳକୁ ଛନ୍ଦାନୁରୂପ ଅନୁଭବ କରନ୍ତି ନାହିଁ । ଆପଣ ଜାଣନ୍ତି, ସେମାନେ ମଣିଷ, ପୁନଶ୍ଚ ଆପଣ ଜାଣନ୍ତି ସେମାନେ ଜୀବନକୁ ଉଦ୍ଭଟ ବୋଲି ପ୍ରକୃତରେ ବିଶ୍ୱାସ କରନ୍ତି ନାହିଁ; ସେମାନଙ୍କର ଆଚରଣ ଛନ୍ଦାନୁସାରୀ ନୁହେଁ । ଜୀବନ ନୈରାଶ୍ୟଜନକ ଭାବରେ ଦୁଃଖାନ୍ତ ବୋଲି ସେମାନଙ୍କର ପ୍ରକୃତରେ ବିଶ୍ୱାସ ନାହିଁ । ଏଥିରୁ କୌଣସିଟିରେ ସେମାନଙ୍କର ପ୍ରତ୍ୟୟ ନାହିଁ; ଅଥଚ ଲେଖକ ରୂପେ ଏହାକୁ ସେମାନେ ଅଂଗୀକାର କରନ୍ତି ଓ ଏଥିରୁ ହିଁ ତାଙ୍କର ଗତିବିଧି ।" (The poet and the Age. I. Sablasky) ଏ ଶ୍ରେଣୀର ଆଂଶିକ ବା ଧ୍ୱଜାଧାରୀ କବିମାନଙ୍କର ବାକ୍‌-ସୃଷ୍ଟି, କବି ଇଏଟ୍‌ସ୍‌ କହିବାପରି,—'କବିର ନିଜ ସହିତ କଳିହରୁ, ସଂଘର୍ଷରୁ ଉଦ୍‌ଗତ କବିତା' ହୋଇ ନ ପାରେ । ଅଥଚ ଆମ ସାହିତ୍ୟରେ ଏ ସମସ୍ତର ନିର୍ବିଚାର ଭାବରେ ଅନୁକୃତ ଏବଂ ଅନୁସୃତ ଭଂଗୀ କିଂବା ପ୍ରତିଧ୍ୱନି ବ୍ୟତୀତ ଆମର ସ୍ୱତନ୍ତ୍ର ଜୀବନଭଙ୍ଗୀ ବା ଜୀବନବୋଧ କିଛି ଅଛି ? ଭର୍ଜିଲ୍‌ଙ୍କ ବଚନ—He follows his father with unequal steps (Sequitur Patrem, non passibus aequis)—ଆମ ସାହିତ୍ୟରେ ହିଁ ଘଟିଛି; ଏଠି ସେ ଦେଶର ବାକ୍‌-ପିତାମାନଙ୍କର କେବଳ ଅନୁଧାବନ, ଅନୁକରଣ କରିବାର ପ୍ରାଣାନ୍ତକ ଚେଷ୍ଟା କରାଯାଇଛି, ପଦକ୍ଷେପର ବିଷମ ଓ ବିଶୃଂଖଳ ଅବସ୍ଥାରେ ଗତିର ସାବଲୀଳ ଛନ୍ଦ ନାହିଁ, ସ୍ୱଚ୍ଛନ୍ଦ ସୌନ୍ଦର୍ଯ୍ୟ ନାହିଁ । କହିଲେ ହୁଏ—ଆମର ଜାତୀୟ ସ୍ୱତନ୍ତ୍ର୍ୟ କି ଜାତୀୟ ସଂସ୍କୃତି ରେ ପ୍ରାପ୍ୟ ନାହିଁ । ତେଣୁ ଏ ପ୍ରକାର ଆଧୁନିକତାର ନିତାନ୍ତ ମୁଷ୍ଟିମେୟ, ଅଧିକନ୍ତୁ ସେମାନେ କେତେ ପରିମାଣରେ ଆନ୍ତରିକ, କେତେ ପରିମାଣରେ ସହୃଦୟ—ତାହା କହିହେବ ନାହିଁ ।

ଆମ ସାହିତ୍ୟରେ ଜାତିଗତ ସ୍ୱାତନ୍ତ୍ର୍ୟ ନାହିଁ କାହିଁକି, ବିବେଚନା କରାଯାଉ । ବହୁକାଳ ପରାଧୀନ ରହି ଆସିଥିବା ଯୋଗୁ, ସ୍ୱାଧୀନତା ପରେ ମଧ୍ୟ, ବଂଶାନୁଗୁଣ (heredity) ପରି ଆମ ଜାତିର ପରନିର୍ଭରଶୀଳତା ଓ ପରାପେକ୍ଷିତା ବଢ଼ି ରହିଛି । ତାର କାରଣ ସମଗ୍ର ଜାତି ଯୁଦ୍ଧ କରି, କ୍ଷତବିକ୍ଷତ ହୋଇ ସ୍ୱାଧୀନତା ଅର୍ଜନ କରିନାହିଁ । ତାହା ସମ୍ଭବ ହୋଇଛି ଗାନ୍ଧିଜୀ ପ୍ରମୁଖ ଅଳ୍ପ କେତେକ ନେତାଙ୍କ ନେତୃତ୍ୱଗତ ସଂଗ୍ରାମରେ;

ଅବଶ୍ୟ ଏଥିରେ ଅଗଣିତ ଜନସମର୍ଥନ ଓ ସହଯୋଗ ମିଳିଥିଲା; ତଥାପି ନ୍ୟାଯ୍ୟତଃ ଦେଖିଲେ ତାହା ସମଗ୍ର ଜାତିର ଯୁଦ୍ଧ ବା ସହଯୁଦ୍ଧ ବୋଲି କହି ହେବନାହିଁ । ତାହା ହୋଇଥିଲେ ପ୍ରିୟ ପୈତୃକଭୂମି ଭାରତ ଖଣ୍ଡବିଖଣ୍ଡ ହୋଇଯାଇ ନ ଥାନ୍ତା, କିଂବା ଗାନ୍ଧିଜୀଙ୍କ ବାରଣ ସତ୍ତ୍ୱେ କଂଗ୍ରେସ ଶାସକ ଓ କ୍ଷମତାଧାରୀ ଦଳ ଭାବରେ ରହିବାକୁ ଗୃଧ୍ନୁ ନ ଥାନ୍ତା, କିଂବା ତାଙ୍କର ଆଦର୍ଶଗତ ବହୁ ଇଚ୍ଛାକୁ ଧ୍ୱଂସ କରାଯାଇ ନ ଥାନ୍ତା । ସମଗ୍ର ଜାତି, ଜାତୀୟ ସ୍ୱାଧୀନତାର ସଂଗ୍ରାମରେ ସହଯୁଦ୍ଧ କରି କ୍ଷତ-ବିକ୍ଷତ ହୋଇ ନ ଥିବାରୁ, ସ୍ୱାଧୀନତାର ମୂଲ୍ୟ ବୁଝେ ନାହିଁ । ପରିଣାମରେ ଗାନ୍ଧିଜୀଙ୍କ ସହଚର, ଅନୁଚରମାନେ ସେ ସଂଗ୍ରାମରେ ଅଂଶ ନେଇଥିବାର ଦାବୀରେ କ୍ଷମତା ଓ ପଦବୀ ଲୋଡ଼ିବାବେଳେ ଜନସାଧାରଣ ନୀରବ ଓ ନିଷ୍କ୍ରିୟ ରହିଆସିଛନ୍ତି । ଏପରି କି 'ବଫର୍ ଷ୍ଟେଟ୍' ତିବ୍ବତକୁ ଚୀନ ହାତରେ ଟେକିଦେବା ସତ୍ତ୍ୱେ ଆମର ପ୍ରତିକ୍ରିୟା ବା ପ୍ରତିବାଦ ପର୍ଯ୍ୟନ୍ତ ଉପୁଜିନାହିଁ, ବରଂ ଟେକିଦେବା ବ୍ୟକ୍ତିଙ୍କ ବ୍ୟକ୍ତିତ୍ୱ ସତେ ଯେମିତି ଆମେ ତଳିପାରିବୁ ନାହିଁ—ଏଭଳି ଧାରଣା ଆମର ରହିଆସିଛି । ଦେଶ ପୂଜାଠାରୁ ବ୍ୟକ୍ତିପୂଜାର ବିଶ୍ୱାସ ଆମ ଜାତି-ମାନସରେ ଅଧିକ ପ୍ରତିଷ୍ଠିତ । ପୁରାତନ ରାଜପୂଜା ରୂପାନ୍ତରିତ-ମାତ୍ର ହୋଇ ବ୍ୟକ୍ତିପୂଜାରେ ପ୍ରକଟିତ ହୋଇଛି । ଏବେ ଆମ ଦେଶରେ ରାଜନ୍ୟଗୋଷ୍ଠୀ ପୁରାପୁରି ଉଚ୍ଛିନ୍ନ ହୋଇଯାଇଥିବାରୁ ଆମେ ଖୁସି (ଏହା ନ ହୋଇଥିଲେ ମଧ୍ୟ ଦୁଃଖୀ ହୋଇ ନ ଥାନ୍ତୁ—ବୋଧ ହୁଏ); ଅଥଚ ରାଜବଂଶୀ ନ ହୋଇ ସୁଦ୍ଧା ଗୋଟିଏ ନୂତନତର, ବ୍ରିଟିଶ୍‌ବଂଶୀ ରାଜପୁରୁଷଗୋଷ୍ଠୀ ଓରଫ ରାଜନ୍ୟ-ଗୋଷ୍ଠୀର ବୃହତ୍ତର ସ୍ଥିତିପ୍ରତି ଏବଂ ତଜ୍ଜନିତ ଆର୍ଥିକ, ସାମାଜିକ ଓ ବଯୁକ୍ତିକ ବୈଷମ୍ୟ ପ୍ରତି ଆମେ ଏକାନ୍ତ ଭାବେ ନିର୍ଲିପ୍ତ । ଏହା ସାଂଗକୁ ଯୁଗ-ଜନିତ ଗୋଟାଏ କୋଳାହଳରେ ସମାଜବାଦ ସ୍ଲୋଗାନ୍ ମଧ୍ୟ ତୁଣ୍ଡରେ ରହିଛି !

କୌଣସି ଉଦ୍‌ବୁଦ୍ଧ ଜାତି ଉଦାସୀନ ନୁହେଁ । କିନ୍ତୁ ଆମେ ନିତାନ୍ତ ଉଦାସୀନ । ସେଥିପାଇଁ ଜାତୀୟ ସଂଗୀତ ଗାନ ହେବାବେଳେ ପ୍ରେକ୍ଷାଗୃହରୁ ଆମୂର୍ଖଶିକ୍ଷିତ ଅନେକେ ଉଠିଆସନ୍ତି; ଜାତୀୟ ପତାକାର ଉତ୍ତୋଳନବେଳେ ବହୁ ଶିକ୍ଷକ, ଅଧ୍ୟାପକ ଓ ଅଧିକାଂଶ ଶିକ୍ଷାର୍ଥୀ ମଧ୍ୟ ତାକୁ ସମ୍ମାନ ଦେବାକୁ ଆସନ୍ତି ନାହିଁ । ଏ ଉଦାସୀନତାର ପ୍ରତିକାର ପାଇଁ, ଦଣ୍ଡବିଧାନ ବ୍ୟକ୍ତିତ

ଚେତନାଶ୍ରିତ ଅନୁଭବର ସମସ୍ତ ଆସିନାହିଁ । ଅଧିକନ୍ତୁ ଆମର ଶିକ୍ଷିତଗୋଷ୍ଠୀ ମୁଖ୍ୟତଃ ସ୍ୱାର୍ଥପର ଓ ଆତ୍ମସର୍ବସ୍ୱ ଏବଂ ଅବଶିଷ୍ଟ ଅପର ଗୋଷ୍ଠୀ ନିର୍ବୋଧ ଓ ଉଦାସୀନ । ଏହାହିଁ ପ୍ରକୃତରେ ଆମର ଜାତିରୂପ—ବିକଳ ଏବଂ ଅବହେଳିତ । ଏଥିରେ ବେଦନାବୋଧ ନାହିଁ, ସଂଘର୍ଷର ପ୍ରଶ୍ନ ନାହିଁ, ବହୁ ସଙ୍କଟରେ ସ୍ଥିତି ସତ୍ତ୍ୱେ ସଙ୍କଟଚେତନା ନାହିଁ । ତେଣୁ ଆମର ଜାଗାସ୍ଥ ସାହିତ୍ୟ ସମ୍ଭବ କାହୁଁ ? ଆନ୍ତର୍ଜାତିକ ବା ସାର୍ବଜନୀନ ସାହିତ୍ୟ ତ ଦୂରର କଥା, ଜାତିପ୍ରତି ସମ୍ମାନ ଓ ବେଦନା ନ ଥିଲେ ଅନ୍ତର୍ଜାତି ପ୍ରତି, ସର୍ବଜନ ପ୍ରତି କିବା ବିଶ୍ୱପ୍ରତି ମଧ୍ୟ ତାହା ଉପୁଜିବ କାହୁଁ ? ଏପରି ସ୍ଥଳେ ବିଶ୍ୱଠାରୁ ଆଦର ଲାଭ କରିବାର ଆଶା ଆମ ପକ୍ଷରେ, ଆମ ସାହିତ୍ୟ ପକ୍ଷରେ ବିଡ଼ମ୍ବନା ମାତ୍ର । ଅନ୍ତର୍ଜାତିମନକୁ, ସର୍ବଜନମନକୁ ପ୍ରଭାବିତ କରିବାଭଳି ସାହିତ୍ୟ ଏଇ ନୂତନ ଯୁଗରେ ଆମର କାହିଁ ? ସେଭଳି ସ୍ରଷ୍ଟା ଆମର କେତେ ଜଣ ଓ କାହାନ୍ତି ? ତଥାପି ଆମେ ପଞ୍ଚାବନ କୋଟିରୁ ଅଧିକ ।

ଜାତିର ସଂଘର୍ଷ ନ ଥିଲେ ବ୍ୟକ୍ତିର ସଂଘର୍ଷ-ଚେତନା ଆସିବ ନାହିଁ । ଜାତିର ସଂକଟ ନ ଥିଲେ ବ୍ୟକ୍ତିର ସଂକଟ-ଚେତନା ମଧ୍ୟ ଆସିବ ନାହିଁ । ସଂଘର୍ଷ ଓ ସଂକଟରୁ ଆଧୁନିକ ସାହିତ୍ୟ ବିକାଶ, ପ୍ରଗତିବାଦ ରୂପ ନେଲେ ଆମର ଅବସ୍ଥା କଣ—ତାହା ବିଚାର୍ଯ୍ୟ । ଆମେ ସଂକଟ ପ୍ରତି ଅବହିତ ନୋହୁଁ କିବା ସଂଘର୍ଷ ପ୍ରତି ଉତ୍ସୁକ ନୋହୁ । ତେଣୁ ଶକ୍ତିଶାଳୀ 'ସୃଜନ' କ୍ରିୟାର ଉଦ୍‌ଯୋଗ ପର୍ବର ଅବସ୍ଥା ଆମର ପ୍ରାପ୍ତ ହୋଇନାହିଁ । ତା ହୋଇଥିଲେ, ଆମ ବାଗ୍‌ବିଧାତାମାନଙ୍କର ନିଜ ସଞ୍ଚିତ କଳହରୁ, ସଂଘର୍ଷରୁ ଉଦ୍‌ଗତ ସାଂଗ୍ରାମିକ ଭୀଷ୍ମ-ଦ୍ରୋଣ-ପର୍ବମାନଙ୍କରେ ପ୍ରଭାବଶାଳୀ ସାରସ୍ୱତ ସୃଜନମାନ ଘଟୁଥାନ୍ତା । ସେଥିପାଇଁ ଆମେ ନିଜକୁ ପ୍ରଗତିଶୀଳ କହିବାବେଳେ ଆତ୍ମ ବିଶ୍ଳେଷଣ କରିବା କଥା । ନିଜ ଭିତରେ ଆମେ ଦେଖିବା, ତହିଁର ଅଭିଜ୍ଞତା ଆମର ନାହିଁ କି ଅନୁଭବ ବି ନାହିଁ । ଏ ଅନୁଭବ ପ୍ରତ୍ୟକ୍ଷ ରୂପରେ ନ ହେଲେ ବି ପରୋକ୍ଷ ସୂତ୍ରରେ ଆମର ନାହିଁ । ତେଣୁ ଏହି ଆଧୁନିକତା ଆମ ଦ୍ୱାରା ଅନୁକୃତ କିମ୍ବା ଅଭିମାନ ମାତ୍ର ।

ଅଥଚ ଆମର ପ୍ରଚୁର କ୍ଷେତ୍ର ଅଛି—ଆମେ ଜାତିପ୍ରାଣରେ ସଂକଟ—(ଯାହା ବସ୍ତୁତଃ ବିଦ୍ୟମାନ ଅଛି)—ବୋଧ ଜାଗ୍ରତ କରିପାରିବା ଅଚେତନ ଓ ଜଡ଼ତା ଭଙ୍ଗ କରି; ସଂଘର୍ଷ ସାଧନ କରି ପାରିବା—ଯାହା ଫଳରେ ଓ ଯାହା

ବଳରେ ଜାତି ଉଦ୍‌ବୁଦ୍ଧ ତଥା ସମୃଦ୍ଧ ହେବ । ଉପରିସୂଚିତ କ୍ଷେତ୍ରରେ ଗୋଟିଏ-ଦୁଇଟି ଟିପ୍ପଣୀ ଦିଆଯାଉ ।

ଦୁଇଟା ଯୁଗରୁ ଊର୍ଦ୍ଧ୍ୱ ସମୟ ହେଲଣି ଆମେ ସ୍ୱାଧୀନ ହୋଇଛୁଁ । ସ୍ୱାଧୀନତାକୁ ତିନୋଟି ଭାଗରେ ବିଶ୍ଳେଷଣ କରାଯାଇ ପାରେ—ରାଜନୀତିକ (ତଥା ଭୌଗୋଳିକ), ଆତ୍ମରକ୍ଷଣଶୀଳ (ପ୍ରତିରକ୍ଷା ଓ ଖାଦ୍ୟ ଇତ୍ୟାଦି ସମେତ) ଓ ସାଂସ୍କୃତିକ (ସାହିତ୍ୟ, କଳା ଇତ୍ୟାଦି ସମେତ) ସ୍ୱାଧୀନତା । ଏ ତିନୋଟିର ସୁସ୍ଥ ସମନ୍ୱୟରେ ପୂର୍ଣ୍ଣ ସ୍ୱାଧୀନତାର ପ୍ରକାଶ ତ୍ରିବେଣୀ ସଙ୍ଗମରେ ଉଦାର ମାଧୁର୍ଯ୍ୟ ପରି । ଏ ଯାଏ ଆମ ସ୍ୱାଧୀନତାର ଅବସ୍ଥା କଳନା କଲେ ଦେଖାଯିବ, ଚୀନ୍‌ର ଦଖଲରେ ଆମର ପ୍ରାୟ କୋଡ଼ିଏ ହଜାର ବର୍ଗମାଇଲ୍ ଭୂମି ରହିଥିବା ସତ୍ତ୍ୱେ ତାର ଉଦ୍ଧାର ବିଷୟରେ ଆମେ ଉଦାସୀନ । ଖାଦ୍ୟ ସଂସ୍ଥାନ ଦୃଷ୍ଟିରୁ ଆମେ ଏ ପର୍ଯ୍ୟନ୍ତ ଆତ୍ମନିର୍ଭରଶୀଳ ହୋଇ ପାରିନାହୁଁ ; ଦାରିଦ୍ର୍ୟର ଚକ୍ରବ୍ୟୂହ ମଧ୍ୟରେ ଆମେ କଳବଳ ହୋଇ, ବନ୍ଦୀ ହୋଇ ତହିଁରୁ ଉଦ୍ଧାରର ମାର୍ଗ-ନିର୍ଣ୍ଣୟ କରିପାରିନାହୁଁ । ଏହାର ସମାଧାନ ସୂତ୍ରରେ ଆମେ ବିଦେଶୀ ଭିକ୍ଷା-ବୃତ୍ତି କରି ଆସିଛୁଁ ; ଷଟ୍‌କର୍ମରୁ ଏକତମ ହୋଇଥିବାରୁ 'ପ୍ରତିଗ୍ରହ' ବୃତ୍ତିରେ ମଧ୍ୟ ଲଜ୍ଜାବୋଧ କରିନାହୁଁ । (କେତେ ବର୍ଷ ପୂର୍ବେ ବିନୋବାଜୀ ବିକ୍ଷୁବ୍ଧ ହୋଇ ଏ ସଂପର୍କରେ କହିଥିଲେ :—

Our condition is pitiable, we feed our children with imported milk from America. I wonder whether after growing older they would shout 'Bharat mata ki jai' or 'America mata ki jai' we seem to have lost all vision it is a sad picture of loss of all sense of values. Independent in name we are dependent in practice.)

ପୁଣି, ବ୍ରିଟିଶ୍ ଯୁଗରେ ଆମ ଶିକ୍ଷିତ ଲୋକେ ଯେପରି ଦେଶୀସାହେବ ଥିଲେ, ସଂସ୍କୃତିକ୍ଷେତ୍ରରେ ତାହାରି ଗତାନୁଗତିକ ଚଳଣି ଅବିକଳ ଭାବରେ ବିସ୍ତୃତି ଲାଭ କରିଛି । ଏପରି କି ଆମର କେତେକ ସମାଲୋଚକ ଇଂରେଜ ସମାଲୋଚକଙ୍କ ଆଲୋଚନା ବା ପସନ୍ଦ ନାପସନ୍ଦ କଷଟିରେ ଆମ ପ୍ରାଚୀନ ସାହିତ୍ୟର ବିଚାର କରିବାକୁ ଛାଡ଼ୁନାହାନ୍ତି । ଏହାର ମୂଳରେ ସାହିତ୍ୟର ପୂର୍ବୋକ୍ତ 'ସହିତ-ସଂପର୍କ' ଜ୍ଞାନ ବିଷୟରେ ଅବୋଧତା ହିଁ ହେତୁ ।

ବସ୍ତୁତଃ, ଆମର ଖଣ୍ଡିତ ସ୍ୱାଧୀନତା ଭିତରେ ଅଖଣ୍ଡ ସ୍ୱାଧୀନତାର କଳ୍ପନା, ଚିନ୍ତା ଓ ସାଧନା ଆମେ ତଥାକଥିତ ପ୍ରଗତିଶୀଳମାନେ କରୁଛୁ କି ? ଏହା ବ୍ୟତୀତ, ପ୍ରଗତିଶୀଳ ଗୋଷ୍ଠୀ ପ୍ରାୟ ଯାବତୀୟ ପ୍ରାଚୀନ ପ୍ରତି ପରାଙ୍ମୁଖ; ଅଥଚ ଆମ ଦେଶର କର୍ଣ୍ଣଧାର ଓ ଗ୍ଳକମାନେ ଅଧିକାଂଶ ପ୍ରାଚୀନ । ତରୁଣତର ନେତା ସର୍ବ-ଭାରତୀୟ ସ୍ତରରେ ନାହାନ୍ତି କହିଲେ ଚଳେ; ଦେଶର ଭାର ମୁଣ୍ଡରେ ନେବାପାଇଁ ତରୁଣଗୋଷ୍ଠୀ ନିଜକୁ ପ୍ରସ୍ତୁତ କରିବାକୁ ଉତ୍ସାହୀ ନୁହନ୍ତି ବୋଲି ମନେହୁଏ । କିଂବା ଯୁବନେତୃତ୍ୱ ତିଆରି ହେବାରେ ଆମ ଗଣତାନ୍ତ୍ରିକ ପଦ୍ଧତିରେ କଣ ତ୍ରୁଟି ଅଛି; ବିଚ୍ୟୁତି କି ଅନ୍ତରାୟ ଅଛି—ତାହା ସୁଧାରିବା ଲାଗି ପ୍ରଗତିଶୀଳମାନେ ଚେଷ୍ଟିତ ନୁହନ୍ତି । ମୋଟା ମୋଟା ଗ୍ଳକରି ଏମାନଙ୍କର ଲକ୍ଷ୍ୟ । ବ୍ରିଟିଶ୍ ବ୍ୟୁରୋକ୍ରେସି ସତେ ଯେପରି ଦେଶର ଅନିବାର୍ଯ୍ୟ ସୁଖସମୃଦ୍ଧିର କୋଷାଗାର ! ମାକଲେଙ୍କ ଜଣାଶୁଣା ବାଣୀକୁ ବୃହତ୍ତର ଭାବରେ ସାର୍ଥକ କରିବା ହିଁ ଆମ ଶିକ୍ଷିତ ଓ ପ୍ରଗତିଶୀଳମାନଙ୍କ ସାଧନା—ଏହିପରି ମନେହୁଏ । ଏଥିରେ କ୍ଷୀଣବୃତ୍ତି କରାଣୀରୁ ଆଇ.ଏ.ଏସ୍. ବା ଆଇ. ପି. ଏସ୍. ପର୍ଯ୍ୟନ୍ତ ସଂପ୍ରସାରଣ ମାତ୍ର ଏବଂ କିଙ୍କରଧର୍ମ ସାଧନ ଏହାର ମୌଳିକ ସତ୍ତ୍ୱ, ଚୂଡ଼ାନ୍ତ ସତ୍ୟ । ଏହି ଗୋଷ୍ଠୀରେ ଅଛନ୍ତି ଅନେକ ସୌଖିନ୍ କବି, ସାହିତ୍ୟିକ ଶିଳ୍ପୀ—ଏପରି କି ସୌଖିନ୍ ପାଠକ । ଏମାନେ କ୍ଷମତାପନ୍ନ କିଙ୍କରଧର୍ମକୁ (ବ୍ୟୁରୋକ୍ରେସି ଭିତରେ ସର୍ବସ୍ୱ କମ୍ପା ବଞ୍ଚିରହିବା ମନେ କରିବା ସଙ୍ଗେ ସଙ୍ଗେ ପ୍ରଗତିର ଆଧୁନିକ ଚେତନାର ତଥା ଘାତ ପ୍ରତିଘାତ ବକ୍ଷୁବ୍ଧ ପରିପାର୍ଶ୍ୱର ଦାୟିତ୍ୱ ସ୍ୱୀକାର କରିବା କିପରି ପରସ୍ପରବିରୋଧୀ ବୋଲି ବୋଧ ହୁଏ । ଏ ଅବସ୍ଥାରେ ମୂଲ୍ୟବୋଧ ମୁଖ୍ୟ ନ ହୋଇ, ବରଂ ଦରଦାମ୍ ବୋଧ ମୁଖ୍ୟ ହୋଇଯିବ, ମୂଲ୍ୟବୋଧ ହୋଇଯିବ ଗୌଣ । ଏ ସଂକଟ ଅଂଗେ ନିବେଦିଥିବା କବି ମାକ୍ନିଶ୍ କହନ୍ତି, I had ceased to think of myself as having two hats or two suits of clothes, there was only one way to act. ସେଥିପାଇଁ ସେ କେବଳ ସାହିତ୍ୟକୁ, କବିତାକୁ ଅଂଗୀକାର କଲେ । ଆମ ଦେଶର କିଙ୍କରଧର୍ମୀ କବି ଓ ସାହିତ୍ୟିକ ନୂଆ ଚେତନାର ନୂଆ ବାକ୍ର ଶକ୍ତିଶାଳୀ ସୃଜନ କରିପାରିବ କି ନାହିଁ, ସନ୍ଦେହର ବିଷୟ ।

ସୃଷ୍ଟି-ସଚେତନ ନ ହୋଇ ପାଶ୍ଚାତ୍ୟ ସମାଲୋଚକ-ସଚେତନ ଓ ସମାଲୋଚନା-ସଚେତନ ହୋଇପଡ଼ିବା ଯୋଗୁ ତାଙ୍କର ସ୍ୱତନ୍ତ୍ର ଏବଂ ସୃଷ୍ଟିଶୀଳ ପ୍ରତିଭାର ଏପରି ମନ୍ଦାବସ୍ଥା ବୋଲି ମନେ ହୁଏ । ଏମାନେ ପୃଥିବୀର ପ୍ରଗତିଶୀଳ ଜାତିଙ୍କ ଶୃଙ୍ଖଳ୍ୟ ଓ ସଂଘର୍ଷ ପ୍ରବୃତ୍ତିର ଅନ୍ଧାନୁକରଣ କରିବା ଯୋଗୁ ତାହା ଜାତିର ପ୍ରାଣ ସ୍ପର୍ଶ କରୁନାହିଁ । ଏହି ଅନ୍ଧାନୁକରଣ ହେଉଛି—ନିଜ ସୃଷ୍ଟିକୁ ଅନୁଭବ, ସ୍ୱାଚ୍ଛନ୍ଦ୍ୟ ଓ ହୃଦୟରୁ ବହିଷ୍କୃତ କରି ମୂଖ୍ୟତଃ ବୌଦ୍ଧିକତାର ଉତ୍ତପ୍ତ ଓ ତୀବ୍ର ବର୍ଣ୍ଣାବଳୀର ସଜ୍ଜାରେ ପୀଡ଼ାପ୍ରଦ ରୂପେ ଉପସ୍ଥାପନା କରିବା । ଫଳରେ ଆମର ସାଂପ୍ରତିକ ସାହିତ୍ୟ ଅବକ୍ଷୟର ଗଣ୍ଡିଭିତରେ ଆବଦ୍ଧ ତଥା ନଷ୍ଟ,ଭ୍ରଷ୍ଟ ହୋଇ ରହିଛି ।

ଆମ ସାହିତ୍ୟ ସଂପୂର୍ଣ୍ଣ ମୁକ୍ତ ହେବା ଉଚିତ । ଦେଶର 'ସହିତ-ସଂପର୍କ'ରେ ଜୀବନ୍ତ, ବଳିଷ୍ଠ ଓ ସ୍ୱତନ୍ତ୍ର ହେବା ପ୍ରୟୋଜନ । ଅଧିକନ୍ତୁ ମୁକ୍ତମନା ସ୍ରଷ୍ଟାର ଦାୟ ପ୍ରଥମ ଓ ପ୍ରଧାନ କାମ୍ୟ ।

ଏଥିପାଇଁ ଆମ ପ୍ରଗତିଶୀଳମାନଙ୍କର ସଂକଟ-ଚେତନା ଶାଣିତ ହେଲେ, ସଂଘର୍ଷ ହିଁ ନୂତନ ଶୁଭଙ୍କର ରୂପରେ ଦେଖାଦେବ । ଜୀବନ୍ତ ସ୍ୱାତନ୍ତ୍ର୍ୟ ସ୍ରଷ୍ଟା-ଜୀବନରେ ଓ ପରିଣାମତଃ ସାହିତ୍ୟ ସୃଷ୍ଟିରେ ଉପୁଜିବ । ସାହିତ୍ୟ ବା ସୃଷ୍ଟିକୁ ଏଥିରୁ ବିଚ୍ଛିନ୍ନ ବୋଲି ଧରିନେଲେ, କେବଳ ଆଧୁନିକତା ଓରଫ ସାଂପ୍ରତିକତାରେ ସ୍ରଷ୍ଟାମାନେ ବିଲୀନ ହୋଇଯିବା ବ୍ୟତୀତ ଗତ୍ୟନ୍ତର ନାହିଁ । ଆମ ସାହିତ୍ୟ ମଧ୍ୟ ଅବକ୍ଷୟ-ପ୍ରବାହରୁ ନିଷ୍କୃତି ଲାଭ କରିବ ନାହିଁ ।



ପୁନଶ୍ଚ, ଆମେ ପ୍ରଗତି କରୁଛୁଁ ବୋଲି ସମସ୍ତେ ଜାଣନ୍ତି । କିନ୍ତୁ ବିଶ୍ଳେଷଣରେ ବୁଝାଯାଇପାରିବ —ଏହା ଠିକ୍ ପ୍ରଗତି ନା ଗତି ମାତ୍ର । ଜାପାନ, ଜର୍ମାନ, ଇସ୍ରାଏଲ୍ ପ୍ରଭୃତି ଉଦ୍‌ବୁଦ୍ଧ ଜାତିମାନେ ଯେପରି ଜୀବନ-ଚଞ୍ଚଳ, ବେଗବନ୍ତ ଓ ଚରୈବେତି-ସାଧକ, ଆମ ଉଦାସୀନ, ବିଶୃଙ୍ଖଳ ଜାତି କଣ ସେହିପରି ? କିଏ ଆମ ଜାତିରେ ଉଦ୍‌ବୁଦ୍ଧ ?—ଶାସକ ନା ଶାସିତ ? ଅଧ୍ୟାପକ—କିଂବା ଶିକ୍ଷାବିତ୍ ନା ଅଧ୍ୟାପିତ ? ଲୋକେ ନା ଲୋକପ୍ରତିନିଧି ? ବରଂ ଗୋଟିଏ ଉଦ୍‌ବୁଦ୍ଧ ଜାତିର ବେଗ-ବିରୋଧୀ, ମଧ୍ୟଯୁଗୀୟ ଅବକ୍ଷୟ-ଲକ୍ଷଣ ଆମ ଜାତିରେ ଦେଖାଦେଇଛି; ତାହାର ବୃଦ୍ଧି ଘଟିଛି ପୁଣି ଆମର ସ୍ୱାଧୀନତା ପରେ । ତାହା ହେଉଛି ଆଧ୍ୟାତ୍ମିକତା ଲାଭ ନାମରେ ଅନେକ ଗୁରୁଙ୍କ ଆବିର୍ଭାବ ଏବଂ ଅସଂଖ୍ୟ ତଦାଶ୍ରୟୀ ଶିଷ୍ୟଙ୍କ ଗୁରୁପୂଜା । ଯଦି ଏମାନଙ୍କ ଆଧ୍ୟାତ୍ମିକତାର ସାଧନା ସତ୍ୟ, ତେବେ ସେମାନଙ୍କ ଜୀବନରେ ସାଂପ୍ରତିକ ସଂକଟବୋଧ କିଂବା ସଂଘର୍ଷର ଅବକାଶ ନାହିଁ । ସେମାନେ ଏ ଅବସ୍ଥାର ଅତିକ୍ରାନ୍ତ ପୀଠରେ ପହଞ୍ଚିବା ଓ ରହିଯିବା ହିଁ ହେଉଛି ତହିଁର କାରଣ । ତେଣୁ ଏମାନଙ୍କଠାରୁ ବାଂଛିତ ନୂତନ ସାହିତ୍ୟର ପ୍ରତ୍ୟାଶା ନାହିଁ । ପୁଣି ଏଇ ଆଧ୍ୟାତ୍ମିକ ସମ୍ପ୍ରଦାୟ ଗୁଡ଼ିକର ପରସ୍ପର ବିରୋଧ ଓ ସ୍ୱକୀୟ ବଦ୍ଧବିଶ୍ୱାସ ଯୋଗୁ ମଧ୍ୟ ସେ ପ୍ରତ୍ୟାଶା ନାହିଁ । ଅନ୍ୟ ପକ୍ଷରେ ଯାହା ଦେଖାଯାଉଛି, ତହିଁରୁ ବୁଝାଯାଇପାରେ ଯେ, ସ୍ୱାର୍ଥକାମୀ ଭକ୍ତଲୋକେ ଆଧ୍ୟାତ୍ମିକତାକୁ ରାଜନୈତିକ କିଂବା ବୈଷୟିକ ଆଧ୍ୟାତ୍ମିକତା ନାମରେ ରୂପାନ୍ତରିତ କରିଦେଲେଣି । ଏପରି ସ୍ଥଳେ ତହିଁରେ ଥିବା ରାଜସିକ କିଂବା ତାମସିକ ବ୍ୟକ୍ତିତ୍ୱର ଲେଖକମାନଙ୍କଠାରୁ ମଧ୍ୟ ନୂତନ ସାହିତ୍ୟର ପ୍ରତ୍ୟାଶା ନାହିଁ । ଗତାନୁଗତିକ ଓ ପୁରାତନ ଗୁରୁକଲ୍ଟ (Cult) ପ୍ରଗତିଶୀଳ ଜାତିର ସହଚର ନୁହେଁ । ତେଣୁ ଏହି ପରିଧିରେ ସାହିତ୍ୟ ହେବ ବଦ୍ଧବିଶ୍ୱାସର ସାହିତ୍ୟ । କିନ୍ତୁ ବିଶ୍ୱାସରେ ବିପ୍ଳବ ଓ ସଂଘର୍ଷ ଆଣି ନୂତନ ବିଶ୍ୱାସର ସ୍ୱାକ୍ଷର ଦେବା ଆଧୁନିକ ସାହିତ୍ୟିକର କାମ ।

ସ୍ରଷ୍ଟା, ସାହିତ୍ୟ କିମ୍ବା କବିର ବଡ଼ ସମ୍ପଦ ଓ ସଂବଳ ହେଉଛି —ମୁକ୍ତ ମନ । ମୁକ୍ତ ମନ ବେଦନାଶୀଳ ଓ ବ୍ୟାପ୍ତ ମନ ସ୍ରଷ୍ଟାର ସର୍ବତୋଭାବରେ ବଡ଼ ଶକ୍ତି । ତାହାହିଁ ଆମର ଲୋଡ଼ା । ଆମ ପ୍ରଗତିଶୀଳ ଲେଖକଗୋଷ୍ଠୀ ମଧ୍ୟରେ ଅନେକ ପ୍ରତିଭାଧର, ସନ୍ଦେହ ନାହିଁ । କିନ୍ତୁ ସେମାନେ

ସୃଷ୍ଟି-ସଚେତନ ନ ହୋଇ ପାଶ୍ଚାତ୍ୟ ସମାଲୋଚକ-ସଚେତନ ଓ ସମାଲୋଚନା-ସଚେତନ ହୋଇପଡ଼ିବା ଯୋଗୁ ତାଙ୍କର ସ୍ୱତନ୍ତ୍ର ଏବଂ ସୃଷ୍ଟିଶୀଳ ପ୍ରତିଭାର ଏପରି ମନ୍ଦାବସ୍ଥା ବୋଲି ମନେ ହୁଏ । ଏମାନେ ପୃଥିବୀର ପ୍ରଗତିଶୀଳ ଜାତିଙ୍କ ଚାଞ୍ଚଲ୍ୟ ଓ ସଂଘର୍ଷ ପ୍ରଭୃତିର ଅଭିନୟ କରିବା ଯୋଗୁ ତାହା ଜାତିର ପ୍ରାଣ ସ୍ପର୍ଶ କରୁନାହିଁ । ଏହି ଅଭିନୟ ହେଉଛି—ନିଜ ସୃଷ୍ଟିକୁ ଅନୁଭବ, ସ୍ୱାଚ୍ଛନ୍ଦ୍ୟ ଓ ହୃଦୟରୁ ବିରହିତ କରି ମୁଖ୍ୟତଃ ବୌଦ୍ଧିକତାର ଉତ୍ତପ୍ତ ଓ ତୀବ୍ର ବର୍ଣ୍ଣାବଳୀର ସଜ୍ଜାରେ ପୀଡ଼ାପ୍ରଦ ରୂପେ ଉପସ୍ଥାପନା କରିବା । ଫଳରେ ଆମର ସାଂପ୍ରତିକ ସାହିତ୍ୟ ଅବକ୍ଷୟର ଗଣ୍ଡିଭିତରେ ଆବଦ୍ଧ ତଥା ନିଷ୍ପ୍ରତିଭ ହୋଇ ରହିଛି ।

ଆମ ସାହିତ୍ୟ ସଂପୂର୍ଣ୍ଣ ମୁକ୍ତ ହେବା ଉଚିତ । ଦେଶର 'ସହିତ-ସଂପର୍କ'ରେ ଜୀବନ୍ତ, ବଳିଷ୍ଠ ଓ ସ୍ୱତନ୍ତ୍ର ହେବା ପ୍ରୟୋଜନ । ଅଧିକନ୍ତୁ ମୁକ୍ତମନା ସ୍ରଷ୍ଟାର ଦାୟ ପ୍ରଥମ ଓ ପ୍ରଧାନ କାମ୍ୟ ।

ଏଥିପାଇଁ ଆମ ପ୍ରଗତିଶୀଳମାନଙ୍କର ସଂକଟ-ଚେତନା ଶାଣିତ ହେଲେ, ସଂଘର୍ଷ ହିଁ ନୂତନ ଶୁଭଙ୍କର ରୂପରେ ଦେଖାଦେବ । ଜୀବନ୍ତ ସ୍ୱାତନ୍ତ୍ର୍ୟ ସ୍ରଷ୍ଟା-ଜୀବନରେ ଓ ପରିଣାମତଃ ସାହିତ୍ୟ ସୃଷ୍ଟିରେ ଉପୁଜିବ । ସାହିତ୍ୟ ବା ସୃଷ୍ଟିକୁ ଏଥିରୁ ବିଚ୍ଛିନ୍ନ ବୋଲି ଯେନଲେ, କେବଳ ଆଧୁନିକତା ଓରଫ ସାଂପ୍ରତିକତାରେ ସ୍ରଷ୍ଟାମାନେ ବିଲୀନ ହୋଇଯିବା ବ୍ୟତୀତ ଗତ୍ୟନ୍ତର ନାହିଁ । ଆମ ସାହିତ୍ୟ ମଧ୍ୟ ଅବକ୍ଷୟ-ପ୍ରବାହରୁ ନିଷ୍କୃତି ଲାଭ କରିବ ନାହିଁ ।



# କବିତା : ବ୍ୟକ୍ତି ଓ ବିଶ୍ୱ

"ପ୍ରକୃତି ଏକାକୀ, ଏକ, ଏକୀଭୂତ । କିନ୍ତୁ ନାମ ଦ୍ୱୈତ, ଆଉ ଆଜି ବିଜ୍ଞାନର ସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ଏହା ହେଉଛି ବିବିଧ । କବିଙ୍କୁ ନିଜ କବିତା ପ୍ରତି ସତ୍ୟନିଷ୍ଠ ହେବାକୁ ହେଲେ, ସେ ଏହାକୁ ଦ୍ୱୈତ ଅଥବା ଏକକ ବୋଲି ନିଷ୍କର୍ଷ କରିପାରିବେ ନାହିଁ । ତାଙ୍କୁ କେବଳ ବିରୋଧାଭାଷ ମଧ୍ୟରେହିଁ ସମାଧାନ ଖୋଜିବାକୁ ପଡ଼ିବ ।" (୧)

କବିତା ଭାଷା-ମାଧ୍ୟମ କଳା । କଳା ବ୍ୟକ୍ତି ମନର ସୃଷ୍ଟି । ଭାଷା ସମାଜର ସୃଷ୍ଟି । ବହୁର ସମାବେଶରେ ସମାଜ । ବହୁର ବିଚିତ୍ର ସଂହତି, ଏକୀଭୂତ ପ୍ରକାଶ ବିଶ୍ୱ । ବିଶ୍ୱମୁଖୀନତା ନା ଆତ୍ମମୁଖୀନତା—ସମାଜମୁଖୀ ବାସ୍ତବତା ନା ବ୍ୟକ୍ତିମୁଖୀ ସ୍ୱୈରଚନ୍ଦତା, ବିଶ୍ୱମୁଖୀ ଆସକ୍ତି ନା ଆତ୍ମସଚେତନ ନିର୍ଲିପ୍ତତା—ପୁଣି ଏଇ ଉଭୟର ସମନ୍ୱୟ ନା ବିରୋଧ, ଅଥବା ଏକ ଆପେକ୍ଷିକ ନିର୍ବାଚନ, ମଧ୍ୟମ ମାର୍ଗର ସନ୍ଧାନ—ଏହା ଆଧୁନିକ ଜୀବନର ସମସ୍ୟା । ଏହା ମଧ୍ୟ କବିଙ୍କ ସମସ୍ୟା, କବିତାର ସମସ୍ୟା ।

ଏହି ସମସ୍ୟାର ସମାଧାନ ହୁଏତ କବିମାନେ "ଲଜିକ୍ ଅଫ୍ ପାରାଡକ୍ସ" ମଧ୍ୟରେ ଖୋଜି ପାରନ୍ତି । ଆଧୁନିକ କବିତାରେ ଦୁର୍ବୋଧ୍ୟତା ବିଷୟରେ ଭାବିବାକୁ ବସି ଜଣେ ପାଶ୍ଚାତ୍ୟ ସମାଲୋଚକ କବିତାରେ "ପାବ୍ଲିକ୍ ଓ୍ୱାର୍ଲଡସ୍" ଓ "ପ୍ରାଇଭେଟ୍ କଣ୍ଟେଜ୍" କଥା କହିଛନ୍ତି । ସାମ୍ପ୍ରତିକ ଓଡ଼ିଆ କବିତାରେ ଘରୋଇ ସଂସାରର ଅଥବା ବିଶ୍ୱଜନୀନ ମାନବିକତାର ଚିତ୍ର ଅଧିକ ପ୍ରତିଫଳିତ ହେଉଛି ବା ହେବା ଉଚିତ; ଅଥବା ଏଇ ଦୁଇର ସଂହତ ପ୍ରକାଶ ଘଟିବା ଉଚିତ,—ବିଷୟଟି କବିମାନଙ୍କ ପକ୍ଷରେ ଯେପରି ଅନୁଧ୍ୟାନଯୋଗ୍ୟ, ସମାଲୋଚକ ପାଠକଙ୍କ ପକ୍ଷରେ ମଧ୍ୟ ଅନୁସନ୍ଧାନର ବିଷୟ । (୨)

ଅବଶ୍ୟ ଏ କ୍ଷେତ୍ରରେ ଗୋଟିଏ ସ୍ୱାଭାବିକ ପ୍ରଶ୍ନ ଉଠେ । ସାମ୍ପ୍ରତିକ ସାହିତ୍ୟ ବା କବିତାର ଆଲୋଚନା ସମ୍ଭବ କି ନୁହେଁ । କାରଣ କବିତା ଯଦି ଏକ କଳା ହୁଏ, ତାହାର ଆବେଦନ ସାର୍ବଜନୀନ ଓ ଚିରନ୍ତନ ହେବା ସ୍ୱାଭାବିକ । କାଳଞ୍ଜି କଳାର ପ୍ରକୃତି ବିସ୍ମୟକର । ସାମ୍ପ୍ରତିକ କବିତାର ଯେ କୌଣସି ଆଲୋଚନା କେବଳ ପରିଚିତିମୂଳକ ବା ଗଭୀର୍ୟ ଧରଣର ହୋଇପାରେ । ତାହାର ମୂଲ୍ୟାୟନ ସମ୍ଭବ ନୁହେଁ । କିନ୍ତୁ ସାମ୍ପ୍ରତିକର ବିଗ୍ରହ କରିବାକୁ ଗୃହୁଁ ଥିବା ପକ୍ଷଙ୍କର ଯୁକ୍ତି ହେଉଛି, କାଳ କଳାର ପ୍ରକୃତି ବିଚାରକ ସତ୍ୟ; ମାତ୍ର ତାହାର ବିଗ୍ରହପଦ୍ଧତି ବଡ଼ ମନ୍ଥର । ଅଥଚ ଆଧୁନିକ ଜୀବନ ଚଞ୍ଚଳ ଓ କଳାର କ୍ଷେତ୍ର ଦ୍ରୁତ ପ୍ରସାରିତ । ସାମ୍ପ୍ରତିକ ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ସମସ୍ୟାଜର୍ଜର । ଏ ସ୍ଥଳରେ ସୁଦୀର୍ଘ ଅପେକ୍ଷା ମୃତ୍ୟୁଠାରୁ ଭୟଙ୍କର । ତାହାଛଡ଼ା, ଆଧୁନିକ କବିତା ସମଗ୍ର ଜନଗଣଙ୍କ ମାନସଲୋକର ଚିତ୍ର ପ୍ରକାଶ କରିବାକୁ ଅସମର୍ଥ, ଠିକ୍ ଯେପରି ଆଧୁନିକ ଜୀବନରେ କୌଣସି ଗୋଟିଏ ମତବାଦ ବା ଦଳ ସମସ୍ତଙ୍କର ଏକଚ୍ଛତ୍ର ପ୍ରତିନିଧିତ୍ୱ ବା ସମର୍ଥନ ପାଇବାକୁ ଅସମର୍ଥ । ବର୍ତ୍ତମାନ କାଳର ଧାରଣା ଓ ଇତିହାସ ଚେତନାରେ ସମକାଳ ଓ ଚିରକାଳର ପାର୍ଥକ୍ୟ ସ୍ପଷ୍ଟ ହୋଇ ଉଠୁଛି । ଆଧୁନିକ ସମାଲୋଚନା ଦୃଷ୍ଟି ମଧ୍ୟ ଭିନ୍ନ । ମୂଲ୍ୟାୟନ ବର୍ତ୍ତମାନ ସମାଲୋଚନାର ପ୍ରଧାନ ଲକ୍ଷ୍ୟ ନୁହେଁ । ଲକ୍ଷ୍ୟ, ନବାଚନ ଓ ପାରମ୍ପର୍ଯ୍ୟବୋଧର ଆଲୋକରେ ସ୍ୱରୂପ ସନ୍ଧାନ । ତେଣୁ ସମକାଳର ସମାଲୋଚକ ଯଦି ସାମ୍ପ୍ରତିକ କବିତାର ବିଗ୍ରହ କରିବସନ୍ତି, ସେଥିରେ ଅତିପରିଚୟରେ ତାହାର ଗୌରବ ନଷ୍ଟ ହେବନାହିଁ ବୋଲି ବିଶ୍ୱାସ । (୩)

ଆଜି ଅନେକଙ୍କ ଧାରଣା କବିତାର କ୍ଷେତ୍ର ସଙ୍କୁଚିତ ହୋଇଆସୁଚି । କାରଣ, ଜୀବନ ହେଉଛି କ୍ରମଶଃ ବୈଚିତ୍ର୍ୟହୀନ । ଷ୍ଟାଣ୍ଡାର୍ଡାଇଜେସନ୍ ଶିକ୍ଷା, ଆବାସ ସ୍ଥଳ, ବ୍ୟବହାର୍ଯ୍ୟ ସାମଗ୍ରୀ, ନଗର ଓ ଜନପଦ, ବ୍ୟକ୍ତିଗତ ଜୀବନ ଓ ସାଧାରଣ ଜୀବନ—ସର୍ବତ୍ର ରାଜତ୍ୱ କରିବାକୁ ବସିଛି । ସର୍ବତ୍ର ସାଧାରଣ, ସମାନ ବା ପ୍ରମାଣମାନର ଧ୍ୱନି । କବିତା ନିଃସଙ୍ଗ ଏକକତା, ମହାନ୍ ବୈଚିତ୍ର୍ୟ, ଅପୂର୍ବ ଅନିର୍ବଚନୀୟ କିଛି ପ୍ରକାଶ କରିବାର କ୍ଷେତ୍ର ପାଉନାହିଁ । ଜୀବନର ପ୍ରତି ମୁହୂର୍ତ୍ତରେ ପ୍ରତି କ୍ଷେତ୍ରରେ ଆମର ଅନୁଭୂତି ଯଦି ଏକ ପ୍ରକାର ହୁଏ, ଏଥିରେ ନବୀନତା ଓ ଗଭୀରତାର ଯଦି ସ୍ପର୍ଶ ନଥାଏ, କବିତା ଲାଗି

ଉପାଦାନ, କବିତା ରଚନାର ପରିବେଶ, କାହ୍ୟାଙ୍କ ପୂର୍ବେରିଷ୍ଟି, କବିହୃଦୟ ବ୍ୟକ୍ତିଙ୍କ ପ୍ରଭାବଶ୍ରେଣେ ସଙ୍କୁଚିତ ହୋଇଯିବା ବିଚିତ୍ର ନୁହେଁ । ଯାହାର ଶେଷ ପରିଣତି ମୃତ୍ୟୁ ।

କବିତାର ମୃତ୍ୟୁ ଅକଳ୍ପନୀୟ । କବିତା ହୃଦୟଭେଦୀ । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ସେତୁ ଗଢ଼ୁଛି ନଗର ଓ ଜନପଦ ମଧ୍ୟରେ, ଦେଶ ଦେଶ ମଧ୍ୟରେ, ହୁଏତ ଏଇ ସେତୁ ଗଢ଼ାଯିବ ଗ୍ରହ ଗ୍ରହାନ୍ତରେ । ପୃଥିବୀ ଆଜି କ୍ଷୁଦ୍ର ହେଉଛି, ମାତ୍ର କେତେ ଘଣ୍ଟା ମଧ୍ୟରେ ରକେଟ୍ ବିମାନ ସାହାଯ୍ୟରେ ଏକ ପ୍ରାନ୍ତରୁ ଅପର ପ୍ରାନ୍ତକୁ ଉଡ଼ିଯିବା ସମ୍ଭାବନାର ଦ୍ୱାରଦେଶରେ ଆମେ ଉପନୀତ । କଥା ଓ ଆଲୋକଚିତ୍ର ସାହାଯ୍ୟରେ କୃତ୍ରିମ ଉପଗ୍ରହ ଜରିଆରେ ପୃଥିବୀର ଯେ କୌଣସି ସ୍ଥାନର ଯେ କୌଣସି ବ୍ୟକ୍ତିଙ୍କ ସାକ୍ଷାତ୍ ଆମେ ପାଇପାରୁ ଯେ କୌଣସି ମୁହୂର୍ତ୍ତରେ । ଆମେ ଆଜି ଏକ ପୃଥିବୀର, ଏକ ନଗରର, ଏକ ଜନପଦର, ଏପରି କି ଏକ ବିଶାଳ ଆବାସର ଅଧିବାସୀ ହେବାରେ ଦୈହିକ, କାଳ ବା ସ୍ଥାନଗତ କୌଣସି ବ୍ୟବଧାନ ନାହିଁ । ଏହା ବିଜ୍ଞାନର ଦାନ । ଅଥଚ ସବୁର ଆମେ ଜନତା, ହାଉଡ଼ । ଇଂରେଜୀରେ ଗୋଟିଏ କଥା ଅଛି, "ହାଉଜ୍ ଇଜ୍ ନଟ୍ ଏ ସବ୍‌ଷ୍ଟିଚ୍ୟୁଟ୍ ଫର୍ କମ୍ପାନିୟନ୍ ।" ଭାଗବତର ବାଣୀ ହେଉଛି, "ଅନେକ ଲୋକ ଯହିଁ ମିଳି, ଅବଶ୍ୟ ଉପୁଜଇ କଳି ।" ଆଜି ଏଇ କଳି ଯେପରି, ବଢ଼ି ତୀବ୍ର ହୋଇ ଉଠୁଚି ବିଜ୍ଞାନର ଏକୀକରଣ ପ୍ରକ୍ରିୟାରେ । ରକ୍ଷାର ଉପାୟ କଣ ? ନିଶ୍ଚୟ ଏହି ଏକୀକରଣ ପ୍ରକ୍ରିୟା ମନ୍ଥର ବା ରୁଦ୍ଧ କରିବା ନୁହେଁ । ଏହାର ଫଳ ହେବ ବିପରୀତ । ଏକ କୋଠରୀରେ ନ ରହିଲେ ବାହାରେ ହିମଶୀତ/ରୌଦ୍ରର ଝଡ଼ରେ ମୃତ୍ୟୁ । ଏକାଠି ରହିଲେ ଅସଂଖ୍ୟ ଅଙ୍ଗାର ଅଣୁର ବିଷରେ ମୃତ୍ୟୁ ।

ବଞ୍ଚିବାର ପଥ କବିତାରେ, ମାନବ ହୃଦୟରେ ସେତୁ ରଚନାରେ ଖୋଜିବାକୁ ହେବ । ବର୍ତ୍ତମାନ ଜୀବନର ବଡ଼ ଶତ୍ରୁ "ଷ୍ଟାଣ୍ଡାର୍ଡାଇଜେସନ୍" କାଳକୁ କବିତା କେବଳ ପୋଛି ଦେଇପାରେ । ଏହି ଦିଗରେ ଆଜି ବହୁ କବି ସଚେତନ । ମାତ୍ର ସମସ୍ତଙ୍କର ପନ୍ଥା ଏକ ନୁହେଁ, ଯଦିବା ଲକ୍ଷ୍ୟର ଅଭିନ୍ନତା ଲକ୍ଷଣୀୟ । ଏଥିଲାଗି କେହି ସ୍ୱଦାନ୍ତ · ନବ ନବ ପରୀକ୍ଷା ଓ ପ୍ରୟୋଗ । ଏହି ଚିନ୍ତାରେ କେହି ପ୍ରାକୃତର ବିକୃତି ଘଟାନ୍ତି, ଭାଷାକୁ ଇଙ୍ଗିତ ସ୍ତରକୁ ନେଇଯିବାକୁ ଚାହାନ୍ତି, କେହି ବା ଶବ୍ଦକୁ ଅର୍ଥମୁକ୍ତ କରି ସ୍ୱାଧୀନତାର

ସ୍ୱାଦ ଭୋଗ କରିବାକୁ ଶ୍ରାନ୍ତ, ପୁଣି କେହି ବା ନିରର୍ଥକ ଅବ୍ୟୟ ଓ ପ୍ରତିନାମ ଶୂନ୍ୟତାରେ କବିତାକୁ ମରୀଚିକାମୟ ମରୁଭୂମିରେ ପରିଣତ କରିବାକୁ ଶ୍ରାନ୍ତ । ପଥ ଖୋଜିବା ଅଧିକାର ସମସ୍ତଙ୍କର, ଯଦିବା ପଥ ଦେଖାଇବାର ଯୋଗ୍ୟତା ଜଣେ ଅନ୍ଧ ଅର୍ଜନ କରିଛନ୍ତି ।

ଆଜି ପ୍ରତି ଜନସଭାରେ, ରାଜନୀତି ମଞ୍ଚରେ, ସାମାଜିକ ଜୀବନରେ ସମସ୍ତେ ଏକତା ଖୋଜିବାରେ, ଏକତା ରକ୍ଷା ପାଇଁ ଆହ୍ୱାନ ଦେବାରେ ବ୍ୟସ୍ତ । ଅବଶ୍ୟ ଏହି ଏକତା ଅନେକ ପରିମାଣରେ କାଳ୍ପନିକ ଓ ଯଥାର୍ଥ ସମ୍ପର୍କଶୂନ୍ୟ । ତେବେ ଏଇ କଳ୍ପିତ ଏକତା ଦେଶ, ଜାତି ଓ ସମାଜ ଜୀବନରେ ପ୍ରତିଷ୍ଠିତ ହୋଇଗଲେ, ଅନେକ ସୁଫଳ ମିଳିବା କଥା ଅନେକ ନେତା କହିଥାନ୍ତି । କେହି କହନ୍ତି ଜାତି ବଡ଼ ହେବ, ସାମାଜିକ ବୈଷମ୍ୟ ଦୂର ହେବ, ପ୍ରଗତି ତ୍ୱରାନ୍ୱିତ ହେବ, ବିଶ୍ୱମାନବତାର ଭିତ୍ତି ଦୃଢ଼ ହେବ, ଯୁଦ୍ଧ କଳହର ଅବସାନ ଘଟିବ । ଏହି ଏକତା ଲାଗି ପ୍ରୟୋଜନ ଅନେକ ବଳି । ପ୍ରଥମ ବଳି ମାନବିକ ବିଶେଷତା ଓ ବୈଚିତ୍ର୍ୟର । ଦ୍ୱିତୀୟ ବଳି ତାହାର ଏକାନ୍ତ ଆପଣାର ଘର— ଶୂନ୍ୟବିହାରୀ ପକ୍ଷୀର ଶ୍ରାନ୍ତ ପକ୍ଷର ଏକମାତ୍ର ଆଶ୍ରୟସ୍ଥଳ ସେଇ ସାମାନ୍ୟ ଘରଟିର ।

"ମୋ ମନ ଯଦି କେହି ନ ପାରେ ବୁଝି
ମୋ ବିଶ୍ୱ ରଚିବି ମୁଁ ନୟନ ବୁଜି ।" (୪)

ଏହା ଉଚ୍ଚାରଣ କରିବା ଯେପରି କବି ମନୁଷ୍ୟର ଅଧିକାରର ବାହାରେ । ମାତ୍ର ଏହି ଅଧିକାର ରକ୍ଷାର୍ଥେ କବିର ଧର୍ମ, କବିତାର ଆଦର୍ଶ । ଜଣେ ସାମ୍ୟବାଦୀ ତରୁଣ ପାଶ୍ଚାତ୍ୟ କବିଙ୍କ ଉକ୍ତି ଅନୁଧ୍ୟାନ କରାଯାଇପାରେ— "ବିଶ୍ୱସାହିତ୍ୟ ଧାରଣା ଗ୍ୟେଟେ ପ୍ରଥମେ ଦେଇଥିଲେ । ଅବଶ୍ୟ ସେ ମନେ କରୁଥିଲେ ପ୍ରକୃତରେ ବିଶ୍ୱସାହିତ୍ୟର ପ୍ରତିଷ୍ଠା ପାଇଁ ସମୟ ସେତେବେଳେ ଅନୁକୂଳ ନଥିଲା । କିନ୍ତୁ ଗତ ଶହେ ବର୍ଷ ମଧ୍ୟରେ ସାରା ପୃଥିବୀରେ ଏକ ସଂହତି ଗଢ଼ି ଉଠୁଛି, ଯାହାର ପ୍ରଭାବ ସାହିତ୍ୟ କ୍ଷେତ୍ରରେ ଲକ୍ଷଣୀୟ । ଆଜି ଆମେ କହିପାରୁ ସାରା ଜଗତରେ ଆଧୁନିକ କବିତା ଏକ ପ୍ରକାର ନିଜସ୍ୱ ବିଶ୍ୱଭାଷା ଅର୍ଜନ କରିଛି । ପ୍ରତି ଦେଶର କାବ୍ୟିକ ଭାଷାର ଗଠନ ମଧ୍ୟରେ ଏକ ସାମଞ୍ଜସ୍ୟ ଦେଖିବାକୁ ମିଳିବ ।"

ସାହିତ୍ୟର ଇତିହାସରେ ଏହାକୁ ଅବଶ୍ୟ କେହି କହିପାରନ୍ତି, ଏକ ଉପରେ ଅନ୍ୟର ପ୍ରଭାବ । ମାତ୍ର ମୁଁ ମନେକରେଁ, ଏହା ଆର୍ଥିକ ଓ ଯାନ୍ତ୍ରିକ ପ୍ରକ୍ରିୟା ସହ ସମନ୍ୱିତ ଏକ ଧାରା । ଏହା ଆମେ ଚାହୁଁ ବା ନ ଚାହୁଁ ଆମ ଏହି ପୃଥିବୀକୁ ଏକ ବିଶ୍ୱ କରି ଚାଲିଛି ।

ଅନ୍ୟ ପକ୍ଷରେ ଏକ ଐକ୍ୟ, ସଂହତି, ବିଶ୍ୱଜନୀନତା ଏକ ଭୟଙ୍କର ଧାରଣା । କାରଣ ଏଇ ଏକରୂପତା ଏକ ଦାରିଦ୍ର୍ୟ । ସବୁଠି ଏକା ଲୋକ, ଏକା ଖାଦ୍ୟ, ଏକା ଦୃଶ୍ୟ, ଏକ ପ୍ରକାର କବିତା...ଜୀବନ ତାହାହେଲେ କେତେ ଦୟନୀୟ ନ ହେବ ! ମୁଁ ମନେକରେ, କବିତାରେ ଏପରି କିଛି ଆତ୍ମିକ ଶକ୍ତି ଅଛି, ଯାହା ଆମକୁ ଏହି ଦୁର୍ଦ୍ଦଶାରୁ ବଞ୍ଚାଇ ପାରେ । ଜାତି କଥାଟି ମୋତେ ସୁଖ ଲାଗେନାହିଁ । ଏଇ ଯେଉଁ ଆତ୍ମରକ୍ଷାର ଶକ୍ତି, ତାକୁ କୁହାଯାଇପାରେ ଆଞ୍ଚଳିକତା'ର ଶକ୍ତି, ଦି ଫୋର୍ସ ଅଫ୍ ପ୍ରଭିନ୍‌ସିୟାଲିଜମ୍ । ମୋ ମତରେ ଏହାର ଅର୍ଥ ହେଉଛି କୌଣସିଠାରେ ଘର ଖୋଜି ପାଇବା । 'ଟୁ ବି ଏଟ୍ ହୋମ ସମ୍ ହୋଏର' । ଏଥିଲାଗି ଜାତି ଦରକାର ନାହିଁ, ଏଇ ଘର ଗୋଟିଏ ଗାଁ ହୋଇପାରେ, ହୋଇପାରେ ଗୋଟିଏ ଖେତଖମାର, ଅଥବା କୌଣସି ଗୋଟିଏ ଦ୍ୱୀପରେ ଏକୁଟିଆ ଗୋଟିଏ ଘର । ଏହାର ବିଶେଷତା ଓ ଯଥାର୍ଥ ରୂପ ବିଷୟରେ କବିଙ୍କର ଧାରଣା ଥିବା ଦରକାର । ଅବଶ୍ୟ କବିଙ୍କୁ ଖୁବ୍ ସାବଧାନରେ ଭାରସାମ୍ୟ ରକ୍ଷା କରିବାକୁ ପଡ଼ିବ । ସେ ଯଦି ପୂରା ମାତ୍ରାରେ କେବଳ ଆଞ୍ଚଳିକ ହୋଇପଡ଼ନ୍ତି, ତାଙ୍କର ସ୍ଥାନ ହେବ କୌଣସି ସ୍ଥାନୀୟ ଯାଦୁଘରେ । ସେ ନିଜ ପାଇଁ କେବଳ ଘର ପାଇବେ, ମାତ୍ର ଆଖି ଆଗରେ କୌଣସି ଦିଗ୍‌ବଳୟ ଦେଖି ପାରିବେ ନାହିଁ । ଆଉ ଯଦି ସେ କେବଳ ସାର୍ବଜନୀନ ହେବାକୁ ବସନ୍ତି, ତାହାହେଲେ ତାଙ୍କ ଆଗରେ ଏକ ବଡ଼ ଦିଗ୍‌ବଳୟ ଖୋଲିଯିବ; ମାତ୍ର ସେଥିରେ ସେ କିଛି ଦେଖିବାକୁ ପାଇବେ ନାହିଁ । ତାଙ୍କ କବିତା ହେବ ଏକ ଶୂନ୍ୟ ଆକୃତିର, ସ୍ଥିର ରୂପ ମରୁଭୂମି ଭଳି । ଏଇ ବିରୋଧ, ବୈପରୀତ୍ୟର ସହଜ ସମାଧାନ ସମ୍ଭବ ନୁହେଁ ।— ଯାହାହେଉ, କୌଣସି 'ହାରମୋନି'ରେ ବିଶ୍ୱାସ କରିବାର ମୁଁ ପକ୍ଷପାତୀ ନୁହେଁ—। (୫)

ଏଇପରି ଏକାନ୍ତ ଆପଣାର ଓ ହୃଦୟର ନିକଟବର୍ତ୍ତୀ ଗୋଟିଏ ମାଢ଼ ରଚନାର ପ୍ରୟାସ ସହସ୍ର ସହସ୍ର ବର୍ଷର ବିକଶିତ ଓଡ଼ିଆ କବିତାରେ ଦେଖିବାକୁ ମିଳେ ।

କାଳରେ ଆମର ଅନେକ କବି ପ୍ରାଚୀନ; ମାତ୍ର ଭାବରେ ଆମର ଅତି ନିକଟବର୍ତ୍ତୀ । ସାରଳା, ବଳରାମଙ୍କଠାରୁ ଘନକୃଷ୍ଣଙ୍କ ପର୍ଯ୍ୟନ୍ତ କବିମାନଙ୍କଠାରେ ଆମର ଆଧୁନିକତମ ଚିନ୍ତାର ଦୋସର ଖୋଜା ଯାଇପାରେ । ସାମ୍ପ୍ରତିକ ଓଡ଼ିଆ କବିତା ଏଇ ପରମ୍ପରାର ଅନୁବର୍ତ୍ତନ ମଧ୍ୟରେ କେବଳ ଆମର ଅତି ଆପଣାର ଘରୋଇ ସଂସାର ରଚନା କରିପାରେ । କାରଣ ଏଇ କବିମାନଙ୍କ ଅଙ୍ଗାରଅଣୁ ଆଜି କେବଳ ଆମ ବାୟୁମଣ୍ଡଳରେ ନାହିଁ, ଏମାନଙ୍କର ଜୀବନକଣିକା ଆମ ଦେହ ସତ୍ତ୍ୱରେ ବିଦ୍ୟମାନ । ଏଇ କବିମାନେ ଆମର ଧୂଳିଧୂସରିତ, ତୁଚ୍ଛାତିତୁଚ୍ଛ ପଦାର୍ଥ ସମ୍ବଳିତ ଗୃହଅଙ୍ଗନ କରିବାକୁ ଚାହିଁଥିଲେ ଭାବରେ ମହାନ, ସମ୍ପଦରେ ଶାଶ୍ୱତ ଶ୍ରୀକ୍ଷେତ୍ର । ଶ୍ରୀକ୍ଷେତ୍ର ମହୋଦଧି କୂଳର ନଗର ବିଶେଷ ନୁହେଁ । ଏହା ଭାବ ବିଶେଷ । ଆଦର୍ଶ ବିଶେଷ । ଏହା ଭୀରୁକୁ କରେ ସାହସୀ, ମୃତକୁ ଦିଏ ଅମୃତଲୋକର ସନ୍ଧାନ । ଘନକୃଷ୍ଣଙ୍କ ଅନନୁକରଣୀୟ ଭାଷାରେ ଏହାର ବର୍ଣ୍ଣନା ଲକ୍ଷ୍ୟ କରାଯାଇପାରେ—

କଥା ନ କହନ୍ତି ଜଗତ ମୋହନ୍ତି
ସବୁଠାରେ ସମଗୁହାଁ,
କାଳଦଣ୍ଡ ଭସ୍ମ କରିବାକୁ କ୍ଷମ
ନିରନ୍ତରେ ଊର୍ଦ୍ଧ୍ୱ ବାହା ।
କରନ୍ତି ମଣୋହି ଯେଉଁ ଦ୍ରବ୍ୟ
ତହିଁ ମହିମା ଅତି ବିଚିତ୍ର,
କୁଶକେତୁ ନେଇ ଆନନ୍ଦେ ଭକ୍ଷଇ
ଥିଲେ ମାତ କରପତ୍ର ।
କରୁଥିଲେ ଗତି ପରିକ୍ରମା ମତି
କଳହ ସ୍ମୃତି ପରସ୍ପେ,
କରନ୍ତେ ଆମିଷ ଆନ୍ଧ ଦ୍ରବ୍ୟ ଗ୍ରାସ
ହବିଷ୍ୟ କର୍ମକୁ ପାଏ ।
କଲେ ନିଦ୍ରା ଯହିଁ ଦଣ୍ଡ ପ୍ରମାଣହିଁ
ଫଳ ହୋଅଇ ପ୍ରାପତ;
କଳହାଣ୍ଡି ସୁତ ଯୋନକର
ଭୃତ୍ୟମାନେ ଜୀବନମୁକତ ।

କରିଥିଲି ଆଶ ସେ କ୍ଷେତ୍ରେ
ନିବାସ କରିବାକୁ ଘନକୃଷ୍ଣ,
କି ଅଭାଗ୍ୟ ତହିଁ ନ ପାରିଲି ରହି
ପ୍ରଭୁ ନୋହିଲେ ସନ୍ତୁଷ୍ଟ । (୭)

ଜୀବନମୁକ୍ତି ଅବଶ୍ୟ ଏ ଯୁଗରେ ଆମର କାମ୍ୟ ନୁହେଁ । ପୁଣି କୌଣସି ପ୍ରଭୁଙ୍କର କରୁଣା ମଧ୍ୟ ଆମ ପ୍ରାର୍ଥନାର ବିଷୟ ନୁହେଁ । ଆମର ସାଧନାର ଲକ୍ଷ୍ୟ କିନ୍ତୁ ଆଜି ବି ଏକ ଓ ଅଭିନ୍ନ । ଆମର ସମସ୍ତ ଗ୍ରାସ ହେବ ହବିଷ୍ୟ । ଅତିଭକ୍ତି ଓ କ୍ଷୁଧା ନଥିବ । ଧନୀ ଓ ଦରିଦ୍ର, ଉଚ୍ଚ ଓ ନୀଚ ଭେଦ ନ ଥିବ, କଳହ ହେବ ସ୍ତୁତି । ନିଦ୍ରା ହେବ ସୁଖର ନିଦ୍ରା । ସର୍ବଜ ସବୁ ଅବସ୍ଥାରେ ଅଭୟ ଦେବାକୁ, ଏପରି କି ସମୟର ଦନ୍ତଘାତରୁ ରକ୍ଷା କରିବା ପାଇଁ କେହି ଜଣେ ପୁରୁଷୋତ୍ତମ ସମଦୃଷ୍ଟି ଓ ଊର୍ଦ୍ଧ୍ୱବାହୁ ହୋଇ ରହିଥିବେ । ଏହିଭଳି ଏକ ସ୍ୱପ୍ନରେ ସଂସାର ସବୁ କାଳରେ ସବୁ ଦେଶରେ ସଭ୍ୟମାନବର ଆଦର୍ଶ ହୋଇପାରେ ।

ଏଇ ଆଦର୍ଶରେ ଆଧୁନିକ ନାମ ଆଧୁନିକତା । ବିଜ୍ଞାନ ଓ ମାନବ ଜ୍ଞାନର ସମନ୍ୱୟରେ ଏହାର ରୂପ ଗଠିତ । ବହିର୍ମୁଖୀନ ସତ୍ୟୋପଲବ୍ଧି, ଆତ୍ମମୁଖୀ ତଦାତ୍ମ୍ୟବୋଧ ଏହାର ମୂଳକଥା । ଏହି ବୋଧ କର୍ମ ଓ ବିଶ୍ରାମରେ ଆଣି ଦିଏ ଏକ ଅନିର୍ବଚନୀୟ ଆନନ୍ଦ । ଏହି ଅନିର୍ବଚନୀୟର ଆନନ୍ଦର ପୃଷ୍ଠଭୂମିରେ କଳ୍ପନାର ତୁଳୀରେ ମଣିଷ କେତେ କଣ ଆଙ୍କିଥାଏ । ଏହାହିଁ ତାହାର ବିଶ୍ୱଜଗତ, ଏହା ତାହାର କବିତା ଓ କଳା । ଏଇଥିରେ ଆତଯାତ ହୁଅନ୍ତି ତାହାର ପାଖ ପଡ଼ଶା, ଶତ୍ରୁ ଓ ମିତ୍ର, ଏଇ ଜଗତରେ ସେ ପାଏ ଦେହର ସୁଖ, ଆତ୍ମାର ସନ୍ତୋଷ । ନିଜ ସୃଷ୍ଟ ଏଇ ଜଗତ ପ୍ରତି ମମତାର ଅନ୍ୟ ନାମ ମୈତ୍ରୀ । ଏଇ ମୈତ୍ରୀ ଫଳରେ ଆମର ଦୈନନ୍ଦିନ ଜୀବନ ଓ ପରିବେଶ ହୋଇଥାଏ ମଧୁର ଓ ଐଶ୍ୱର୍ଯ୍ୟମଣ୍ଡିତ । କାଳ, ସ୍ଥାନ ଓ ସ୍ଥାନ-କାଳର ବୈପାର୍ଶ୍ୱରଚିତ ଏଇ ବିଶ୍ୱରେ ଏହାକୁ କୁହାଯାଇ ପାରେ ଏକ ଚତୁର୍ଥ ପାର୍ଶ୍ୱ ବା ଡାଇମେନ୍‌ସନ୍ । (୭)

ଏଇ ସକଳ ଭାବ ଓ ଆଦର୍ଶ ସାମ୍ପ୍ରତିକ କବିତାରେ ବିକୀର୍ଣ୍ଣ ହୋଇ ଆମର ଚେତନାକୁ କି ପରିମାଣରେ ରୂପାନ୍ତରିତ କରୁଛି ବା କରିବା ସମ୍ଭବ— ଏହା କଳନା କରିବାପାଇଁ ଏକ ପଦ୍ଧତି ନିର୍ଭର କବିତା ତାତ୍ତ୍ୱିକ ବିଶ୍ଳେଷଣ

ଆବଶ୍ୟକ । ବ୍ୟକ୍ତିବିଶେଷ ପକ୍ଷରେ ଏଥିଲାଗି କୌଣସି ସାମର୍ଥ୍ୟ ବା ସାଧନ ଖୋଜି ପାଇବା ସମ୍ଭବ ନୁହେଁ । କି ସାମ୍ପ୍ରତିକ କି ଶାଶ୍ବତ ଓଡ଼ିଆ କବିତାର ସୀମା ଓ ଉପଭୋକ୍ତାଙ୍କର କୌଣସି ମାନଚିତ୍ର ରଚନାର ପ୍ରୟାସ ଏଯାବତ୍ ସମ୍ଭବ ହୋଇନାହିଁ । ଜୀବନ ଓ ଜଗତର ଆଘାତ ଓ ଗତି ସଙ୍ଗେ କଳା ସୃଷ୍ଟିର ପ୍ରବାହ କେହି ରୁଦ୍ଧ କରିପାରେ ନା । ମାତ୍ର ପ୍ରକୃତିର ଧାରାକୁ କଳ୍ପନାରେ ଛୁଇଁଦେବା ଓ ତାହାର ତତ୍ତ୍ୱ ଅନୁଧ୍ୟାନ କରି ଜୀବନର ବିକାଶ ସାଧନ କରିବା ଏକା କଥା ନୁହେଁ ।

ବର୍ତ୍ତମାନ ସାହିତ୍ୟର ସୃଷ୍ଟି ଅଛି, ସମୀକ୍ଷା ନାହିଁ, ଆଧୁନିକ କବିତା ବିଚିତ୍ର ଧାରାରେ ରଚିତ ହେଉଛି; ମାତ୍ର ଆଧୁନିକ କବିତା ତତ୍ତ୍ୱର ଆଲୋକରେ ତାହାର ମର୍ମଭେଦର ପ୍ରୟାସ ନାହିଁ । (୮) ତେଣୁ ହୁଏତ କଳା ଓ କବିତା ଚର୍ଚ୍ଚା ଆମର ଜୀବନକୁ ଯେ ଭାବରେ ଆତ୍ମସଚେତନ, ଉଦ୍ଧୋଳିତ ଓ ଆନନ୍ଦମୟ, ଆଲୋକିତ, ସୃଷ୍ଟିକ୍ଷମ, କ୍ରିୟାଶୀଳ ଓ ଶୃଙ୍ଖଳିତ କରିବାର କଥା, ତାହା କରିବାକୁ ସମର୍ଥ ହେଉନାହିଁ । ଏଇ ହତାଶ ପରିବେଶରେ ସୃଷ୍ଟିର ସାଧନା ବଞ୍ଚାଇ ରଖିବାକୁ ହେବ । ଆଧୁନିକ କବିମାନଙ୍କୁ ବୋଧହୁଏ ଏଥିପାଇଁ ଲୋକଜୀବନର ଢେଉର ଅନୁଧ୍ୟାନ କରିବାକୁ ହେବ । ଲକ୍ଷ୍ୟ କରିବାକୁ ହେବ, ସେମାନଙ୍କ ପ୍ରାଣ ପ୍ରକାଶରେ ଭାଷାର ଭୂମିକା । କବିତାରେ ନବ ନବ ରୂପ ଓ ଚିତ୍ର ଅଙ୍କନ ପାଇଁ ନାନା ନୂତନ ଓ ଅପରିଚିତ ନାମ ଓ କ୍ରିୟାର ସନ୍ଧାନ ଆହରଣ କରାଯାଇପାରେ । କିନ୍ତୁ ଅବ୍ୟୟର ଜଗତ ଯଦି କୌଣସି ଛନ୍ଦ ଓ ଅର୍ଥ ବହନ ନକରି, ପ୍ରାକୃତିକ ଜନ ଜୀବନ ସହିତ ସାମଞ୍ଜସ୍ୟ ରକ୍ଷା ନକରି ସମସ୍ତ କବିତା ରାଜ୍ୟରେ ଆଧିପତ୍ୟ ବିସ୍ତାର କରେ, ତେବେ ତାହା ଚେତନାହୀନ ମରୁରାଜ୍ୟରେ ପରିଣତ ହୋଇଯିବା ଅସମ୍ଭବ ନୁହେଁ । ଏବେ ଅନେକ ସାମ୍ପ୍ରତିକ କବି "ଏବଂ" ନାମକ ଗୋଟିଏ ସଂସ୍କୃତ ଅବ୍ୟୟ (ଅର୍ଥ ଏବଂପରି)—ଇଚ୍ଛାକୃତ ଭାବରେ କବିତାରେ ପୂରାଉଛନ୍ତି । ଏଇ ଶବ୍ଦର ଓଡ଼ିଆ ଧ୍ୱନି ସହ କୌଣସି ସାମଞ୍ଜସ୍ୟ ପ୍ରାୟ ନାହିଁ । ତେଣୁ ଇଂରାଜୀରେ 'ଆଣ୍ଡ୍' ଦ୍ୱାରା ଯେପରି ଛନ୍ଦ ରକ୍ଷାହୁଏ, ଓଡ଼ିଆରେ ବୋଧହୁଏ, 'ଏବଂ' ତାହା କରିବାକୁ ଅସମର୍ଥ । ଗଦ୍ୟରେ ଏହା ଅର୍ଥବିକୃତି ଘଟାଉଛି ବୋଲି ଓ ପ୍ରାକୃତିକ ଓଡ଼ିଆରେ ଏହା ପ୍ରୟୋଗସହ ନୁହେ ବୋଲି ସ୍ୱର୍ଗତଃ ନୀଳକଣ୍ଠ ଏହାର ବିରୋଧ କରୁଥିଲେ । ଏଠାରେ ଏଇ ପ୍ରଶ୍ନ ଉଠାଇବାର

ଉଦ୍ଦେଶ୍ୟ ହେଉଛି, ଭାବଗତ ଦୁର୍ବୋଧତାର ଅଭିଯୋଗ ସତ୍ତ୍ୱେ ଭାଷାଗତ ନବନିର୍ମାଣରେ ଏକ ସୁନାମ ଆଧୁନିକ କବିତା କ୍ରମଶଃ ଅର୍ଜନ କରୁଥିଲା । ଗତାନୁଗତିକ ଛନ୍ଦ ଭାଷାରେ ବାକ୍‌ଶକ୍ତିର ସମନ୍ୱୟ ସାଧନ କରି ସଚ୍ଚିଦାନନ୍ଦଙ୍କ ଭଳି ନବ ପଥସନ୍ଧାନୀ କବିମାନେ ନୂତନ ସିଦ୍ଧିର ଅଧିକାରୀ ହୋଇଥିଲେ । ମିତବାକ୍ ହେବା ଆଧୁନିକ କବିଙ୍କ ଏକ ଗୁଣ । ମାତ୍ର ଏବେ ସ୍ଫୀତବାକ୍ ହେବାକୁ କେତେ କେତେ ଭୟ କରୁ ନାହାନ୍ତି ।

ନିଜ ଭାଷା ପ୍ରତି ଦାୟିତ୍ୱ, ଶବ୍ଦ ପ୍ରତି ଦାୟିତ୍ୱ କବିଙ୍କର ଏକ ବଡ଼ ସାମାଜିକ ଦାୟିତ୍ୱ । ଅର୍ଥ ବୋଧର ଦାୟିତ୍ୱ ଅବଶ୍ୟ ତାଙ୍କର ନ ହୋଇପାରେ । ନିଜ କଥାର ଦାୟିତ୍ୱ ସମାଜର ଉଚ୍ଚ ସ୍ତରରେ ଅନେକ ପାଳନ କରୁନାହାନ୍ତି ବୋଲି ଆଜ ଜୀବନରେ ନାନା ବିପର୍ଯ୍ୟୟ ଘଟୁଛି । ଏ ଦିଗରେ ସାହିତ୍ୟିକ ଓ କବିମାନେ ଅନ୍ତତଃ ସଚେତନ ହେବା ଉଚିତ । ଆଧୁନିକ ଯୁଗର ଜଣେ ବଡ଼ କବି ପାଉଣ୍ଡଙ୍କ ଉକ୍ତିର ସ୍ମରଣ କରିଯାଇପାରେ ।

ଶବ୍ଦବିନା ଲୋକ ଚିନ୍ତା କରିପାରେ ନାହିଁ, ଭାବ ପ୍ରକାଶ କରିପାରେ ନାହିଁ, ଶାସକ ଓ ବ୍ୟବସ୍ଥାପକମାନେ ପ୍ରଭାବ ଖଟାଇ ପାରନ୍ତି ନାହିଁ, ଠିକ୍ ଭାବରେ ନିୟମ ରଚିତ ହୋଇପାରେ ନାହିଁ । ଏଇ ଶବ୍ଦର ସ୍ଥିରତା ଓ ମୂଲ୍ୟମାନ ଅବହେଳିତ ସାହିତ୍ୟିକଙ୍କ ଜିମାରେ । ଭାଷାରେ ସେମାନଙ୍କ କାରବାର । ବସ୍ତୁ ପ୍ରତି ଶବ୍ଦର ପ୍ରୟୋଗ ସେମାନଙ୍କ କାମ । ଏଥିରେ ଯଦି ଘୂଣ ଧରେ, ତେବେ ସାମାଜିକ ଓ ବ୍ୟକ୍ତିଗତ ଚିନ୍ତାର ସମସ୍ତ ସାଧନା ଓ ଶୃଙ୍ଖଳା ଧୂଳିସାତ୍ ହୋଇଯିବ । (୯)

ଆମର ଗୋଟିଏ ପ୍ରବାଦ ଅଛି—ଶ୍ରେଷ୍ଠ ମୁହଁରେ ବଡ଼ କଥା । ଏହି ବିଦ୍ରୂପ ମଧ୍ୟରେ ଯେଉଁ ସତ୍ୟଟି ପ୍ରଚ୍ଛନ୍ନ ରହିଛି, ତାହା ହେଉଛି, ଭାଷାହିଁ ଆମର ବଡ଼ ଅହଙ୍କାର । ଆତ୍ମୋନ୍ନତି ଓ ଆତ୍ମୋପଲବ୍ଧିର ବଡ଼ ସାଧନ । ଭାଷାରେ ପ୍ରାଣର ଭାବ ପ୍ରତିଷ୍ଠିତ ହେଲେ ମାନବର ଜୀବନ ଧନ୍ୟ ହୋଇପାରେ । ଜୀବନର ସକଳ କ୍ଷେତ୍ରରେ ନିଜ ମାତୃଭାଷାର ପ୍ରତିଷ୍ଠା ଅର୍ଥ ଏଇ ବିଶାଳ ବିଶ୍ୱଜଗତରେ ନିଜର ବୋଲି ଗୋଟିଏ ନୀଡ଼ ରଚନା କରିବା । ଏଇ ଜଗତ ସ୍ଥାନ ଓ କାଳରେ ରଚିତ ଏକ ବିଚିତ୍ର ନିର୍ମୀୟମାନ ମଧୁକୋଷ । ସମୟ ଓ ସ୍ଥାନର ଏକ ଏକ ନିର୍ଦ୍ଦିଷ୍ଟ ବିନ୍ଦୁରେ କେତେ ନୂତନ କୋଷ ରଚିତ ହେଉଛି ।

ସ୍ଥାନରେ ଚିରନ୍ତନ ଓ କାଳରେ ଅତ୍ୟ ନୂତନ ଗୋଟିଏ କୋଷ ହେଉଛି ମନୁଷ୍ୟ । ଏହି ମନୁଷ୍ୟ ବାଛି ନେଇପାରେ ତାହାର ଆହାର, ତାହାର ବେଶ, ଧନ । କିନ୍ତୁ ନିଜ ଆବିର୍ଭାବର ସ୍ଥାନ ଓ କାଳ କେହି ବାଛି ନେଇପାରେନା । ଏଇ ଅଧିକାର ମହାନ୍ ପ୍ରକୃତିମାତା ଛଡ଼ା ଆଉ କାହାର ନାହିଁ । ତେଣୁ ଯେଉଁ ମାଟିରେ ଆମେ ପ୍ରଥମେ ପାଦ ଦେଲୁ, ଆଲୋକ ଦେଖିଲୁ, ଯେଉଁ ଭାଷାରେ ପ୍ରଥମେ କଥା କହି ଶିଖିଲୁ, ତାହା ଆମ ନିକଟରେ ପ୍ରିୟ ଓ ଶ୍ରେଷ୍ଠ ବିବେଚିତ ହେବା ସ୍ୱାଭାବିକ । ଏହାର ବୈଶିଷ୍ଟ୍ୟ ରକ୍ଷା କରିବାପାଇଁ ପୃଥିବୀର ଶ୍ରେଷ୍ଠ ଜ୍ଞାନଭଣ୍ଡାର ଲୁଣ୍ଠନ କରିବାକୁ ହେବ, ଦେଶ ବିଦେଶର ନଗରେ ନଗରେ ଆଲୋକର ସନ୍ଧାନ କରିବାକୁ ହେବ, ପୁଣି ଫେରିଯିବାକୁ ହେବ ଉତ୍କଳର ପଲ୍ଲୀପ୍ରାନ୍ତରକୁ ଜୀବନର ପ୍ରାଣବାଣୀର ଗଙ୍ଗୋତ୍ରୀ ସନ୍ଧାନ ପାଇଁ । ସାଧନାର ପଥ ବଡ଼ ଦୁର୍ଗମ । ପ୍ରାଣର ପ୍ରିୟତମ ସେଇ ସୌନ୍ଦର୍ଯ୍ୟର ଦେବୀଙ୍କୁ ସାକ୍ଷୀ ରଖି କହିବାକୁ ହେବ—

"ମୃତ୍ୟୁ ଯଦି ଆସେ ଅକସ୍ମାତ୍
ଏଠି ତାର ଅର୍ଥ ଅଛି
ସର୍ବ ଋତୁ ପୁଷ୍ପର ଉଦ୍ୟାନେ
ତୁମେ ଯଦି ହେବ ଲତା ଏକ
ହୋଇ ଡହିଁ କୁସୁମ ଅନେକ
ମୁଁ କଣ ଫୁଟିବି ନାହିଁ ?
ଜୀବନେ କି ଲଭ
ଅବା ମରଣେ କି କ୍ଷତି ?
ହେ କାଞ୍ଚନବର୍ଣ୍ଣ (୧୦)

ସୂଚନା

---

୧। The Language of Paradox. See : The Well Wrought Urn. Cleanth Brooks HB 11 : Harvest Books-P. 20

୨। Public Worlds : Private Countries
See : The Chequered Shade : Chs. 6 & 7

୩ । "ଓଡ଼ିଆ ସାହିତ୍ୟ ଓ ଭାଷା : ଏକ ଅଧ୍ୟୟନ"-ଡକ୍ଟର ନରେନ୍ଦ୍ର ନାଥ ମିଶ୍ର ପ୍ରକାଶକ-ଜଗନ୍ନାଥ ରଥ, କଟକ-୧୯୬୮ । ଦେଖ—ସମକାଳୀନ ରଚନା ଓ ସାହିତ୍ୟ ଗବେଷଣା ।

୪ । କାଳିନ୍ଦୀଚରଣଙ୍କ କବିତା ପଂକ୍ତି ।

୫ । Soviet Literature No, 3,1967, Poets of Five Continents at a round-table conference.

୬ । ରସକଲ୍ଲୋଳ—ଦୀନକୃଷ୍ଣ

୭ । ମାନୁଷ ଓ ବିଶ୍ୱଜଗତ, ଶ୍ରୀ କାଳିଦାସ ଭଟ୍ଟାଚାର୍ଯ୍ୟ, ବିଶ୍ୱଭାରତୀ ପତ୍ରିକାବର୍ଷ ୧୯, ସଂଖ୍ୟା ୧

୮ । 'ଓଡ଼ିଆ ସାହିତ୍ୟ ଓ ଭାଷା : ଏକ ଅଧ୍ୟୟନ' ପୁସ୍ତକର 'ଆଧୁନିକ କବିତାତତ୍ତ୍ୱ' ପ୍ରବନ୍ଧ ଦ୍ରଷ୍ଟବ୍ୟ ।

୯ । Literary Essays of Fzra Pcund. Ed. T. S. Eliot P. 21

୧୦ । କୁଞ୍ଜବିହାରୀ ସଞ୍ଚୟନ : ପ୍ରଥମ ଭାଗ-ଦ୍ୱିତୀୟ ସଂସ୍କରଣ : ୧୯୬୪ ଆଲବମ୍ : ଜୀବନେ କି ଲାଭ ? ମରଣେ କି କ୍ଷତି ।



# ଆଧୁନିକ କବିତାର ବିମ୍ବ

ସାଂପ୍ରତିକ କବିତାର ପରିସର କୌଣସି ଦେଶ ଭିତରେ ସୀମିତ ହୋଇ ରହିନାହିଁ । ଅଧିକନ୍ତୁ ନାରଦଙ୍କ ଭଳି ତା'ର ପ୍ରବେଶ ସର୍ବତ୍ର ଅବାରିତ ଓ ସରସ୍ୱତୀଙ୍କ ହଂସପରି ତାହା ଅଗାଧ ବାରିଧିରେ ବୁଡ଼ିପାରେ, ଅନନ୍ତ ମହାକାଶରେ ଉଡ଼ିପାରେ ଏବଂ ପୃଥିବୀପୃଷ୍ଠରେ ସ୍ୱଚ୍ଛନ୍ଦରେ ବିଚରଣ କରିପାରେ । ଜୀବନର ବିଚିତ୍ର ଅନୁଭୂତି, ପ୍ରଭୂତ ଅଭିଜ୍ଞତା, ଦେଶ ବିଦେଶର ବାର୍ତ୍ତାମାନଙ୍କ ଘଟଣା ସମ୍ବିତ ଏହା ନିବିଡ଼ ଭାବରେ ସଂପୃକ୍ତ ଓ ଭବିଷ୍ୟତର ବାର୍ତ୍ତାବହ । ତାହାର ଏତେ ବାର୍ତ୍ତା ମଧ୍ୟରେ ଆମେ କାହାର ସନ୍ଧାନ ପାଉଁ ? ସତ୍ୟର ? ଶିବର ? ନା ସୁନ୍ଦରର ? ନା ଏଇ ତିନିଟାକୁ ବାଦଦେଇ ଆଉ କୌଣସି ଚତୁର୍ଥର ? ଯାହାର ବିଶ୍ଳେଷଣ ହୁଏତ ହୋଇଛି ଅନେକ; କିନ୍ତୁ ସାର୍ଥକ ସଂଜ୍ଞାଟିଏ ନିରୂପିତ ହୋଇ ପାରିନାହିଁ । ଏଇସବୁ ଅନ୍ୱେଷଣର ପ୍ରବଳ ଇଚ୍ଛା, ଆମକୁ ତା'ର ସ୍ୱରୂପ ପ୍ରତି ଆକୃଷ୍ଟ କରାଏ, ଆମକୁ ତା'ର ପ୍ରତିବିମ୍ବ ନୁହେଁ, ବିମ୍ବ ଦର୍ଶନରେ କୌତୂହଳୀ ଓ ଆଗ୍ରହୀ କରିତୋଳେ ।

## ହ୍ୟୁମ୍‌ଙ୍କ ସିଦ୍ଧାନ୍ତ

ଭର୍ସେଲିସ୍ ସନ୍ଧିର ଅବ୍ୟବହିତ ପୂର୍ବରୁ ବା ପରେ କବିତାର ଏକପ୍ରକାର ନୂତନ ଫସଲ ଅମଳ କରାଗଲା । ଏହା ମାନବବାଦ ଓ ସ୍ୱାଚ୍ଛନ୍ଦ୍ୟବାଦ (Romanticism) ବିରୁଦ୍ଧରେ Hulme ସିଦ୍ଧାନ୍ତରୁ ପ୍ରସୂତ । ଏଜରା ପାଉଣ୍ଡ ଏବଂ ଟି. ଏସ୍. ଏଲିଏଟ୍ ଆଧୁନିକ କବିତାର ସ୍ୱରୂପ ଓ ଧ୍ୟାନ-ଧାରଣା କରିବା ପୂର୍ବରୁ Thomas Earnest Hulme (୧୮୮୩-୧୯୧୭) ତାହା କରି ସାରିଥିଲେ । କବିତାର ବିଶୃଙ୍ଖଳ, ଶୃଙ୍ଖଳା, ସଂକ୍ଷେପ, ସ୍ପଷ୍ଟତା, ସାନ୍ଦ୍ରତା, ବସ୍ତୁର ଉଚିତ ପରିବେଷଣ, ଶକ୍ତ ସ୍ପଷ୍ଟ ଓ ସଂକ୍ଷିପ୍ତ ଚିତ୍ରକଳ୍ପ—ଏ ସବୁକୁ ସେ କବିତାର ବେଲେନ୍ସ ସିଟ୍‌ରେ Good side of the

Ledger ରେ ଏବଂ ସ୍ୱାଚ୍ଛନ୍ଦ୍ୟବାଦ, ମାନବବାଦ, ମଣିଷର ଅସୀମ ଶକ୍ତିରେ ବିଶ୍ୱାସ, ଭାବପ୍ରବଣତା, ପୁନର୍ଜାଗରଣ, ଗଣତନ୍ତ୍ର ଓ ଅହଂସର୍ବସ୍ୱ କବିତାକୁ ସେ Bad side of the ledgerରେ ରଖିଥିଲେ । ସେ କହୁଥିଲେ ଯେ, କବିତାରେ ଶସ୍ତା ଭାବପ୍ରବଣତା ବା ଭାବ ଜଡ଼ତା ନ ଥିବ, ଥିବ Hardness and clarity । ଉପସ୍ଥାପନକୁ ସମୃଦ୍ଧ କରୁ ନଥିବା ପ୍ରତ୍ୟେକ ଶବ୍ଦର ନିଷ୍କାସନ ବା ବହିଷ୍କରଣ ପାଇଁ ସେ ଦାବୀ କରୁଥିଲେ । ସେ ଚିତ୍ରକଳ୍ପଗୁଡ଼ିକ ସାର୍ଥକ ଓ ଘନ ହେବା ଉଚିତ ବୋଲି କହୁଥିଲେ । ଅର୍ଥକୁ ସମୃଦ୍ଧ କରୁ ନ ଥିବା ପ୍ରତ୍ୟେକ ଶବ୍ଦର ପରିତ୍ୟାଗ ଓ କୃତ୍ରିମ ମାତ୍ରିକ ନିଗଡ଼ର ଅନୁରୋଧ ଓ ବୃତ୍ତିଦାକୁ ପରିତ୍ୟାଗ କରିବା ସକାଶେ ସେ ଦୃଢ଼ ମତ ପୋଷଣ କରିଥିଲେ । Metrical regularity ସମ୍ବନ୍ଧରେ Pound ଓ Hulmeଙ୍କ ସହିତ ଫରାସୀ ପ୍ରତୀକବାଦୀ (Symbolists) ମାନଙ୍କର ସମାନ ମତ । ଏତିକି-ବେଳେ ଫରାସୀ ପ୍ରତୀକବାଦୀଗଣ ମୁକ୍ତ ପଦ୍ୟ (Verstibre) ଆରମ୍ଭ କଲେ ଏବଂ ତାହା ଇଂରାଜୀ ଚିତ୍ରକଳ୍ପବାଦୀ (Imagists) ମାନେ ଗ୍ରହଣ କରିନେଲେ । ପ୍ରତୀକବାଦର ଆନ୍ଦୋଳନ ହେଉଛି ଫ୍ରାନ୍ସର ଏବଂ ପ୍ରତିମାବାଦ (Imagism) ଆନ୍ଦୋଳନ ହେଉଛି ଇଂଲଣ୍ଡର ।

ଏହି ସମୟରେ ନୂତନ ଗଣରୋମାଣ୍ଟିକ୍ ଯୁଗଠାରୁ ଚଳି ଆସୁଥିବା ସମସ୍ତପ୍ରକାର କାବ୍ୟିକ ମାନର ବିରୋଧରେ ବିପ୍ଳବ ଆରମ୍ଭ କରିଦେଲେ । ଏହା ପ୍ରଧାନତଃ ବା ସମଗ୍ରତଃ ମାନବବାଦ (Humanism) ବିରୋଧରେ ଏକ କ୍ରାନ୍ତି । ମଧ୍ୟଯୁଗର ଭଗବତ୍ କେନ୍ଦ୍ରିକ (Theocentric) ଭାବକୁ ପରାଭୂତ ବା ସ୍ଥାନଚ୍ୟୁତକରିଥିବା ମାନବ କେନ୍ଦ୍ରିକ (Anthro Pocentric) ଜୀବନ-ଦର୍ଶନର ବିରୁଦ୍ଧରେ ଏହା ଏକ ବିପ୍ଳବ । ଏହି ବିପ୍ଳବର ନେତାମାନଙ୍କ ମତରେ ରେନେସାଁ (Renaissance)ର ପଶ୍ଚିମ ଇଉରୋପ ଗୋଟିଏ ଭୁଲ୍ ଦୃଷ୍ଟିକୋଣ ନେଇ ଭଗବାନ ବଦଳରେ ମଣିଷକୁ ସବୁ ବିଷୟର ଭାରକେନ୍ଦ୍ର ବୋଲି ମାନିନେଇ ଅବଶେଷରେ ଫରାସୀ ରାଷ୍ଟ୍ରବିପ୍ଳବ ବେଳକୁ ସାଂଘାତିକ-ଭାବରେ ପଥଭ୍ରଷ୍ଟ ହେଲା । ଏହି ସମୟରେ ରୁଷୋ, ମଣିଷକୁ ପ୍ରାଚୀନ ଧର୍ମବିଶ୍ୱାସରେ ଆସକ୍ତ କରି ରଖିଥିବା ଆଦିମ ପାପ (Original sin) ସିଦ୍ଧାନ୍ତର ସେହି ସର୍ବଶେଷ ନଙ୍ଗରକୁ ଫିଙ୍ଗି ପକାଇଲେ ।

nor less than a mosaic of words" ଏହି ଭାବନାଗୁଡ଼ିକ ଯୁଦ୍ଧର ଅବସାନ ପରେହିଁ ଫଳବତୀ ହୋଇଥିଲା । ଏହା ପରେ ଚିତ୍ରକଳ୍ପବାଦ (Imagism) ନାମକ ଆନୁଷଙ୍ଗିକ ବିପ୍ଳବ ମଧ୍ୟ ହ୍ୟୁମ୍‌ଙ୍କ ବିପ୍ଳବର ଅଧ୍ୟାୟଭୁକ୍ତ ହୋଇଥିଲା । ଯେ ହେତୁ ଅନ୍ତତଃ ଇଂଲଣ୍ଡରେ ପ୍ରଥମ ମହାଯୁଦ୍ଧ ପୂର୍ବରୁ ଚିତ୍ରକଳ୍ପୀ ବିପ୍ଳବର ପ୍ରଚଳନ ହୋଇ ସାରିଥିଲା ।

## ପ୍ରଥମ ମହାସମର ପରେ ଅବସ୍ଥା

୧୯୧୮ରେ ଯେତେବେଳେ ପ୍ରଥମ ମହାସମର ଶେଷ ହେଲା, ସେତେବେଳେ ଇଂଲଣ୍ଡରେ ଅନେକ ଆଶା କରିଥିଲେ ଯେ, ତଦ୍ଦ୍ୱାରା ସେମାନେ ଅଧିକ ଉନ୍ନତ ଓ ଶକ୍ତିଶାଳୀ ଜାତି ହିସାବରେ ଗଢ଼ିଉଠିବେ । କାରଣ, ସେମାନଙ୍କ ବିଶ୍ୱାସ ଥିଲା ଯେ, ଯୁଦ୍ଧର ଭୟାନକ ପ୍ରକ୍ରିୟାକୃତ ନିର୍ମଳୀକରଣରେ ଏ ପ୍ରକାର ଉନ୍ନତି ସମ୍ଭବ ହୋଇ ପାରିବ; କିନ୍ତୁ ଏହି ଆଶା ନିରାଶାରେ ପର୍ଯ୍ୟବସିତ ହେଲା । ଗୋଟିଏ ବା ଦୁଇଟି ବର୍ଷର ଅଭ୍ୟୁଦୟ ଓ ସ୍ଥିତି ପରେ ସେ ଜାତିର ମାନସିକ ଓ ଆର୍ଥିକ ଅଧୋଗତି ଆସିଗଲା । ଫଳତଃ କବିମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଭୁଆଁ ବୁଲିବାରେ ଲାଗିଲେ । ବୁଢ଼ା ବୁଢ଼ା ଲୋକେ ଧର୍ମକୁ ମାନି ଚଳିଲେ । କେହି କେହି କବି ନୈରାଶ୍ୟର ସ୍ୱର ଛାଡ଼ୁଥିଲେ ମଧ୍ୟ ଅଧିକସଂଖ୍ୟକ କବି ବିଶ୍ୱାସ କରୁଥିଲେ ଯେ, "ବିଶ୍ୱର ମହାନ୍ ଆତ୍ମାହିଁ ହେଉଛି ମୂଳ ।" ସୁତରାଂ ସେହି ବିଶ୍ୱାସରେ ସେମାନେ ନିଜ ନିଜର ଲେଖମା ରଚନା କରିବାରେ ଲାଗିଲେ ।

## ଲରେନ୍‌ସଙ୍କ ଜୈବିକ ସହାନୁଭୂତି

D. H. Lawrence (୧୮୮୫-୧୯୩୦) ହ୍ୟୁମ୍‌ଙ୍କଠାରୁ ଆହୁରି ପଦେ ଆଗେଇଗଲେ । ସେ କେବଳ ପାଶ୍ଚାତ୍ୟ ସଭ୍ୟତା ନୁହେଁ, ତା'ର ବିଜ୍ଞାନର ମଧ୍ୟ ବିରୋଧ କଲେ । ପ୍ରବୃତ୍ତିମୟ-ଜୀବନକୁ ଫେରିଯିବାପାଇଁ ମଣିଷକୁ ସେ ଆହ୍ୱାନ ଜଣାଇଲେ । ମଣିଷ ରକ୍ତମାଂସର ମାଧ୍ୟମରେ ଚିନ୍ତା କରୁ ବୋଲି ସେ ଘୋଷଣା କଲେ । ଏତଦ୍ଦ୍ୱାରା ଲରେନ୍‌ସ ନିଜ ସମୟର ପାଶବିକ ବୁଦ୍ଧି-ବାଦୀମାନଙ୍କର ଆଗ୍ରହ ସୃଷ୍ଟି କରିଥିଲେ । ୧୯୧୦ରୁ ୧୯୩୦ ସମୟକୁ ଲରେନ୍‌ସ ଯୁଗ ବୋଲି କୁହାଗଲା । ଅବଚେତନ ପରିସରକୁ ସ୍ପର୍ଶ କରୁଥିବା ମନୋବସ୍ଥା ବର୍ଣ୍ଣନରେ ସେ ସିଦ୍ଧହସ୍ତ; କିନ୍ତୁ ଦୈହିକ କଳ୍ପନାର ଅବଦାନରେ

ରୁଷୋ ଘୋଷଣା କରିଥିଲେ ଯେ, ମଣିଷ ସ୍ୱାଭାବିକ-ଭାବରେ ଭଲ ଏବଂ ନିଜର ଚେଷ୍ଟାରେ ନିଜକୁ ସଂଶୋଧନ କରି ସେ ପୂର୍ଣ୍ଣତା ଆଡ଼କୁ ଗତି କରି ପାରିବ । ପକ୍ଷାନ୍ତରେ (Hulme) ଘୋଷଣା କଲେ ଯେ, ମଣିଷ ସ୍ୱଭାବତଃ ବା ପ୍ରାକୃତିକ ଅବସ୍ଥାରେ ଏକ ଅକିଞ୍ଚନ, ସୀମିତ ଶକ୍ତିବିଶିଷ୍ଟ ପ୍ରାଣୀବିଶେଷ, ଯେ କି ଭଗବାନଙ୍କ କୃପାରେ ହିଁ ମୁକ୍ତିଲାଭ କରିପାରିବ । ଧର୍ମଯାଜକମାନେ ଏ ବିଷୟରେ ହ୍ୟୁମ୍‌ଙ୍କ ସହିତ ଏକମତ ହୋଇଗଲେ ! ଏହା ନିଃସନ୍ଦେହ ଯେ, ପ୍ରଥମ ମହାଯୁଦ୍ଧ ଏହି ଆନ୍ଦୋଳନକୁ ତ୍ୱରାନ୍ୱିତ କରିଥିଲା । ୟୁରୋପର ସେତେବେଳର ଅବସ୍ଥାକୁ ନିର୍ଦ୍ଦେଶ କରି ଏହି ବିପ୍ଳବର ନେତାମାନେ କହିଲେ—"ଦେଖ ମାନବବାଦ ଆମକୁ କି ଦୁର୍ଦ୍ଦଶା ଆଣି ଦେଇଛି ।"

## ସ୍ୱାଚ୍ଛନ୍ଦ୍ୟବାଦ ଉପରେ ଆଘାତ

ଊନ୍ମୁକ୍ତ୍ୟବାଦ ବା ସ୍ୱାଚ୍ଛନ୍ଦ୍ୟବାଦ, ମାନବବାଦର ସନ୍ତାନ । ଏଥିରୁ ଗୋଟିଏକୁ ଆକ୍ରମଣ କରିବା ଅର୍ଥ ଅନ୍ୟଟିକୁ ମଧ୍ୟ ଆକ୍ରମଣ କରିବା ।

ଏକଶତାବ୍ଦୀରୁ ଅଧିକକାଳ ପର୍ଯ୍ୟନ୍ତ ଇଂରାଜୀ କବିତା ଉପରେ ଆଧିପତ୍ୟ ବିସ୍ତାର କରିଥିବା ଓ୍ୱାର୍ଡ୍‌ସ ଓ୍ୱାର୍ଥୀୟ ସିଦ୍ଧାନ୍ତ ଉପରେ ପ୍ରଚଣ୍ଡ ଆକ୍ରମଣ ହେଲା । କବିତା, ଓଜସ୍ୱିନୀ ସଂବେଦନାଗୁଡ଼ିକର ସ୍ୱତଃ ପରିପ୍ଳାବନ (Spontaneous overflow of powerful emotion) ବୋଲି ଓ୍ୱାର୍ଡ୍‌ସ୍‌ଓ୍ୱାର୍ଥ ପରିଭାଷା କରିଥିଲେ; କିନ୍ତୁ ବିଦ୍ରୋହୀମାନେ କହିଲେ "ନା, ନା, କବିତା ଗୋଟିଏ କଳା । ଏହା ସଂବେଦନାର ସ୍ତୂପୀକୃତ ସ୍ଥାନ ନୁହେଁ । ହ୍ୟୁମ୍ ରୋମାଣ୍ଟିକ୍ କବିମାନଙ୍କୁ ତିରସ୍କାର କରିଥିଲେ । ଏପରି କି ସର୍ବୋତ୍କୃଷ୍ଟ ରୋମାଣ୍ଟିକ୍ କବିମାନଙ୍କୁ ସେ ନିକୃଷ୍ଟ (Sloppy) ବୋଲି କହୁଥିଲେ । ତାଙ୍କର ଅଭିଯୋଗ ଯେ, ସେମାନେ ସବୁବେଳେ କୌଣସି ବିଷୟରେ ଗୁଣୁଗୁଣୁ ହେଉଥିଲେ । କୌଣସି ଗୋଟିଏ ଅସୀମ ଆଡ଼େ ଟାଣି ହେଉଥିଲେ ଏବଂ କୌଣସି ଏକ ଜାତିଗତ ସଂବେଦନା (Cosmic Emotion)ର ଅର୍ଦ୍ଧଧାର୍ମିକ ଶୀତବସ୍ତ୍ରରେ ନିଜକୁ ଘୋଡ଼େଇ ରଖୁଥିଲେ । ହ୍ୟୁମ୍‌ କହୁଥିଲେ ଯେ, ଭବିଷ୍ୟତରେ କବିତା ଉତ୍‌ଫୁଲ୍ଲ, ସାନ୍ଦ୍ରତମ, ପ୍ରାଞ୍ଜିକ ଓ ଶବ୍ଦ ନିର୍ବାଚନରେ ଅତୀବ ଯଥାର୍ଥ ହେବ । କାରଣ କବିତା ତାଙ୍କ ମତରେ ଶବ୍ଦଗୁଡ଼ିକର ମନୋଜ୍ଞ ସଜ୍ଜାଠାରୁ କିଛି ଅଧିକ ବା ଊଣା ନୁହେ ।······"Is no more

nor less than a mosaic of words" ଏହି ଭାବନାଗୁଡ଼ିକ ଯୁଦ୍ଧର ଅବସାନ ପରେହିଁ ଫଳବତୀ ହୋଇଥିଲା । ଏହା ପରେ ଚିତ୍ରକଳ୍ପବାଦ (Imagism) ନାମକ ଆନୁଷଙ୍ଗିକ ବିପ୍ଳବ ମଧ୍ୟ ହ୍ୟୁମ୍‌ଙ୍କ ବିପ୍ଳବର ଅଧ୍ୟାୟଭୁକ୍ତ ହୋଇଥିଲା । ଯେ ହେତୁ ଅନ୍ତତଃ ଇଂଲଣ୍ଡରେ ପ୍ରଥମ ମହାଯୁଦ୍ଧ ପୂର୍ବରୁ ଚିତ୍ରକଳ୍ପୀ ବିପ୍ଳବର ପ୍ରଚଳନ ହୋଇ ସାରିଥିଲା ।

## ପ୍ରଥମ ମହାସମର ପରେ ଅବସ୍ଥା

୧୯୧୮ରେ ଯେତେବେଳେ ପ୍ରଥମ ମହାସମର ଶେଷ ହେଲା, ସେତେବେଳେ ଇଂଲଣ୍ଡରେ ଅନେକ ଆଶା କରିଥିଲେ ଯେ, ତଦ୍ଦ୍ୱାରା ସେମାନେ ଅଧିକ ଉନ୍ନତ ଓ ଶକ୍ତିଶାଳୀ ଜାତି ହିସାବରେ ଗଢ଼ିଉଠିବେ । କାରଣ, ସେମାନଙ୍କ ବିଶ୍ୱାସ ଥିଲା ଯେ, ଯୁଦ୍ଧର ଉପ୍ତାନକ ସ୍ତୂପୀକୃତ ନିର୍ମଳୀକରଣରେ ଏ ପ୍ରକାର ଉନ୍ନତି ସମ୍ଭବ ହୋଇ ପାରିବ; କିନ୍ତୁ ଏହି ଆଶା ନିରାଶାରେ ପର୍ଯ୍ୟବସିତ ହେଲା । ଗୋଟିଏ ବା ଦୁଇଟି ବର୍ଷର ଅଭ୍ୟୁଦୟ ଓ ସ୍ଥିତି ପରେ ସେ ଜାତିର ମାନସିକ ଓ ଆର୍ଥିକ ଅଧୋଗତି ଆସିଗଲା । ଫଳତଃ କବିମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଭୂଆଁ ବୁଲିବାରେ ଲାଗିଲେ । ବୁଢ଼ା ବୁଢ଼ା ଲୋକେ ଧର୍ମକୁ ମାନି ଚାଲିଲେ । କେହି କେହି କବି ନୈରାଶ୍ୟର ସ୍ୱର ଛାଡୁଥିଲେ ମଧ୍ୟ ଅଧିକସଂଖ୍ୟକ କବି ବିଶ୍ୱାସ କରୁଥିଲେ ଯେ, "ବିଶ୍ୱର ମହାନ୍ ଆତ୍ମାହିଁ ହେଉଛି ମୂକ ।" ସୁତରାଂ ସେହି ବିଶ୍ୱାସରେ ସେମାନେ ନିଜ ନିଜର ଲେଖମା ରଚନା କରିବାରେ ଲାଗିଲେ ।

## ଲରେନ୍‌ସଙ୍କ ଜୈବିକ ସହାନୁଭୂତି

D. H. Lawrence (୧୮୮୫-୧୯୩୦) ହ୍ୟୁମ୍‌ଙ୍କଠାରୁ ଆହୁରି ପଦେ ଆଗେଇଗଲେ । ସେ କେବଳ ପାଶ୍ଚାତ୍ୟ ସଭ୍ୟତା ନୁହେଁ, ତା'ର ବିଜ୍ଞାନର ମଧ୍ୟ ବିରୋଧ କଲେ । ପ୍ରବୃତ୍ତିମୟ-ଜୀବନକୁ ଫେରିଯିବାପାଇଁ ମଣିଷକୁ ସେ ଆହ୍ୱାନ ଜଣାଇଲେ । ମଣିଷ ରକ୍ତମାଂସର ମାଧ୍ୟମରେ ଚିନ୍ତା କରୁ ବୋଲି ସେ ଘୋଷଣା କଲେ । ଏତଦ୍ଦ୍ୱାରା ଲରେନ୍‌ସ ନିଜ ସମୟର ପାଶବିକ ବୁଦ୍ଧି-ବାଦୀମାନଙ୍କର ଆଗ୍ରହ ସୃଷ୍ଟି କରିଥିଲେ । ୧୯୧୦ରୁ ୧୯୩୦ ସମୟକୁ ଲରେନ୍‌ସ ଯୁଗ ବୋଲି କୁହାଗଲା । ଅବଚେତନ ପରିସରକୁ ସ୍ପର୍ଶ କରୁଥିବା ମନୋବସ୍ଥା ବର୍ଣ୍ଣନରେ ସେ ସିଦ୍ଧହସ୍ତ; କିନ୍ତୁ ଦୈହିକ କଳ୍ପନାର ଅବଦାନରେ

ସେ ଅନୁପମ । ତାଙ୍କର ଗୋଟିଏ ବଡ଼ ବିଚିତ୍ର କଳ୍ପନା-ସାମର୍ଥ୍ୟ ଥିଲା; ଯାହାକୁ ଆମେ ଜୈବିକ ସହାନୁଭୂତି କହିପାରୁଁ । ଏହି ସହାନୁଭୂତି, ସତେ ଯେପରି ମନୁଷ୍ୟେତର ଜୀବମାନଙ୍କର ଅନୁଭୂତି ଭିତରକୁ ପ୍ରବେଶ କରିବାରେ ତାଙ୍କୁ ସାମର୍ଥ୍ୟ ଦେଇଥିଲା । ଗୋଟିଏ କଇଁଛ ପକ୍ଷରେ କଇଁଛ ହେବା କ'ଣ, ତାହା ସେ ଜାଣି ପାରୁଥିଲେ ।

## ଫ୍ରଏଡ଼୍, ୟୁଙ୍ଗ, ଗ୍ରେଭେସ୍ ପ୍ରଭୃତିଙ୍କର ମାନସିକ ବିଶ୍ଳେଷଣ

ଏ ତ ଗଲା କବିତାରେ ଆଧୁନିକତାବାଦର ତାତ୍ତ୍ୱିକ ଭିତ୍ତି । ଏହାର ଆଉ ଅନେକ ଜନ୍ମସୂତ୍ର ମିଳିଥିଲା । ପ୍ରଥମତଃ ଓ ପ୍ରଧାନତଃ ମାନସିକ ବିଶ୍ଳେଷଣ-ନାମକ ବିଜ୍ଞାନ ବା ବିଜ୍ଞାନାଭାସ (Psycho-analysis) । ଯୁଦ୍ଧସମୟରେ ସ୍ନାୟବିକ ରୋଗୀମାନଙ୍କର ଚିକିତ୍ସାରେ ଏହି ବିଶ୍ଳେଷଣ ସଫଳତାର ସହିତ ପ୍ରୟୋଗ କରାଯାଇଥିଲା । ଫଳତଃ ଏହାର ଆଦର ଅଭୂତପୂର୍ବ ଭାବରେ ବଢ଼ିଗଲା । ବିସ୍ମୃତ ସ୍ମୃତିଚୟ (forgotten memories) ଓ ବହୁଶଃ ରତିପ୍ରଧାନ ଅବଦମିତ ପ୍ରବୃତ୍ତିଚୟ ( repressed instincts ) କେତେ-ଦୂର ପର୍ଯ୍ୟନ୍ତ ନିଃଶଙ୍କ ଭାବରେ ଚିନ୍ତା-ପ୍ରବାହର ନିୟାମକ ହୁଏ, Freud ତାହା ପ୍ରକାଶ କଲେ । କେତେକ କବି ମଧ୍ୟ ଏହି ଫ୍ରଏଡ଼ୀୟ ତତ୍ତ୍ୱରେ ପ୍ରଭାବିତ ହୋଇପଡ଼ିଲେ । Graves କିଛି ସମୟ ପାଇଁ ଫ୍ରଏଡ଼ଙ୍କ ନିକଟରେ ଆତ୍ମସମର୍ପଣ କଲେ ଓ ପ୍ରତ୍ୟେକ ପଦାର୍ଥରେ ପ୍ରତୀକ (ବିଶେଷତଃ ଯୌନ ପ୍ରତୀକ) ଦେଖିବାକୁ ପାଇଲେ । ଏହି ମନସ୍ତତ୍ତ୍ୱରେ Herbert Read ବେଶି ବୈଦ୍ୟୁତିକ ହୋଇପଡ଼ିଲେ । କେତେକ ବିଶିଷ୍ଟ ଫ୍ରଏଡ଼ୀୟ ସିଦ୍ଧାନ୍ତକୁ ଲୋକପ୍ରିୟ କରି ମାନସିକ ବିଶ୍ଳେଷଣ ଅବଚେତନରେ ଓ କବିତା କ୍ଷେତ୍ରରେ ତର୍କସମ୍ମତ ବା ଇତିହାସ ସମୟକ୍ରମ ପରିବର୍ତ୍ତରେ ସ୍ୱଚ୍ଛନ୍ଦ ସଂଶ୍ଳେଷଣରେ ସମଧିକ ଆଗ୍ରହ ସୃଷ୍ଟିକଲା । ଏହି ମନୋବିଜ୍ଞାନ ପରେ ଆମେ ନୃତତ୍ତ୍ୱକୁ ବିଶିଷ୍ଟ ସ୍ଥାନ ଦେବା । ବ୍ୟଷ୍ଟି ମନ ପକ୍ଷରେ ମାନସିକ ବିଶ୍ଳେଷଣ ଯାହା, ସମଷ୍ଟି ମନ ପକ୍ଷରେ ନୃ-ତତ୍ତ୍ୱ-ତାହା । ଏହାପରେ The Golden Boughରୁ ଗୋଟିଏ ଆକର ମିଳିଗଲା, ଯାହା Eliot ଓ ଅନ୍ୟମାନେ ଲାଗିପଡ଼ି ଖନନ କରି ଚାଲିଲେ Dr. Adler ଏବଂ ଫ୍ରଏଡ଼ଙ୍କ ଶିଷ୍ୟ Dr. Jung ଏ ଦିଗରେ ଖୁବ୍ ଆଗେଇ ଯାଇଥିଲେ । ୟୁଙ୍ଗ ଏବଂ ଆଲ୍‌ଡ଼ରଙ୍କ ଗବେଷଣା-

ଫଳରେ କଳାର କ୍ଷେତ୍ରରେ ଏକ ଅଭୂତପୂର୍ବ ପରିବର୍ତ୍ତନ ସଂଘଟିତ ହେଲା । ଏ ସମ୍ପର୍କରେ Lawrence Durrell କହୁଛନ୍ତି —

"ମୋର ପ୍ରତିପାଦ୍ୟ ଏହା ଯେ, ଫ୍ରୟେଡ଼ୀୟ ସାଧନ ଉପରେ ୟୁଙ୍ଗଙ୍କ ଆଶ୍ଚର୍ଯ୍ୟଜନକ ପୁନର୍ମୂଲ୍ୟାଙ୍କନ ଏବଂ ଅନ୍ୟତମ ପ୍ରଖ୍ୟାତ ବିଶ୍ଳେଷକ ଡକ୍ଟର ଆଡ଼ଲର ପ୍ରଭୃତିଙ୍କ ଅବଦାନନିଚୟ ନିକଟରୁ କଳାକାରର ପ୍ରତୀକୀୟ ସାଧନା ଏକପ୍ରକାର ନୂତନ ଶକ୍ତି ପାଇଛି । ଏହା କଳ୍ପିତ ଜ୍ଞାନ ସମ୍ଭାରରୁ ସମ୍ଭୂତ ହୋଇଥିବା ଶକ୍ତିର ଏକ ବହୁଗୁଣିତ ନବ ବର୍ଦ୍ଧନ । ସେ ଜାଣିପାରିଲା ଯେ, ପୂର୍ବଜ୍ଞାତ ପ୍ରତୀକ ଅପେକ୍ଷା ତା'ର ନୂତନ ପ୍ରତୀକଗୁଡ଼ିକ ଅଧିକ ସମୃଦ୍ଧ । ପ୍ରକୃତରେ ସେଗୁଡ଼ିକ ଏତେ ଋଦ୍ଧିମନ୍ତ ଯେ, ସେ ସବୁର ବ୍ୟବହାରପାଇଁ ତାକୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଲା । ଏହି ଫ୍ରୟେଡ଼ୀୟ ଆବିଷ୍କାରଗୁଡ଼ିକରୁ ଅନ୍ୟ ଗୋଟିଏ ବିଷୟ ମଧ୍ୟ ସ୍ପଷ୍ଟ ହୋଇଗଲା । ତାହା ହେଲା, 'ଅଚେତନ'ର ଶବ୍ଦଗୁଡ଼ିକ ଦ୍ୱ୍ୟର୍ଥବୋଧକ । ଉଦାହରଣସ୍ୱରୂପ, ଆପଣମାନେ ଯେତେବେଳେ ଜାଣୁନନ୍ତି 'Sex' 'ଶବ୍ଦ ଭିନ୍ନ କରିବା' ବା 'କାଟିବା ଶବ୍ଦରୁ ସମ୍ଭୂତ' ସେତେବେଳେ ଏହା ସଂଯୋଜନର ବୋଧକ ବୋଲି ପୁଣି କପରି ଧରୁଛନ୍ତି ? କଳାକାରର ପ୍ରତୀକମାନ ଅସ୍ପଷ୍ଟାର୍ଥର ଆଂଶିକ କାରଣ ରୂପେ ଆମେ ଏହି ପ୍ରକାର ଯୁକ୍ତି ଦେଇପାରିବୁ । ସ୍ରଷ୍ଟାର ପ୍ରତୀକଗୁଡ଼ିକ ବହୁଗୁଣିତ ଘାତ ସୃଷ୍ଟି କରିଥାଏ । ଏପର୍ଯ୍ୟନ୍ତ ସେଗୁଡ଼ିକ ଅଭିଧାର୍ଥର ସୀମା ଭିତରେ ଉଣାଅଧିକେ ସୀମିତ । ତେଣୁ କଳାର ଅନୁରୋଧରେ କଳାକାର ଭାଷାର ସମଗ୍ର ଗଠନ-ପରିପାଟୀର ପରିବର୍ତ୍ତନ ହେବାରେ ଲାଗିଲା । ଆଉ ଆଜକାଲି କଳାର ଲକ୍ଷଣରୁ ଏହା ବ୍ୟଞ୍ଜିତ ହେଉଛି ଯେ, କଳାକାର 'କାରଣ ନିରୂପଣ' ବଦଳରେ ଭାରସାମ୍ୟ ବା ଆଲମ୍ବ ଗ୍ରହଣ କରିଛି । "ଭୟ ସବୁବେଳେ ଇଚ୍ଛାକୁ ଘୋଡ଼ାଇ ରଖେ", ଅବଦମିତ ପାଶବିକତା (Suppressed brutality)ର ଅନ୍ୟ ନାମ ହେଉଛି 'ଭାବପ୍ରବଣତା' (Sentimentality) । ଅନୁସନ୍ଧାନଦ୍ୱାରା ଯଦି ଏହା ବ୍ୟଞ୍ଜିତ ହୁଏ ଯେ, 'ମନୁଷ୍ୟ ମନ ପ୍ରକୃତରେ ଦ୍ୱିଲିଙ୍ଗୀ, ଅଧିକନ୍ତୁ ଯଦି ଅଚେତନରେ ଗୁଣସମ୍ଭାର ବିପରୀତବୋଧକ ହୁଏ, ତେବେ ସାଧାରଣ ଆକୃତିଗତ-ବ୍ୟାଖ୍ୟାନର ଅବସ୍ଥା କ'ଣ ହେବ ?'

ଫ୍ରୟେଡ଼ଙ୍କ ମତରେ 'ସ୍ୱପ୍ନ' ହେଲା ଏକପ୍ରକାର ଭାଷା ଏବଂ ଏହି ଭାଷାରେ କାବ୍ୟିକ ଛଦ୍ମବେଶ ପରିହିତ ଅବଚେତନ ରହସ୍ୟମାନ ପ୍ରକାଶିତ ହୁଏ ।

ରଚନାତ୍ମକ ଓ ସଂଶ୍ଳେଷଣପ୍ରଧାନ । ଗ୍ରଟ୍ଟଙ୍କ ପାଦେ ଆଗେଇ ଗଲେ । ସେଗ ବିଷୟରେ ତାଙ୍କ ଭାବନା ଅଧ୍ୟାତ୍ମପ୍ରଧାନ । ସେ ମୋଚନକୁ ପ୍ରାଧାନ୍ୟ ଦେଇ ବିଚାର କରନ୍ତି । ଗ୍ରଡେକ୍ ତାଙ୍କର ଆବିଷ୍କୃତ 'ତତ୍' (the It)ରେ ବିଶ୍ୱାସ ରଖନ୍ତି । ସେ ଏହି ପ୍ରାସ୍ତିକ 'ତତ୍'କୁ ସତ୍ୟ ବୋଲି ସ୍ୱୀକାର କରନ୍ତି ନାହିଁ । କାରଣ ପରମ ସତ୍ୟ ଅଜ୍ଞେୟ । ସୁତରାଂ ଏହାକୁ ସେ ଏକ ଉପସ୍ଥାପକରୂପେ ଗ୍ରହଣ କରନ୍ତି । ତାଙ୍କ ମତରେ 'ମୁଁ ବଞ୍ଚେ'—ଏ ପ୍ରକାର ନିଶ୍ଚୟାତ୍ମକ ଘୋଷଣା ପୂର୍ଣ୍ଣ ନୁହେଁ । କାରଣ ଏହା ସମଗ୍ର ଅନୁଭୂତିର ଗୋଟିଏ ଅତି କ୍ଷୁଦ୍ର ଓ ବହିର୍ଭାଗକୁ ହିଁ ପ୍ରକାଶ କରେ । ସମଗ୍ର ଅନୁଭୂତିକୁ ପ୍ରକାଶ କରିବାକୁ ହେଲେ "ମୁଁ ତତ୍‌ଦ୍ୱାରା ବଞ୍ଚେ" ବୋଲି କହିବା ଦରକାର । ମନୁଷ୍ୟର ଭୌତିକ, ମାନସିକ, ଆଧ୍ୟାତ୍ମିକ, ଜୈବିକ ପ୍ରଭୃତି ସତ୍ତ୍ୱ ବିଶିଷ୍ଟ ବ୍ୟକ୍ତି ବିଶ୍ୱର ଉତ୍ସମୂଳ ଏପର୍ଯ୍ୟନ୍ତ ଅଜ୍ଞାତ ଓ ସବୁବେଳେ ଅଜ୍ଞେୟ ହୋଇ ରହିବ । ମଣିଷର ଏହି ସାମଗ୍ରିକ ଅସ୍ତିତ୍ୱକୁ ସେ 'ତତ୍' ବୋଲି କହିଛନ୍ତି ।

ଆମେ କୌଣସି ଉଚ୍ଚାଙ୍ଗ କବିତାର ସବିଶେଷ ବ୍ୟାଖ୍ୟା କଲେ ଦେଖିବାକୁ ପାଉଁ ଯେ, ସେହି କବିତା ଏପରି ଏକ ଅଜ୍ଞାତକୁ ପ୍ରତିଫଳିତ କରେ, ଯାହାକୁ ବ୍ୟାଖ୍ୟା କରିବାକୁ ଓ ବୁଝିବାକୁ ଯାଇ ଆମେ ଆମର ସମସ୍ତ ଜ୍ଞାନକୁ ଅଜ୍ଞାତକୁ ଫେରାଇ ଦେଉଁ । ତେଣୁ ଏହି ଅର୍ଥରେ କଳା ନିଷ୍ଫଳ, ଯଦିଓ ଅନ୍ୟତ୍ର ଏହାର ଉପଯୋଗିତା ରହିଛି । କବିତାର ସମ୍ମୋହନ ଶକ୍ତିକୁ ଧରି-ନେଲେ ଏହାର ଗୁରୁତ୍ୱ ଛନ୍ଦୋନାମ ବା ଶିଶୁ ଗୀତରେ ଉପଲବ୍ଧ କରାଯାଇ-ପାରିବ । ଏହାର ଉଚ୍ଚତମ ଶକ୍ତି; କିନ୍ତୁ ଆମ ନିଜ ବିଷୟରେ ଓ ପୃଥିବୀ ବିଷୟରେ ଆଧ୍ୟାତ୍ମିକ—ଆଧିଭୌତିକ ସତ୍ୟକୁ ପ୍ରତିଫଳିତ କରିଥାଏ । ସର୍ବୋପରି ଏହା କଦାପି ଭୁଲିଯିବା ଉଚିତ ନୁହେଁ ଯେ, କବିତା ଜୀବନ ପରି ଅତି ଗୁରୁତ୍ୱବିଶିଷ୍ଟ ଏବଂ ଏହାକୁ ଲଘୁଭାବରେ ଧରିନେବା ସମୀଚୀନ ହେବ ନାହିଁ ।

## ପ୍ରତୀକ ଓ ପ୍ରତିମା

ବହୁବର୍ଷ ପୂର୍ବେ ଇଂଲଣ୍ଡର Gosse ଓ Symons; ଫରାସୀ ପ୍ରତୀକବାଦୀମାନଙ୍କୁ ବ୍ରିଟିଶ ପାଠମାନଙ୍କ ନିକଟରେ ପରିଚିତ କରାଇଥିଲେ; କିନ୍ତୁ ଏହି ଭିକ୍ଟୋରିଆନ୍ ସମାଲୋଚକ ଦ୍ୱୟ ଫରାସୀ ପ୍ରତୀକବାଦୀମାନେ କ'ଣ ଲେଖନ୍ତି,

ସେଗୁଡ଼ିକ ଅର୍ଥହୀନ ପ୍ରତିମା (Image) ନୁହେଁ, ବରଂ ସେଗୁଡ଼ିକ ଏକପ୍ରକାର ଭାଷା । ନିଦ୍ରା ସମୟରେ ଅବଚେତନର ଇଷ୍ଟକ ପ୍ରାଚୀର ମଧ୍ୟରେ ଅବରୁଦ୍ଧ ହୋଇଥିବା ଦୁଃଖଦାୟକ ରହସ୍ୟଗୁଡ଼ିକ ସନ୍ତର୍ପଣରେ ବାହାରକୁ ଆସିଯାଏ ଓ ମନର ଉଦ୍ଧ୍ୱଦେଶରେ ଦେଖାଦିଏ । ବ୍ୟକ୍ତିର ଆତ୍ମସମାଲୋଚନା ଓ ନୈତିକବୋଧର ପହରାଦାରରୁ ଖସି ପଳେଇବାପାଇଁ ସେହି ରହସ୍ୟଗୁଡ଼ିକ ରଙ୍ଗବେରଙ୍ଗ କାଳ୍ପନିକ ପୋଷାକ ପିନ୍ଧି ଛଦ୍ମଭାବରେ ବାହାରିପଡ଼େ । ସ୍ୱପ୍ନ ଭାଷାର କଞ୍ଜିକା ମିଳିଗଲେ ଆମେ ସମ୍ପୃକ୍ତ ବ୍ୟକ୍ତିର ଗୁପ୍ତ କାର୍ଯ୍ୟଗୁଡ଼ିକୁ ବ୍ୟାଖ୍ୟା କରି ପାରିବୁ ବୋଲି ଫ୍ରଏଡ଼ୁ ମତ ଦିଅନ୍ତି; କିନ୍ତୁ ତାଙ୍କୁ ଯେତେ ଗ୍ରହଣ କରିବା କଥା, ସେତେ ଗ୍ରହଣ କରାଯାଇନାହିଁ । ଏହାର କାରଣ ହେଲା Libido ବିଷୟରେ ତାଙ୍କର ଧାରଣା । ଏଥିପାଇଁ ସମାଜ ତାଙ୍କ ଉପରେ ବାରଣ ପ୍ରୟୋଗ କରିଛି । ଫ୍ରଏଡ଼ଙ୍କ ପରେ ମଣିଷ ଅନ୍ତର୍ନିହିତ ବିଶ୍ୱ ସମ୍ବନ୍ଧରେ ନୂତନ ଭାବନା ପ୍ରଚଳିତ ହେଲା ଓ ତା' ଫଳରେ ଭାଷା ବ୍ୟବହାର ଏବଂ ପ୍ରୟୋଗରେ ଆନୁଷଙ୍ଗିକ ପରିବର୍ତ୍ତନ ଘଟିଲା ।

'ସ୍ୱପ୍ନ' ସର୍ବଦା ସମୟ ସମ୍ପର୍କକୁ ସ୍ଥାନ ସମ୍ପର୍କରେ ପରିଣତ କରେ । ଯଥା— ସ୍ୱପ୍ନରେ ଅନେକ ସମୟରେ ଦେଖାଯାଏ ଯେ, କେତେକ ଲୋକ ଅତି କ୍ଷୁଦ୍ର ଓ ଦୂରବର୍ତ୍ତୀ ଦିଶୁଛନ୍ତି । ସତେ ଯେପରି ଅପେରା କାଚର ବିପରୀତ ପାର୍ଶ୍ୱରୁ ଗୋଟିଏ ଦୃଶ୍ୟ ଦିଶୁଛି । କ୍ଷୁଦ୍ରତା ଓ ସ୍ଥାନଗତ ଦୂରତ୍ୱ ଏକାର୍ଥକ; ଏହା ସମୟଗତ ଦୂରତାକୁ ବି ବୁଝାଏ । ଏହାର ବ୍ୟାଖ୍ୟା ଏପରି କରାଯାଇପାରେ ଯେ, ଦୃଶ୍ୟଟି ଅତି ଦୂର-ଅତୀତର ।

ପୁନଶ୍ଚ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଫଳରେ ଜଣାଯାଇଛି ଯେ, ସ୍ୱପ୍ନର ଯଥେଷ୍ଟ ଗଭୀରତା ରହିଛି । ଆଧୁନିକ କବିତାରେ କ୍ରମ ଓ ପଦ ଯୋଜନାରେ ସ୍ଥାନଚ୍ୟୁତି ଏପରି ଏକ ପ୍ରକ୍ରିୟାର ଫଳ ।

## ଅହଂର ବାହାରେ ?

Walther Graddeck ଫ୍ରଏଡ଼ୀୟ ପ୍ରଣାଳୀକୁ ଗ୍ରହଣ କରିଥିଲେ ସୁଦ୍ଧା ଚେତନ ଅବଚେତନ ବାହାରେ ଅନ୍ୟ ଗୋଟିଏ ଶକ୍ତିର ଅସ୍ତିତ୍ୱରେ ସେ ବିଶ୍ୱାସ କରୁଥିଲେ । ଫ୍ରଏଡ଼ଙ୍କ ଦୃଷ୍ଟିକୋଣ ବିଶ୍ଳେଷଣ ପ୍ରଧାନ । ୟୁଙ୍ଗ ପ୍ରଭୃତି ଆଦ୍ୟ ଜୀବନବାଦୀ (vitalists)ଙ୍କର ଦୃଷ୍ଟିକୋଣ

ରଚନାତ୍ମକ ଓ ସଂଶ୍ଳେଷଣପ୍ରଧାନ । ଗ୍ରଣ୍ଡଟଙ୍କ ପାଟଦ ଆଗେଇ ଗଲେ । ସେଗ୍ଧ ବିଷୟରେ ତାଙ୍କ ଭାବନା ଅଧ୍ୟାତ୍ମପ୍ରଧାନ । ସେ ମୋଟନଙ୍କୁ ପ୍ରାଧାନ୍ୟ ଦେଇ ବିଗ୍ଭର କରନ୍ତି । ଗ୍ରଡେକ୍ ତାଙ୍କର ଆବିଷ୍କୃତ 'ତତ୍' (the It)ରେ ବିଶ୍ୱାସ ରଖନ୍ତି । ସେ ଏହି ପ୍ରାପ୍ତିକ 'ତତ୍'କୁ ସତ୍ୟ ବୋଲି ସ୍ୱୀକାର କରନ୍ତି ନାହିଁ । କାରଣ ପରମ ସତ୍ୟ ଅଜ୍ଞେୟ । ସୁତରାଂ ଏହାକୁ ସେ ଏକ ଉପଯୁକ୍ତକରୂପେ ଗ୍ରହଣ କରିଛନ୍ତି । ତାଙ୍କ ମତରେ 'ମୁଁ ବଞ୍ଚେ'—ଏ ପ୍ରକାର ନିଶ୍ଚୟାତ୍ମକ ଘୋଷଣା ପୂର୍ଣ୍ଣ ନୁହେଁ । କାରଣ ଏହା ସମଗ୍ର ଅନୁଭୂତିର ଗୋଟିଏ ଅତି କ୍ଷୁଦ୍ର ଓ ବହିର୍ଭାଗକୁ ହିଁ ପ୍ରକାଶ କରେ । ସମଗ୍ର ଅନୁଭୂତିକୁ ପ୍ରକାଶ କରିବାକୁ ହେଲେ "ମୁଁ ତତ୍ଦ୍ୱାରା ବଞ୍ଚେ" ବୋଲି କହିବା ଦରକାର । ମନୁଷ୍ୟର ଭୌତିକ, ମାନସିକ, ଆଧ୍ୟାତ୍ମିକ, ଜୈବିକ ପ୍ରଭୃତି ସତ୍ତ୍ୱ ବିଶିଷ୍ଟ ବ୍ୟକ୍ତି ବିଶ୍ୱର ଇଯତ୍ତା ଏପର୍ଯ୍ୟନ୍ତ ଅଜ୍ଞାତ ଓ ସବୁବେଳେ ଅଜ୍ଞେୟ ହୋଇ ରହିବ । ମଣିଷର ଏହି ସାମଗ୍ରିକ ଅସ୍ତିତ୍ୱକୁ ସେ 'ତତ୍' ବୋଲି କହିଛନ୍ତି ।

ଆମେ କୌଣସି ଉଚିତ କବିତାର ସବିଶେଷ ବ୍ୟାଖ୍ୟା କଲେ ଦେଖିବାକୁ ପାଉଁ ଯେ, ସେହି କବିତା ଏପରି ଏକ ଅଜ୍ଞତାକୁ ପ୍ରତିଫଳିତ କରେ, ଯାହାକୁ ବ୍ୟାଖ୍ୟା କରିବାକୁ ଓ ବୁଝିବାକୁ ଯାଇ ଆମେ ଆମର ସମସ୍ତ ଜ୍ଞାନକୁ ଅଜ୍ଞତାକୁ ଫେରାଇ ଦେଉଁ । ତେଣୁ ଏହି ଅର୍ଥରେ କଳା ନିଷ୍ଫଳ, ଯଦିଚ ଅନ୍ୟତ୍ର ଏହାର ଉପଯୋଗିତା ରହିଛି । କବିତାର ସର୍ବନିମ୍ନ ଶକ୍ତିକୁ ଧରି-ନେଲେ ଏହାର ଗୁରୁତ୍ୱ ଛନ୍ଦନାମ ବା ଶିଶୁ ଗୀତରେ ଉପଲବ୍ଧ କରାଯାଇ-ପାରିବ । ଏହାର ଉଚ୍ଚତମ ଶକ୍ତି; କିନ୍ତୁ ଆମ ନିଜ ବିଷୟରେ ଓ ପୃଥିବୀ ବିଷୟରେ ଆଧ୍ୟାତ୍ମିକ—ଆଧିଭୌତିକ ସତ୍ୟକୁ ପ୍ରତିଫଳିତ କରିଥାଏ । ସର୍ବୋପରି ଏହା କଦାପି ଭୁଲିଯିବା ଉଚିତ ନୁହେଁ ଯେ, କବିତା ଜୀବନ ପରି ଅତି ଗୁରୁତ୍ୱବିଶିଷ୍ଟ ଏବଂ ଏହାକୁ ଲଘୁଭାବରେ ଧରିନେବା ସମୀଚୀନ ହେବ ନାହିଁ ।

## ପ୍ରତୀକ ଓ ପ୍ରତିମା

ବହୁବର୍ଷ ପୂର୍ବେ ଇଂଲଣ୍ଡର Gosse ଓ Symons; ଫରାସୀ ପ୍ରତୀକବାଦୀମାନଙ୍କୁ ବ୍ରିଟିଶ ପାଠମାନଙ୍କ ନିକଟରେ ପରିଚିତ କରାଇଥିଲେ; କିନ୍ତୁ ଏହି ଭିକ୍ଟୋରିଆନ୍ ସମାଲୋଚକ ଦ୍ୱୟ ଫରାସୀ ପ୍ରତୀକବାଦୀମାନେ କ'ଣ ଲେଖନ୍ତି,

ସେ ବିଷୟରେ ପ୍ରଧାନତଃ କଣ୍ଟବାର ଉପକ୍ରମ କରିଥିଲେ; କିନ୍ତୁ ଇଂଲଣ୍ଡର ଆଧୁନିକମାନେ, ଫରାସୀ ପ୍ରତୀକବାଦୀମାନେ କିପରି କହନ୍ତି, ତା' ଉପରେ ବେଶି ଗୁରୁତ୍ୱ ଦେଇଛନ୍ତି । ଚିତ୍ରକଳ୍ପବାଦୀମାନଙ୍କ ପରି ପ୍ରତୀକବାଦୀମାନେ କବିତାର ବିବରଣାତ୍ମକ ଓ ଚିନ୍ତାତ୍ମକପରି ଇତର ବିଷୟ ପରିଷ୍କାର କରି "ଖାଣ୍ଟି କବିତା"ର ନିର୍ଯ୍ୟାସ ସଂରକ୍ଷଣରେ ଚେଷ୍ଟିତ; ମାତ୍ର ଚିତ୍ରକଳ୍ପବାଦୀ-ମାନେ ଯେତେବେଳେ ପ୍ରାଞ୍ଜଳ ଓ ଯଥାର୍ଥ ଚିତ୍ରକଳ୍ପ ଉପରେ ଦୃଷ୍ଟି ରଖି ଚକ୍ଷୁକୁ ନିବେଦନ କରନ୍ତି, ସେତେବେଳେ କବିତାକୁ ସଙ୍ଗୀତର ନିକଟବର୍ତ୍ତୀ କରିବା ହେଲା ପ୍ରତୀକବାଦୀମାନଙ୍କର ଲକ୍ଷ୍ୟ । ସଙ୍ଗୀତଜ୍ଞ ସ୍ୱରଗୁଡ଼ିକ ବ୍ୟବହାର କଲାପରି ପ୍ରତୀକବାଦୀମାନେ ଶବ୍ଦଗୁଡ଼ିକୁ ପ୍ରୟୋଗ କରୁଥିଲେ । ତର୍କସମ୍ମତ ଅର୍ଥର ପରିବହନ ତାଙ୍କର ଉଦ୍ଦେଶ୍ୟ ନ ଥିଲା; ବରଂ ଶବ୍ଦପ୍ରସୂତ ସଂଶ୍ଳେଷଣ ଓ ସ୍ୱରସଜ୍ଜା ମାଧ୍ୟମରେ ପାଠକଠାରେ କୌଣସି ଏକ ମନୋବସ୍ଥାର ଆବେଶ ଉଦ୍ରେକ କରିବା ସେମାନଙ୍କର ଉଦ୍ଦେଶ୍ୟ ଥିଲା । ଏହିପ୍ରକାର ମନୋବସ୍ଥାକୁ L. Abbe Bremand ସମାଧିଯୋଗ ସହିତ ସମାନ କରିଛନ୍ତି ।

ପ୍ରତୀକବାଦୀମାନେ ଫରାସୀ ଓ ଅଧିକନ୍ତୁ ପ୍ରତିମାବାଦୀଗଣ ଆମେରିକାନ୍; କିନ୍ତୁ ଆଧୁନିକଗଣ କେତେକ ଇଂରେଜ କବିମାନଙ୍କଦ୍ୱାରା ମଧ୍ୟ ବିଶେଷ ପ୍ରଭାବିତ । ଏହି କବିମାନଙ୍କ ଭିତରେ Hopkins, Owen ଓ Donne ପ୍ରଧାନ ।

## ନୂତନ ଛନ୍ଦର ପ୍ରୟୋଗ ଉପକ୍ରମ

ସ୍ୱାଚ୍ଛନ୍ଦ୍ୟବାଦୀ କବିତା ଉପରେ କେବଳ ସତ୍ତ୍ୱ ବିରୁଦ୍ଧରେ ନୁହେଁ; ବରଂ ଆକାର ବିରୁଦ୍ଧରେ ମଧ୍ୟ ଆଧୁନିକମାନେ ଖଡ଼୍ଗହସ୍ତ । ଅନେକ ବର୍ଷ ପୂର୍ବରୁ R. Bridges ଘୋଷଣା କରିଥିଲେ ଯେ, ଇଂରାଜୀ କବିତାରୁ ମିଲଟନୀୟ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ ସରିଗଲାଣି । ସେ ନିଜେ ଛନ୍ଦରେ ନୂତନ ପରୀକ୍ଷା ଆରମ୍ଭ କଲେ । ତାଙ୍କର ସଂଖ୍ୟାତ୍ମକ ଓ ଗୁରୁତ୍ୱାତ୍ମକ ଛନ୍ଦ ସେତେ ସଫଳ ହେଲା ନାହିଁ । Walter Dela Mare ନୂତନପ୍ରକାର ପଦ ଓ ସ୍ୱରର ଆରୋହ ଓ ଅବରୋହ ପ୍ରୟୋଗ କରିଥିଲେ । Hopkins ଛନ୍ଦନିୟମ ଅନୁସାରେ ଲେଖିବାରେ ଲାଗିଲେ । ଯାହା ଚିରାଚରିତଭାବେ ଇଂରାଜୀ ପଦ୍ୟ ଓ ଗଦ୍ୟର ଭେଦକରୂପେ ଜ୍ଞାତ ହୋଇଆସିଛି; ଆମେରିକାନ ପ୍ରତିମାବାଦୀ-ମାନଙ୍କର ନେତ୍ରୀ, Anny Lowell ଆଙ୍ଗିକ ତାଳପାଇଁ ଛନ୍ଦର ପରିତ୍ୟାଗ କରିବାକୁ ପ୍ରସ୍ତାବ କରିଥିଲେ । ଶ୍ୱାସର ନିର୍ଗମନ ଓ ବିହ୍ୱସ୍ଥରଣ ପରିପ୍ରେକ୍ଷୀରେ

ସେ ଆଙ୍ଗିକ ତାଳର ଅର୍ଥର ବସ୍ୟାନ କରିଥିଲେ । Anny Lowellଙ୍କର ବିବୋଧରେ ଏପରି ଯୁକ୍ତି କରାଯାଇଅଛି ଯେ, ସୁସ୍ଥ ବ୍ୟକ୍ତିମାନଙ୍କର ଶ୍ୱାସ କ୍ରିୟାରେ ଗୋଟିଏ ନିୟମିତତା ଥାଏ । ଆଉ ନିୟମିତ ତାଳର ହିଁ ଅନ୍ୟ ନାମ ଛନ୍ଦ । ତେଣୁ ଏ ପ୍ରକାର ଶାରୀରିକ ଉପମାଦ୍ୱାରା ଆଙ୍ଗିକ ତାଳ ଓ ଛନ୍ଦ ମଧ୍ୟରେ ପ୍ରଭେଦ ଆମକୁ ଠିକ୍ ଭାବରେ ଜଣାପଡ଼ିବ ନାହିଁ । ଅଧିକନ୍ତୁ ଆଧୁନିକ ସ୍ୱଚ୍ଛନ୍ଦ-ପଦ୍ୟର ପିତା W.Whitmanଙ୍କର କବିତାରୁ ଆମେ ଜାଣିପାରୁ ଯେ, ସେ ଯେତେ କବିତ୍ୱମୟ ହୁଅନ୍ତି, ତାଙ୍କର ତାଳ ସେତେ ନିୟମିତ ହୁଏ; ଅର୍ଥାତ୍ ଛନ୍ଦର ନିକଟବର୍ତ୍ତୀ ହୁଏ । ଅବଶ୍ୟ ଅଧିକାଂଶ ଆଧୁନିକ କବିତା ମିତାକ୍ଷର ଓ ପଦ ବିଭାଜନକୁ ତ୍ୟାଗ କରିଛି । ଏହା ଫଳରେ ସେଥିର ପ୍ରତିବନ୍ଧକରୁ କବିତାକୁ ମୁକ୍ତି ମିଳିଛି । ତଥାପି ସେଗୁଡ଼ିକୁ ଛାଡ଼ିଦେବା ଫଳରେ ଆନନ୍ଦର ଯେଉଁପ୍ରକାର କ୍ଷତି ହୋଇଛି, ତାକୁ ପୂରଣ କରିବା ପାଇଁ ଏ ପ୍ରକାର ପଦ୍ୟ କୌଣସି ପ୍ରକାର ସନ୍ତୋଷ ବିଧାନର ସମକକ୍ଷ ବ୍ୟବସ୍ଥା କରିପାରି ନାହିଁ ବୋଲି ଅନେକଙ୍କର ମତ । ସ୍ୱଚ୍ଛନ୍ଦ ପଦ୍ୟ ଏ ଶବ୍ଦଦ୍ୱୟ ପରସ୍ପର ବିରୋଧୀ । Professor Phillinor ଥରେ କହିଥିଲେ—ନିୟମ ନ ଥିବା ଖେଳ ଯାହା, ସ୍ୱଚ୍ଛନ୍ଦ ପଦ୍ୟ ମଧ୍ୟ ତାହା; କିନ୍ତୁ ନିୟମ ହିଁ ଖେଳର ସର୍ବସ୍ୱ । ନୂତନ କବିମାନେ ନୂଆ ନୂଆ ଖେଳ ତିଆରି କରୁଛନ୍ତି; କିନ୍ତୁ ସେ ଖେଳରେ ନିୟମ ରହିବା ଆବଶ୍ୟକ ବୋଲି ମତ ପ୍ରକାଶ ପାଉଛି ।

୧୯୨୨ରେ ଏଲିଅଟ୍ ସାହିତ୍ୟ-ଆକାଶରେ ଏକ ଉଜ୍ଜ୍ୱଳ ନକ୍ଷତ୍ରଭାବରେ ଦେଖାଦେଲେ । ଉଦୀୟମାନ ପୁରୁଷ Eliotଙ୍କର 'Waste Land'କୁ ସାଦର ଅଭିବାଦନ ଜଣାଇଲା । ଏହି କାବ୍ୟ ଜଟିଳ ଓ ପ୍ରସଙ୍ଗ ନିର୍ଦ୍ଦେଶ-ପ୍ରଧାନ । ଏଥିରେ ଭେଦ କଥନର ସହସା ପ୍ରୟୋଗ ମିଳେ । ମୁହୁର୍ମୁହୁଃ ପରିବର୍ତ୍ତନଶୀଳ ବ୍ୟଞ୍ଜନା ଓ ପ୍ରତିସ୍ପର୍ଦ୍ଧୀ ବ୍ୟଞ୍ଜନାରୁ ଅର୍ଥକୁ ଅନେକ ସ୍ଥଳରେ ଅନୁମାନ କରି ନିଆଯାଇପାରେ । ତଥାପି ଏହାର ସ୍ୱରୂପ ଉଦ୍‌ଘାଟନ କରିବାକୁ ଯାଇ Laurrence Durrell କହିଛନ୍ତି—Yet from the point of view of technique the poem is exactly the same sort of thing—the Camera pans slowly over the whole intellectual and spritual battle field of the twentieth century, picking up here a prayer wheel, there a quotation from Tacitus or Baudelaire, stopping

to peep into a medieval missal or to eaves drop upon the love affair of a city typist, to wander down a grimy London street, or to remind itself that the Elizabetheans, gorgeously clad, walked this exhausted stage in which the modern man (in search of belief) wanders. The Waste Land emblames the life of the twentieth century in a series of images, some disgusting, some beautiful, some vague, some sharp as crystal.

ସାଧାରଣ ପାଠକ ପକ୍ଷରେ ସନ୍ତୋଷ ହେଉଛି ଏଇ ଯେ, ସେ କେବଳ ବିଂଶ ଶତାବ୍ଦୀକୁ ସଂଗ୍ରାମକ୍ଷେତ୍ର ବୋଲି ଜାଣେ; କିନ୍ତୁ ଏ ଯୁଦ୍ଧ ଯେ କାହିଁପାଇଁ ତା' ସେ ଜାଣେ ନା । ସେ ଏ କାବ୍ୟ-ପ୍ରତିଫଳିତ ପ୍ରକୃତ ପ୍ରକାଶ ସମ୍ବନ୍ଧରେ ଅଜ୍ଞାତ । ସେ ପାଠକଟି ନ ଥିବା ବିଭିନ୍ନ ଗ୍ରନ୍ଥର, କେବଳ ନାମମାତ୍ର ଶୁଣିଥିବା ଗ୍ରନ୍ଥକାରମାନଙ୍କର ଇଙ୍ଗିତାର୍ଥତାକୁ ଉତ୍ତେଜିତ କରିଦିଏ ଏବଂ 'ସେ ସବୁ' ସରଳବିଶ୍ୱାସୀ ସେଇ ପାଠକକୁ ଶାଣିତ ଓ ବୁଦ୍ଧିଦୀପ୍ତ ବ୍ୟଙ୍ଗର ଶରବ୍ୟ ବୋଧ ଆଣିଦିଏ । ଯେତେବେଳେ ସେ ବୁଝିପାରେ ଯେ, କାବ୍ୟର ପ୍ରଚଳିତ ସ୍ୱର ହେଉଛି ଶ୍ଳେଷ ବା ବ୍ୟଙ୍ଗ, ସେତେବେଳେ ତା'ର ସେଇ ଅସହାୟବୋଧତା ଦୃଢ଼ ହୋଇଯାଏ ।

"Poetry for the average man, is still situated half way between uplift and pure sensation. He hints for a plot, for a structure, and finds instead flight after flight of carefully woven images, sequences of moods which at first he look haphazard, but later come to be recognised as a skilful patterning of feelings" ଏଇ ସବୁ ହେଉଛି ଏଲିଅଟ୍‌ଙ୍କ 'ଊଷର-ଭୂଇଁ'ର ବିଶିଷ୍ଟ ଗୁଣ ।

ମହତ୍ କବି ମଧ୍ୟ ଅଧମର୍ଣ୍ଣ ହୋଇଥାନ୍ତି; କିନ୍ତୁ ଆଣିଥିବା ଋଣକୁ ସେ ସର୍ବଦା କୁସୀଦ ସହ ପରିଶୋଧ କରିଦିଏ । ତଦ୍ୱାରା ତା'ର ସୃଷ୍ଟି ମୂଳ ଋଣର ଗୁଣରୁ ବଳିପଡ଼େ । ଏଲିଅଟଙ୍କ ଉପରେ ମୂଳରୁ ବଦ୍‌ଲେୟାର, ଡନ୍, ଲାଫର୍ଗ ପ୍ରଭୃତିଙ୍କ ପ୍ରଭାବ ପଡ଼ିଛି; କିନ୍ତୁ ଏଲିଅଟଙ୍କର ପ୍ରତିଭା 'ଊଷର

ଭୂଇଁ'କୁ ଏ ସମସ୍ତଙ୍କର ଊର୍ଦ୍ଧ୍ୱକୁ ନେଇ ଯାଇଛି । ଏଲିଅଟ୍ ପ୍ରେମୀଙ୍କର ଖାତିର ନୁହନ୍ତି ବୋଲି ମନେହୁଏ । ତଥାପି ଏହା ମନେ ରଖିବାକୁ ହେବ ଯେ—In the 'waste land' the personate behave like characters in a dream, changing their attributes and shapes, and that Tiresias is a bisexual symbol" ସେତେବେଳେ ଟାଏରେସିଆସ ଜଣେ କାମେରାମେନ୍; କିନ୍ତୁ ସେ କୌଣସି ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ବନ୍ଧା ନୁହେଁ । ସେ ସମୟ ଓ ଇତିହାସ ଭିତରେ ସ୍ୱଚ୍ଛନ୍ଦରେ ବିଚରଣ କରିପାରେ । ନିଜ ଇଚ୍ଛାରେ ସେ ହୋଇପାରେ ଆଧୁନିକ ନାଗରିକ, ମଧ୍ୟଯୁଗୀୟ, କିମ୍ବା ପୁରାତନ ଗ୍ରୀକ୍ । 'ଊଷର ଭୂଇଁ' ହେଉଛି ତା'ର ମାନସିକ ଆତ୍ମଜୀବନୀ । ଆଧୁନିକ ସଂସ୍କୃତିର କଳଙ୍କି ଗଦା ମଧ୍ୟବର୍ତ୍ତୀତାରେ ତା'ର ପବିତ୍ର ମୌଳିକ ମତିର ଅନ୍ୱେଷଣ । ଏହାର ହାନି ଘଟିଛି କାହିଁକି ? ଏହାର ଚିହ୍ନ (clue) କେଉଁଠାରେ ? ଏବଂ ଯଦି ସମ୍ଭବ, ଏହି ସବୁ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କାବ୍ୟର ବ୍ୟାଖ୍ୟା-ସାଧକ ସାଜି, ଏଲିଅଟ୍ ଏକ ବିଶେଷ ଭଙ୍ଗୀରେ ନିଜକୁ ପ୍ରତିଷ୍ଠିତ ରଖି ତାଙ୍କର ସମସ୍ତ ଅଗାଧ ପାଣ୍ଡିତ୍ୟ, ବିପୁଳ ଅଧ୍ୟୟନର ଆହ୍ୱାନ କରିଛନ୍ତି । ଏଥି ସହିତ ଏହି କାବ୍ୟ ଗୋଟିଏ ବଞ୍ଚନା ଓ ସାଧାରଣ ନିୟମ ବହିର୍ଭୂତର ଆଡମ୍ବର ଆମକୁ ଦେଇଥାଏ । ଆତ୍ମଜୀବନ ଚରିତ, ପ୍ରତ୍ନତତ୍ତ୍ୱ, ପୁରାଣତତ୍ତ୍ୱ, ଧର୍ମଗତ ପ୍ରଭୃତି ଭିନ୍ନମୁଖୀ ଅନେକାନେକ କ୍ଷେତ୍ର ଉପରେ ଏହି ଅନ୍ୱେଷଣ ଗତି କରିଥାଏ ।···"And the camera moves backward and forward with a relentless shutting movement over legend, belief and symbol. No sooner does it pick up a figure that it dissolves into its attributes, as a Greek God does when you try and find his essential meaning by consulting a dictionary of mythology. Eliot's characters, like many Greek Gods, enjoy multiple attributes, often opposing one"

## ଏଡ୍‌ଥ୍ ସିଟ୍‌ୱେଲ

ନୂତନ ମନୋବିଜ୍ଞାନ, ନୃତତ୍ତ୍ୱ, ପ୍ରତୀକବାଦ, ଆଧ୍ୟାତ୍ମିକତା ପ୍ରଭୃତି ଏକାଧାରରେ ଏଲିଅଟଙ୍କ କୃତିରେ ସୁଲଭ ଓ ତାଙ୍କର ଚମତ୍କାର ସଫଳତା ପାଇଁ ଏ ସମସ୍ତର ଅବଦାନ କମ ନୁହେଁ । ତଥାପି, କେତେକଙ୍କ ମତରେ

ଏଲିଅଟ୍‌ଙ୍କୁ ଇଂରାଜୀ ସାହିତ୍ୟରେ ଆଧୁନିକତାର ଅଗ୍ରଦୂତ ବୋଲି ଅଭିହିତ କରାଯାଇ ନ ପାରେ । Miss Edith Sitwell ସେହି ସମ୍ମାନର ନ୍ୟାୟସଙ୍ଗତ ଅଧିକାରିଣୀ ବୋଲି ସେମାନଙ୍କର ମତ । କାରଣ ଅବଶ୍ୟ ଏହା ନୁହେ ଯେ; Edith Sitwell ପରମ୍ପରାକୁ ପୂରାପୂରି ତ୍ୟାଗ କରିଥିଲେ । ସେ ତ ଛନ୍ଦ, ଏପରି କି ଯଥାସ୍ଥାନରେ ତାଳ ପ୍ରତି ମଧ୍ୟ ସହନଶୀଳ ଥିଲେ । ତାଙ୍କର ନବପ୍ରୟୋଗର ଦିଗ ଭିନ୍ନ । ସେ ଆମକୁ କହିଛନ୍ତି ଯେ, ତାଙ୍କର ଅନୁଭୂତିଗୁଡ଼ିକ ପରସ୍ପର ବିନିମେୟ । ତାଙ୍କଠାରେ ଏକପ୍ରକାର ବିରଳ ସଂଶ୍ଳେଷଣାନୁଭୂତିର କ୍ଷମତା ଥିଲା । ଅନେକ ଲୋକ ଧ୍ୱନିକୁ ଦେଖନ୍ତି, Miss Edith Sitwell ବର୍ଣ୍ଣଗୁଡ଼ିକୁ ଶ୍ରବଣ କରନ୍ତି । ଦୃଷ୍ଟ ବସ୍ତୁଗୁଡ଼ିକର ସତ୍ତାକୁ ଭେଦ କରିବାପାଇଁ ସେ ଏକ ପ୍ରତିଭାକୁ ପ୍ରୟୋଗ କରନ୍ତି । ଏଥିପାଇଁ ସେ ସଂଶୟାତ୍ମକ ବା କ୍ଲିଷ୍ଟ ପ୍ରତୀକ କିମ୍ବା ଶିଥିଳ ଉପମା (Loose metaphore) ବ୍ୟବହାର କରନ୍ତି ନାହିଁ, ବରଂ, ଚିତ୍ରକଳ୍ପ ପ୍ରୟୋଗ କରନ୍ତି । ତାଙ୍କର କୃତିରେ ଅନ୍ତର୍ଗୀତିମୟତା (assonance) ଅନୁପ୍ରାସ ଓ ବିରାମର ପରୀକ୍ଷା ହୋଇଥିବାର ଦେଖାଯାଏ ।

## କଳାରେ ବୈୟକ୍ତିକତା ସମ୍ବନ୍ଧରେ ଏଲିଅଟ

ବ୍ୟକ୍ତିତ୍ୱ ପ୍ରକାଶର ନିରାକରଣ ଏବଂ ଆତ୍ମାଭିବ୍ୟକ୍ତି ଉପରେ କଳାର ନିର୍ବୈକ୍ତିକତାର ଅଧିକାର ଏବଂ କଳା ଓ ଘଟଣା ମଧ୍ୟସ୍ଥ ପାର୍ଥକ୍ୟର ଉଦ୍‌ଘୋଷଣ ଏଲିଅଟ୍‌ଙ୍କର କବିତାରେ ବାରମ୍ବାର ମିଳିଥାଏ । ସେ ନିଜେ କହିଛନ୍ତି ଯେ, କଳାକାର ଯେତେ ନିପୁଣ ହୁଏ, ତାହାର ଭିତରେ ଅନୁଭବୀ ସୃଜନଶୀଳ ମନର ପାର୍ଥକ୍ୟ ସେତେ ଅଧିକ ହୋଇଥାଏ । କବି ବ୍ୟକ୍ତିତ୍ୱକୁ ପ୍ରକାଶ କରିବା ଦରକାର କରେ ନାହିଁ । ସେ କେବଳ ଗୋଟିଏ ମାଧ୍ୟମକୁ ପ୍ରକାଶ କରେ, ଯାହା କେବଳ ଗୋଟିଏ ମାଧ୍ୟମ ଓ ଅପ୍ରତ୍ୟାଶିତ, ନିର୍ଦ୍ଦିଷ୍ଟ କେତେକ ମନୋବସ୍ଥା—ଅନୁଭୂତିସମ୍ପନ୍ନ—ବ୍ୟକ୍ତିତ୍ୱ ନୁହେଁ ।

କବିତା ସମ୍ବେଦନାର ଶିଥିଳୀଭବନ ନୁହେ—ଏହା ବରଂ ସମ୍ବେଦନା (Emotion) ଠାରୁ ପଳାୟନ । ଏହା ବ୍ୟକ୍ତିତ୍ୱର ପରିପ୍ରକାଶ ନୁହେ; ବରଂ ବ୍ୟକ୍ତିତ୍ୱଠାରୁ ନିଷ୍କୃତି । ଏହି dictumର ପାଳନ ଓ ପୋଷଣ ଆଧୁନିକ ଓଡ଼ିଆ କବିତାରେ କେତେଦୂର ହୋଇଛି, ଦେଖିବାର କଥା ।

କବିର କର୍ତ୍ତବ୍ୟ ହେଉଛି 'ଏକ'ର ଅନୁଭବ କରାଇବା ଏବଂ ବିଶ୍ୱ ସହିତ ଏକାତ୍ମଭାବ ଜାତ କରାଇବା । ପ୍ରଥମରେ ସେ ବହିର୍ଜଗତରେ ନିଜକୁ ହଜାଇ ଦେଇ ତାର ବାହାରେ ଥିବା ବସ୍ତୁରେ ସୌନ୍ଦର୍ଯ୍ୟର ବର୍ଣ୍ଣନ କରିଥାଏ । ଦ୍ୱିତୀୟରେ ସେ ନିଜର ସୁଖ ଦୁଃଖର ଅନୁଭୂତି ସବୁକୁ ପ୍ରକଟ କରିଥାଏ । କିନ୍ତୁ ଏହାର ଅର୍ଥ ନୁହେ ଯେ, ତା'ର ଭାଷା ଓ ଭାବ ଅନ୍ୟର ବୋଧଗମ୍ୟ ହେବ ନାହିଁ । ତା' ହେଲେ ତାହା କାବ୍ୟ ବା କବିତା ନ ହୋଇ ତାର ବ୍ୟକ୍ତିଗତ ଦୈନିକ ଲିପି ହିଁ ହୋଇ ରହିଯିବ । ପୁନଶ୍ଚ ଯାହା କୌଣସି ବ୍ୟକ୍ତିର ବୋଧତାର ସଂକୀର୍ଣ୍ଣ ସୀମାରେ ଆବଦ୍ଧ, ତାହା ଆମକୁ କିପରି ପ୍ରଭାବିତ କରି ପାରିବ ଏବଂ ଅଖଣ୍ଡ ଐକ୍ୟର ଅନୁଭବ ଆଣି ଦେଇ ପାରିବ ? ପ୍ରକୃତ କବିର ଅନ୍ତର୍ଦ୍ଦେଶରେ ଏ ପ୍ରକାର ସାମର୍ଥ୍ୟ ବା ଶକ୍ତି ରହିଛି, ଯାହା ତା'ର ନିଜର ସୁଖ ଦୁଃଖ, ହର୍ଷବିଷାଦ, କଳ୍ପନା ଓ ଅଭିଜ୍ଞତାର ପଥଦେଇ ବିଶ୍ୱମାନବର ଚିରନ୍ତନ ହୃଦୟାବେଗ ଏବଂ ଜୀବନର ମର୍ମବ୍ୟଥାକୁ ଅନା-ୟାସରେ ପ୍ରତିଧ୍ୱନିତ କରିପାରିଥାଏ । କାଳିଦାସଙ୍କର—

ଯାସ୍ୟତ୍ୟାଦ୍ୟ ଶକୁନ୍ତଳେତି ହୃଦୟଂ ସଂସ୍ପୃଷ୍ଟ ମୁତ୍କଣ୍ଠୟା
ଅନ୍ତର୍ବାଷ୍ପଭରୋପରୋଧି ଗଦିତଂ ଚିନ୍ତାଜଡ଼ଂ ଦର୍ଶନମ୍,
ବୈକ୍ଲବ୍ୟଂ ମମ ତାବଦୀଦୃଶମପି ସ୍ନେହାଦରଣ୍ୟୌକସଃ,
ପୀଡ଼୍ୟନ୍ତେ ଗୃହିଣଃ କଥଂ ନ ତନୟା ବିଶ୍ଳେଷଦୁଃଖୈନବୈଃ ।

ଶକୁନ୍ତଳା ପତିଗୃହକୁ ଗମନ କରିବ ଭାବି ମହର୍ଷି କଣ୍ୱଙ୍କର ହୃଦୟ ଅତ୍ୟନ୍ତ ଉତ୍କଣ୍ଠିତ ଏବଂ ତାଙ୍କର ଭାଷା ମଧ୍ୟ ଅନ୍ତର୍ଗତ ବାଷ୍ପରେ ଅବରୁଦ୍ଧ ହୋଇ ପଡ଼ୁଛି । ଚକ୍ଷୁଦ୍ୱୟ ଚିନ୍ତାରେ ଜଡ଼ୀଭୂତ । ସୁତରାଂ କଣ୍ୱ ଚିନ୍ତା କରୁଛନ୍ତି ଯେ, ସେ ବନବାସୀ ତାପସ । ସ୍ନେହବଶରେ ତାଙ୍କର ଯଦି ଏପରି ବିକଳତା ଉପସ୍ଥିତ ହେଲା, ତେବେ ଯେଉଁମାନେ ଗୃହୀ, ଜାଣେନା, ଏଇ ନୂତନ କନ୍ୟା-ବିଚ୍ଛେଦରେ ସେମାନେ କେତେ ଯେ କଷ୍ଟ ଭୋଗ କରୁନଥିବେ !

ମହାକବି କାଳିଦାସ ଏଇ ଗୋଟିଏ ମାତ୍ର ପଦରେ ବିଶ୍ୱ ମାନସର ଅନ୍ତରକୁ ହିଁ ଭେଦ କରି ଯାଇଅଛନ୍ତି । ବୀଣାର ଗୋଟିଏ ତାରରେ ଆଘାତ ଦେଲେ ଯେପରି ସମସ୍ତ ତାରରେ ସ୍ୱରର ଅନୁରଣନ ସୃଷ୍ଟି ହୋଇଥାଏ, ସେହିପରି କବିର ଆହତ ହୃଦୟ ସହୃଦୟ ମାତ୍ରକୁ ହିଁ ସମଭାବାପନ୍ନ କରିଦେଇ ବିଶ୍ୱ ସହିତ ଏକାତ୍ମବୋଧ ଆଣିଦିଏ ।

ପଞ୍ଚପ୍ରାଣୀ ସଙ୍ଗୀ ସୀତା ପକ୍ଷୀଙ୍କ ଦ୍ୱାରା ନିର୍ବାସିତା ହୋଇ ଯେଉଁ ବେଦନା ନିଜର ମର୍ମମୂଳରେ ଅନୁଭବ କରିଛନ୍ତି, ତାକୁ ମେଘଦୂତର କବି ନିଜ ପ୍ରାଣରେ ପୂର୍ଣ୍ଣ ଉପଲବ୍ଧି କଲାପରି ସାମ୍ବେଦନିକ କଣ୍ଠରେ ଗାଇଛନ୍ତି—

ଖଜୁରିଆ କର ବିକ୍ଷତ ଖର୍ଜୁର ନୀରବେ ନିଷ୍ଠଳେ ଯଥା
ରସତ୍ୟାଗ କରେ କ୍ଷୋଭ ଆଘାତରେ ସଙ୍ଗୀ ଦଶା ହେଲା ତଥା ॥

ସୀତାଙ୍କର କାରୁଣ୍ୟକୁ ଗଭୀରତର କରି ଫୁଟାଇବାପାଇଁ କବି ଖଜୁରିଆ କରବିକ୍ଷତ ଖର୍ଜୁରର ଯାତନାକୁ ଆମ ଚକ୍ଷୁ ଏବଂ ହୃଦୟ ସମକ୍ଷରେ ଉପସ୍ଥାପିତ କରିଅଛନ୍ତି । ପ୍ରାଣୀର ବେଦନାକୁ ଜଡ଼ରେ ଏବଂ ସେହି ଜଡ଼ର ବେଦନାକୁ ପୁଣି ଜଗତର ପ୍ରାଣରେ ତରଙ୍ଗାୟିତ କରିବାର ଏହା ଏକ ଦୃଷ୍ଟାନ୍ତ । ଏହା ହେଉଛି ଭାବମାଧ୍ୟମରେ ରୂପର ଏବଂ ରୂପ ମାଧ୍ୟମରେ ଭାବର ସାନ୍ଦ୍ର ପ୍ରକାଶ ସହ ନିଜ ପ୍ରାଣରେ ବିଶ୍ୱ ପ୍ରାଣକୁ ଅନୁଭବ କରିବା ଏବଂ ତାହା ନିବିଡ଼ଭାବରେ ଅନ୍ୟ ପ୍ରାଣରେ ସଞ୍ଚାର କରାଇବା ।

କବି ନିଜର ସୀମିତ ବ୍ୟକ୍ତିଭିତରେ ଯେଉଁ ସୁଖ ଦୁଃଖର ଅନୁଭବ ଅର୍ଜନ କରିଥାଏ, ତାକୁ ଯେତେବେଳେ ସେ କଳ୍ପନା ସାହାଯ୍ୟରେ, ଛନ୍ଦ, ଉପମା ଅଳଙ୍କାର ଆଦିର ସଂଯୋଗରେ ଏବଂ ନିଖିଳ ବିଶ୍ୱର ମର୍ମବ୍ୟଥାକୁ ଚିନ୍ତାରେ ଆଣି ନିର୍ବୈକ୍ତିକ ରୂପରେ ପ୍ରକଟ କରେ, ସେତେବେଳେ ତାକୁ ଆମେ ଅନୁଭୂତ ଅବସ୍ଥା କହୁଥାଉଁ । ଏହି ଅବସ୍ଥାରେ କବି ନିଜର ସୀମିତ ସୁଖ ଦୁଃଖକୁ ଅସୀମ ବିଶ୍ୱରେ ହିଁ ଅନୁଭବ କରିଥାଏ ।

## ଅତି ବାସ୍ତବବାଦ

ନୂତନ କବିତାର କ୍ଷେତ୍ର ଅତି ବ୍ୟାପକ । କେବଳ ଚେତନମନର ବିଷୟ, ପ୍ରଭାବ ବା ଅନୁଭବ ତା'ର ବିଷୟବସ୍ତୁ ହୋଇ ନାହିଁ, ଅଧିକନ୍ତୁ ଅବଚେତନ ମନର ଅସ୍ପଷ୍ଟ ଓ ଅସଂବଦ୍ଧ ଅନୁଭୂତିଗୁଡ଼ିକ ମଧ୍ୟ ନୂତନ କବିତାର ଉପଜୀବ୍ୟ ହେବା ଆରମ୍ଭ ହୋଇଛି । ସ୍ୱପ୍ନଆବିଷ୍ଟ ଭାବ ଏବଂ ଦିବା ସ୍ୱପ୍ନର ଅସଂଲଗ୍ନ କଥାଗୁଡ଼ିକ କବିତାର ମନୋହର ବିଷୟ ବୋଲି ଧରାଯାଇଛି । ନାନାପ୍ରକାର ମନୋବୈଜ୍ଞାନିକ ଅଙ୍କଶାସ୍ତ୍ରୀୟ, ତର୍କଶାସ୍ତ୍ରୀୟ ପ୍ରତୀକଗୁଡ଼ିକର ପ୍ରୟୋଗଫଳରେ କବିତାକ୍ଷେତ୍ରରେ ନୂତନ ଧରଣର ଜଟିଳତା ଦେଖାଦେଇଛି । ଏହି ଜଟିଳତା ନଗ୍ନ

ଯଥାର୍ଥବାଦୀ କାବ୍ୟ-ସାହିତ୍ୟକୁ ସମ୍ପୂର୍ଣ୍ଣ ପରାଭୂତ କରିଦେବା ଫଳରେ ଏହାକୁ ଅତି ଯଥାର୍ଥବାଦ ବା ଉଗ୍ର ବାସ୍ତବବାଦ (Surrelism) କୁହାଯାଉଛି । ଫ୍ରଏଡ୍ ମନୋବିଜ୍ଞାନ ଶାସ୍ତ୍ରରେ ଅବଚେତନ ମନର ଯେଉଁ ପ୍ରତୀକ ସବୁ ଉପସ୍ଥାପନ କରିଛନ୍ତି, ସେ ସବୁର ଉଲ୍ଲଙ୍ଘ ବ୍ୟବହାର ବର୍ତ୍ତମାନ ଆମ ଓଡ଼ିଆ କବିତାରେ ଆରମ୍ଭ ହୋଇଛି । ବହୁ ଓଡ଼ିଆ କବିତାରେ ବ୍ୟକ୍ତିଗତ ଅହଂର ପରିପ୍ରକାଶ ଓ ବ୍ୟକ୍ତିଭାବନାର ସ୍ୱରୂପ ପ୍ରକଟିତ । ସେମାନେ ବହୁସଂଖ୍ୟକ ଓ ଆମର ନିକଟତର । ଅନେକଙ୍କର ଯାନ୍ତ୍ରିକ ସଙ୍ଗଠନ ଓ ଇସ୍ତାହାର ସବୁ ରହିଛି । ଏବର ବ୍ୟକ୍ତିକେନ୍ଦ୍ରିକ ଓ ଯୌନଜୀବନ-ପ୍ରଧାନ କବିତା ସବୁର ଦୃଷ୍ଟାନ୍ତ ଥୋଇ ଏ ପ୍ରବନ୍ଧର କଳେବରକୁ ଆହୁରି ସ୍ଫୀତ କରିବାକୁ ମୋର ଇଚ୍ଛା ହେଉନାହିଁ । ବର୍ତ୍ତମାନ ଅବସ୍ଥା ହେଉଛି ଯେ, Eliot ପାଶ୍ଚାତ୍ୟ ଦେଶର ଉଗ୍ର ବାସ୍ତବବାଦୀମାନଙ୍କୁ ରାଗିଯାଇ "every one talks of poetry but no one gives us poem" ଯିମିତି କହିଥିଲେ, ସିମିତି ଓଡ଼ିଆ ଆଧୁନିକ କବିତାର କେତେକ ପୃଷ୍ଠପୋଷକ ମଧ୍ୟ ଏବର ଅର୍ବାଚୀନ ଗୋଷ୍ଠୀକୁ ଆକ୍ଷେପ କରିବାରେ ଲାଗିଲେଣି । ଏଇ ନୂତନ ଦଳରେ କେତେକ ପ୍ରତିଭାଧର ଓ ଶକ୍ତିଶାଳୀ ଲେଖକ ଯେ ନାହାନ୍ତି, ତା' ନୁହେଁ । ଅନେକ ସମୟରେ ସେମାନଙ୍କର ସାର୍ଥକ କବିତା ସବୁ ଆମକୁ ଆଶାୟୀ କରି ରଖିଛି । ତେବେ ବହୁତ କିଛି ଅକବିତା ମଧ୍ୟ କବିତା ନାମରେ ଆତ୍ମପ୍ରକାଶ କରୁଛି । ଏ ସବୁ ଦେଖି H. Grierson ଓ J. C. Smith ତାଙ୍କର 'A Critical History of English Poetry'ର ଆରମ୍ଭରେ କହିଥିବା "Time has not yet shifted the wheat of recent poetry from the chaff' ଅର୍ଥାତ୍ 'ସମୟ ବା କାଳ ଆଧୁନିକ କବିତାର ଚାଉଳରୁ ଚଷୁକୁ ଏଯାଏ ଭିନ୍ନ କରି ନାହିଁ' ଉକ୍ତିଟି ସ୍ୱତଃ ମନେ ପଡ଼ିଯାଉଛି ।

ନୂତନ କବିତା ଅନେକ କିଛି ଲେଖା ହୋଇଗଲାଣି । ସେ ସବୁର ମୂଲ୍ୟାଙ୍କନ ପୁନର୍ମୂଲ୍ୟାଙ୍କନ କରି କେତେକର ସଂରକ୍ଷଣ ଓ କେତେକର ବିସର୍ଜନ ପ୍ରଶ୍ନ ବର୍ତ୍ତମାନ ଗୁରୁତ୍ୱପୂର୍ଣ୍ଣ ବୋଲି ମୋର ମନେହୁଏ । Now time has come to sift the rice of recent Oriya Poetry from the chaff. ଏହା ନ କଲେ ଆମର ଉତ୍ତର ପୁରୁଷ ବିଭ୍ରାନ୍ତ ହୋଇଯିବାର ଆଶଙ୍କା ସମାଭୂତ ହେଉଛି । ଏ ଦିଗରେ ଉଲ୍ଲେଖଯୋଗ୍ୟ ପଦକ୍ଷେପ ହୋଇ ନାହିଁ । ପୁନର୍ମୂଲ୍ୟାଙ୍କନ ତ ଦୂରର କଥା, ଏପର୍ଯ୍ୟନ୍ତ ଆଧୁନିକ କବିତାର

ପ୍ରକୃତ ମୂଲ୍ୟାଙ୍କନ ସୁଦ୍ଧା ହୋଇ ନାହିଁ । ଯାହା କିଛି କାଁ-ଭାଁ ହୋଇଛି, ସେ ସବୁ ବାହାରର ଫେକାପଥର ମାଡ଼ରୁ ନିଜକୁ ରକ୍ଷା କରିବା ବାହାନାରେ । ଏପରି ପରିସ୍ଥିତିରେ ଆଲୋଚନା Judicial ହୋଇଯିବାର ସମ୍ଭାବନା ଅଧିକ ।

ଅବଚେତନ ମନକୁ ନେଇ କାରବାର ଚଳାଇଥିବା ଉଗ୍ରବାସ୍ତବବାଦୀ କବିତାର ଡାକ୍ତରୀ ମହତ୍ତ୍ୱ ଥାଇପାରେ; କିନ୍ତୁ ତାହାର କାବ୍ୟିକ ମହତ୍ତ୍ୱ ନାହିଁ ବୋଲି ଅନେକେ ମତବ୍ୟକ୍ତ କରନ୍ତି । ଉଗ୍ରବାସ୍ତବବାଦୀ ବିଷୟଗୁଡ଼ିକୁ କାବ୍ୟିକ କରିବାକୁ ହେଲେ ଚେତନ ମନ ସାହାଯ୍ୟରେ ସେ ସବୁକୁ ପ୍ରାସଙ୍ଗିକ ଓ ଅର୍ଥବାନ୍ କରିବାକୁ ହେବ ।

### ପରମର୍ଣ୍ଣ ଓ ନୂତନଙ୍କର ଅବସ୍ଥା

ନୂତନଦଳର ପ୍ରମୁଖଭାବରେ W.B. Yeats, Auden, Spender, Dylan, Thomas, William Empson, George Barker ଏବଂ ନାରୀ କବିମାନଙ୍କ ମଧ୍ୟରେ Kathleen Raine, Anne Ridler ପ୍ରଭୃତିଙ୍କ ନାମୋଲ୍ଲେଖ କରାଯାଇପାରେ । ଏମାନେ ସମସ୍ତେ ୧୯୩୦ର ଉଜ୍ଜ୍ୱଳ ପ୍ରତିଭା, ଯେଉଁମାନଙ୍କର ଧାଡ଼ି New signature group (ନୂତନ ସ୍ୱାକ୍ଷର ଦଳ)ର ଚକ୍ଷୁ ଝଲସାଇ ଦେଇଥିଲା । ୧୯୩୦ ପରେ ଇଂରାଜୀ କବିତା କ୍ଷେତ୍ରରେ ଯେଉଁ ଅରାଜକତା ଓ ବିପ୍ଳବ ଦେଖାଦେଲା; ତା' ଫଳରେ ଇଂଲଣ୍ଡର ଜନମାନସ ଅତିଷ୍ଠ ହୋଇ ପଡ଼ିଥିବା ପରି ଜଣାଯାଇଛି । ସେଠାରେ ଆଜ ନୂତନ କବିତାର ଆଦର ନାହିଁ । ବର୍ତ୍ତମାନ ଅନେକେ ସିଂହାବଲୋକନ କରି ଯାଧାପଥକୁ ସୁଷ୍ଠୁ କରିବାକୁ ଲାଗିଁଲେଣି । ଗୋଟିଏ ଦିଗରେ ଟେକ୍‌ନୋଲଜି-ସର୍ବସ୍ୱ ନବବର୍ବରତାର ଅଭ୍ୟୁତ୍ଥାନ ଏବଂ ଅପର ଦିଗରେ ଗୋଷ୍ଠୀକାବ୍ୟର ସମଜଦାର୍‌ମାନଙ୍କ ଢକ୍‌କାନିନାଦ ଉଭୟର ଚାପରେ ଆଜ ଇଂଲଣ୍ଡର କାବ୍ୟଲକ୍ଷ୍ମୀ ଶ୍ୱାସରୁଦ୍ଧ ହୋଇ ମୃତପ୍ରାୟ । ସେସିଲ ଡେଲୁଇସ୍‌ଙ୍କ ପରି ବ୍ୟକ୍ତି କହିଛନ୍ତି, ବର୍ତ୍ତମାନ ଇଂଲଣ୍ଡରେ କବିତା ଗୋଟିଏ ଅପ୍ରଧାନ ଶିଳ୍ପ (Minor art) ରେ ପରିଣତ ହୋଇଛି । F. R. Leavis ଏ କବିତା ପ୍ରତି ନାସିକା କୁଞ୍ଚନ କରିଛନ୍ତି । H. Griearson ଏବଂ J. C. Smith, ତାଙ୍କର 'A Critical History of English Poetryର ଶେଷ ଆଡ଼କୁ ବର୍ତ୍ତମାନର ଅବସ୍ଥାକୁ ଲକ୍ଷ୍ୟ ରଖି କହିଛନ୍ତି—"Moreover the

difference seems to be lessening. The traditionists have some thing to learn in varaiety of subject matter. Vocabulary and rhyme and more to teach in the quality that make poetry pleasurable clarity, shapeliness and melody. On the whole the traditionists seem to be winning, in that fine anonymous anthology. Fear no more, which appear in 1940, five poems in every seven are in rhyme. Perhaps we are approaching the confluence of the two streams. ଖାଲି ସେତିକି ନୁହେଁ, ଏବେ "The New Poetry" ଶୀର୍ଷକ ଗୋଟିଏ ସଙ୍କଳନ ଇଂଲଣ୍ଡରେ ପ୍ରକାଶ ପାଇଛି, ଯହିଁରେ ମୁକ୍ତ ଛନ୍ଦ ପରିତ୍ୟାଗ କରାଯାଇ ମିଳରର ପୁନର୍ବ୍ୟବହାର ଏବଂ ଉପମା-ଉପମେୟ ବା ରୂପକଳ୍ପ-ମାଧ୍ୟମରେ ଏଥିରେ କ୍ଲିଷ୍ଟତା ଓ ଦୁର୍ବୋଧତା ସୃଷ୍ଟି କରାଯାଇ ନାହିଁ । ଦେଖାଗଲାଣି ଯେ, ଯେଉଁ ଦେଶରେ ସାହିତ୍ୟର ଅନ୍ତତଃ ଗୋଟିଏ ଦୃଢ଼ ପରମ୍ପରା ଅଛି, ସେଥିରେ ଆଲୋଚ୍ୟ ଆଧୁନିକ କବିତାର ସ୍ରୋତ ଆଉ ଉଧେଇ ପାରୁନାହିଁ । David Daichesଙ୍କ ଭଳି ପଣ୍ଡିତ ଓ ସହୃଦୟ ସମାଲୋଚକ ତ ଏଲିଅଟ୍‌ଙ୍କ ଗଣ୍ଡାର ଚର୍ମ ଉପରେ ଗୁଳି କରିବାକୁ ଛାଡ଼ି ନାହାନ୍ତି ।

ଓଡ଼ିଆ କବିତା ସମ୍ବନ୍ଧରେ ଏ ବିଷୟ ଦେଇ ଆଉ କିଛି କହିବାର ଆବଶ୍ୟକତା ଦେଖୁନାହିଁ···what England thinks to day Bengal thinks tomorrow ବୋଲି ଏବେ ଜଣେ ଖ୍ୟାତନାମା ବଙ୍ଗାଳୀ ସାହିତ୍ୟିକ ଓ ସମାଲୋଚକ କହିଛନ୍ତି । ଆମେ କହିପାରୁ···and what Bengal thinks tomorrow Orissa thinks···ଇଂଲଣ୍ଡ ଏ ଦିଗରେ ଯେତେବେଳେ ନିମ୍ନଗାମୀ, ଆମେ ବୁଡ଼ି ମରିବାକୁ ଆଉ ବେଶି ସମୟ ଅଛି କି ? ଗୋଟିଏ ବେଙ୍କ୍ ଉପରେ ଚେକ୍ କାଟି ଆମ ଦେଶର ଆଧୁନିକ କବିତା ତାହାର ଆଧୁନିକତ୍ୱ କ୍ରୟ କରି ସାରିଛି । ସେହି ବେଙ୍କ୍‌ରେ ଏବେ ଲାଲବତୀ ଜଳିଲାଣି !

### ବର୍ତ୍ତମାନ କର୍ତ୍ତବ୍ୟ

ତେବେ···? ତେବେ ଆବଶ୍ୟକ ଉପଯୁକ୍ତ ପ୍ରସ୍ତୁତି । ଆଳସ୍ୟ, ଭେଦବୁଦ୍ଧି, ଦଳଗଠନ ମାଧ୍ୟମରେ ଆତ୍ମପ୍ରଚାର ଓ ସର୍ବପ୍ରକାର ସଂକୀର୍ଣ୍ଣତାକୁ ଆବର୍ଜନା

ଧଳ ସମାଜ ହେବାରୁ ବିଦାୟ ହେବାକୁ ହେବ । ସ୍ୱାର୍ଥ ଚିନ୍ତାର ପାପବ୍ୟୂହ ଭେଦକରି ଆମକୁ ଊର୍ଦ୍ଧ୍ୱକୁ ଉଠିବାକୁ ହେବ । ମୁଁ କେବଳ ମୋର ନୁହେଁ, ତୁମେ କେବଳ ତୁମର ନୁହଁ । ମୋର ଏବଂ ତୁମ ଅପେକ୍ଷା ବୃହତ୍ତର ଏବଂ ମହତ୍ତର ଏପରି କିଛି ରହିଛି, ଯାହାର ଅଂଶୀଭୂତ ହୋଇ ପାରିବାହିଁ ମୋର ଏବଂ ତୁମର ପକ୍ଷରେ ସବୁଠୁଁ ଗୌରବର ବିଷୟ ।

ଆମ ଉପରେ ଚୀନ ଓ ପାକିସ୍ତାନର ଦୁଇ ଦୁଇଟି ଆକ୍ରମଣ ଫଳରେ ସାହିତ୍ୟକର ସମସ୍ୟା ଓ କଳ୍ପନାର ଦିଗନ୍ତ ବିସ୍ତୃତତର ହୋଇଉଠିଛି । ନୂତନ ନୂତନ ବିଷୟବସ୍ତୁକୁ, ନୂତନ ସମସ୍ୟା ଓ ଦ୍ୱନ୍ଦ୍ୱ, ନୂତନ ଅନୁଭୂତିର ତୀବ୍ରତା ଓ ଜଟିଳତାକୁ ସାହିତ୍ୟର ବା କବିତାର ଅଙ୍ଗୀଭୂତ କରିନେବାର ସୁଯୋଗ ଆସିଛି । ସଙ୍ଗେ ସଙ୍ଗେ ଏକଥା ମଧ୍ୟ ଚିନ୍ତନୀୟ ଯେ, ଆଦର୍ଶ ପୁରାତନ ହେଲେ ମଧ୍ୟ ପରିବର୍ଜନୀୟ ହୁଏନା । ବହୁ ପୁରାତନକୁ ଏବେ ନୂତନ ଦୃଷ୍ଟିରେ ଦେଖିବାର ଅବକାଶ ଆସିଛି । ସେ ସବୁର ଭିତରେ ନବ ସମ୍ଭାବନାର କେତେ ଯେ ଆକର ପ୍ରଚ୍ଛନ୍ନ, ତାହା ସମ୍ୟକ ରୂପେ ପ୍ରଣିଧାନର ସମୟ ସମାଗତ ।

ମନେ ରଖିବାକୁ ହେବ ଯେ, ଆମର ହଜାର ହଜାର ବର୍ଷର ବଳିଷ୍ଠ ପରଂପରା ଅଛି । ସେହି ପରଂପରାର ସୁଦୃଢ଼ ଭିତ୍ତିରେ ଆମର ସାହିତ୍ୟ, ସଂସ୍କୃତି ଓ କଳା ପ୍ରତିଷ୍ଠିତ । ପରଂପରାହୀନ ଦେଶ ଓ ସାହିତ୍ୟକୁ ଅନୁକରଣ କରି ଉନ୍ନତିର ଶିଖର ଦେଶକୁ ଆରୋହଣ କରିବାର ଆଶା ସମୀଚୀନ କି ? ଆମେ ଭିତ୍ତିହୀନ ପ୍ରାସାଦ ତୋଳି, ତା'ର ଦୀର୍ଘ କାଳ ସ୍ଥାୟିତ୍ୱ ଓ ବଳିଷ୍ଠତା ସଂବନ୍ଧରେ ବାହାସ୍ଫୋଟ ମାରି ପାରିବା କି ? ଆଜି ଆମେ ସମସ୍ତେ ଉପଲବ୍ଧି କରିବା କି ଯେ, ସାହିତ୍ୟର ଉପଜୀବ୍ୟ ହିସାବରେ ଅବୈଧ ପ୍ରେମ ଅପେକ୍ଷା ଦେଶପ୍ରେମ ଅଧିକ ଗୁରୁତ୍ୱପୂର୍ଣ୍ଣ, ଆତ୍ମରତି ଅପେକ୍ଷା ଆତ୍ମୋତ୍ସର୍ଗ ଯଥେଷ୍ଟ ମହତ୍ତର, ବ୍ୟକ୍ତିଚିନ୍ତା ଅପେକ୍ଷା ବିଶ୍ୱଚିନ୍ତା ଅଧିକ କିଛି ମୂଲ୍ୟବାନ ? ଜୀବନକୁ ଉପେକ୍ଷା କରିବା ପରିବର୍ତ୍ତେ ଜୀବନ ଉପରେ ଅତୁଟ ବିଶ୍ୱାସହିଁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ଏ ସବୁ ଉଲ୍ଲେଖ କରିବା ଦ୍ୱାରା କେହି ଭାବନ୍ତୁ ନାହିଁ ଯେ, ମୁଁ ବାଇବେଲର ଈଶ୍ୱରଙ୍କ ଆଦେଶବାଣୀ (Commendments) ଶୁଣାଉଛି । ସଂଗେ ସଂଗେ "ଥୋଇ ଏ ମୁକୁର ତୁମ ଆଗେ ଧରି, ନିଜ

ମୁଖ ମୁ'କ ନଜେ ଦେଖୁନାହିଁ ?" ପଦଟି ମଧ୍ୟ ସ୍ମରଣ ରଖିଛୁ । ମୋର ଏ ସମସ୍ତ ଅନୁଯୋଗ, ଅନୁରୋଧ, ଅନୁଧାବନ, ଅନୁଶୀଳନ ଯଦି କାହାର ଅରୁଚକର ହୁଏ, ତେବେ "ଉଷର ଭୂଇଁ"ର

"When lovely woman stoops to folly and,
Paces about her room again alone,
She smoothes her hair with automatic hand,
And puts a record on the gramophone."

ଏହି ଉଦାହରଣଟି କପଟ୍ ସ୍ୱାଦ୍ୟ ଓ ହୃଦ୍ୟ ହୋଇପାରେ ତାହା ବିଚାର କରିବେ ।

## ସହାୟକ ଗ୍ରନ୍ଥ

(i) A Critical History of English Literature.
(ii) Key to Modern Poetry.
(iii) A Critical History of English Poetry.
(iv) 'ସାହିତ୍ୟ ଓ ସାହିତ୍ୟକ' ।



# ଆଧୁନିକ କବିତାରେ ପ୍ରତିରୂପ ଓ ଚିତ୍ରକଳ୍ପର ବ୍ୟବହାର

ଏବେ ମଧ୍ୟ ଅନେକ ପ୍ରଶ୍ନ କରନ୍ତି, କେଉଁ ସ୍ୱାଭାବିକ ଗୁଣଦ୍ୱାରା ଆଧୁନିକ କବିତାର ସାଫଲ୍ୟ ପ୍ରତିପାଦିତ ହୋଇଛି ? କାବ୍ୟ-ଇତିହାସର ଦୃଷ୍ଟିକୋଣରୁ ଏଲିଏଟଙ୍କ ୱେଷ୍ଟଲ୍ୟାଣ୍ଡ୍‌ର ଗୁରୁତ୍ୱ ଏବଂ ୱାର୍ଡ୍‌ସ୍‌ୱାର୍ଥ ଓ କଲେରିଜଙ୍କ ଲିରିକାଲ୍ ବାଲାଡ୍‌ସ (The Lyrical Ballads)ର ଗୁରୁତ୍ୱ ପ୍ରାୟ ସମାନ । କିନ୍ତୁ ୧୭୯୮ର ପାଠକମାନଙ୍କ ଉପରେ ଲିରିକାଲ ବାଲାଡ୍‌ସ୍‌ର ପ୍ରଭାବ ବିଶେଷତଃ କାବ୍ୟ ବିଷୟବସ୍ତୁର ନୂତନତ୍ୱ ଦ୍ୱାରା ସମ୍ଭବ ହୋଇଥିଲା । କାରଣ ରୋମାଣ୍ଟିକ୍ (Romantic) କବିମାନେ କାବ୍ୟରୂପ ବା କାବ୍ୟଗଠନ (Form) ଅପେକ୍ଷା କବିତାର ବିଷୟବସ୍ତୁ ଉପରେ ବେଶୀ ଗୁରୁତ୍ୱ ଦେଉଥିଲେ । କାରଣ ସେମାନେ ବିଶ୍ୱାସ କରୁଥିଲେ ଯେ, କାବ୍ୟର ବିଷୟବସ୍ତୁ କାବ୍ୟରୂପକୁ ନିର୍ଣ୍ଣୟ କରେ । ଏହା କେବଳ କଲେରିଜଙ୍କ ଦ୍ୱାରା ଜର୍ମାନ ଦର୍ଶନରୁ ଉଦ୍ଧୃତ ବିତର୍କ ନୁହେଁ, ଏହା ଥିଲା ସମସାମୟିକ କବିତାର ଏକ ବିଶେଷ ଧର୍ମ । କାବ୍ୟରଚନାର ଏହି ପନ୍ଥା ରୋମାଣ୍ଟିକ୍ କବିତାର ଉଭୟ ନୂତନତ୍ୱ ଓ ରୂପହୀନତା ନିମନ୍ତେ ଦାୟୀ କିନ୍ତୁ ଆଧୁନିକ ଇଂରେଜୀ ସାହିତ୍ୟର ପ୍ରଥମ କାବ୍ୟଦୃଷ୍ଟାନ୍ତ ୱେଷ୍ଟଲ୍ୟାଣ୍ଡ୍ (The Waste Land)ର ସାଫଲ୍ୟ ଓ ନୂତନତ୍ୱ କାବ୍ୟର ବିଷୟବସ୍ତୁ ଉପରେ ନିର୍ଭର କରିନାହିଁ । ବିଷୟବସ୍ତୁ ଦୃଷ୍ଟିରୁ ଚତୁର୍ଦ୍ଦଶ ଶତାବ୍ଦୀରେ ଲିଖିତ ୱିଲିୟମ୍ ଲାଙ୍ଗ୍‌ଲ୍ୟାଣ୍ଡଙ୍କ ପିଏର୍ସ ପ୍ଲାଓମାନ୍ (Piers Plowman) ୱେଷ୍ଟଲ୍ୟାଣ୍ଡ୍‌ର ଅଗ୍ରଜ । କାରଣ ଉଭୟ କାବ୍ୟର ବିଷୟବସ୍ତୁ ସମସାମୟିକ ସଭ୍ୟତାର କଳ୍ପିତ ଦୁର୍ଗତି (Myth of catastrophy)ର ଦୁଃସ୍ୱପ୍ନ ମାତ୍ର । ତେଣୁ ଏହା ପ୍ରତିପାଦ୍ୟ ଯେ, ୱେଷ୍ଟଲ୍ୟାଣ୍ଡ୍‌ର ମହତ୍ତ୍ୱ ତାର କାବ୍ୟଭାଷା ଓ କାବ୍ୟଗଠନ ଶୈଳୀରେ ନିହିତ,—ଯେଉଁ ଶୈଳୀର ଇଂରାଜୀ କିମ୍ବା ଇଉରୋପୀୟ କାବ୍ୟରେ ପୂର୍ବଗତ ଦୃଷ୍ଟାନ୍ତ ନାହିଁ ।

ଯେଉଁ କାବ୍ୟକାରମାନେ ଫରାସୀ ପ୍ରତିରୂପବାଦୀ (Symbolists) କବିମାନଙ୍କ ପରେ କାବ୍ୟରଚନା କରିଥିଲେ, ସେମାନେ କଳାର ସ୍ୱାଧୀନସ୍ଥିତି (Autonomy)କୁ ସ୍ୱୀକାର କରିବାକୁ ବାଧ୍ୟ ହୋଇଛନ୍ତି । ପ୍ରତିରୂପବାଦୀଙ୍କ ମତରେ କବିତା ଉକ୍ତି ନୁହେଁ, କବିତା ଏକ ସ୍ଥିତି । ବ୍ୟାଖ୍ୟା ବା ବୃତ୍ତାଂତ କବିର ଲକ୍ଷ୍ୟ ନୁହେଁ, ତାହାର ଲକ୍ଷ୍ୟ ସୃଜନ ଓ ସୃଷ୍ଟି । କବି କବିତାରେ ନିଜ ଅନୁଭୂତି ସୃଷ୍ଟି କରେ,ଅନୁଭୂତି ଉପରେ ମଂତବ୍ୟ ଦିଏନାΙ ତେଣୁ ପ୍ରତିରୂପବାଦର ପରବର୍ତ୍ତୀ (Post Symbolist) କବିମାନେ ପାଠକ ନିକଟରେ ଭାବଧାରାର ଜ୍ଞାପନ (Communication) ବିଷୟରେ ଆଦୌ ଚିଂତିତ ନ ଥିଲେ । ଭାବଧାରା ଯଦି ପାଠକର ଅବଗତ ହୁଏ ତେବେ ଭଲ, କିଂତୁ ଯଦି ନ ହୁଏ ତେବେ ମଧ୍ୟ କିଛି ଯାଏ ଆସେ ନାହିଁ । କବିତାରେ ଅନୁଭୂତିର ସୃଷ୍ଟିକୁ ସମ୍ଭବ କରିବା ଲାଗି କବିକୁ ଭାଷାର ଆରିଷ୍ଟଟେଲୀୟ ତର୍କଶାସ୍ତ୍ରଗତ ଗଠନ (The Aristotelian Logical Structure of Language)କୁ ଜଳାଂଜଳି ଦେବାକୁ ପଡ଼ିଥିଲା । ଏଲିୟଟ୍ ଏହି ଅବସ୍ଥାକୁ ବ୍ୟାଖ୍ୟା କରିବାକୁ ଯାଇ କହିଥିଲେ ଯେ, "ଆମ ସଭ୍ୟତା ମିଶ୍ରିତ, ବିବିଧ ଓ ବହୁମୁଖୀ ଏବଂ ତାହାର ଏହି ମିଶ୍ରିତ ବହୁବିଧ ଗୁଣ ଏକ ସଂଶୋଧିତ ଚୈତନ୍ୟକୁ ପ୍ରଭାବିତ କରି ମିଶ୍ରିତ ଓ ବହୁବିଧ ପ୍ରତିକ୍ରିୟା ସୃଷ୍ଟିକରେ । ତେଣୁ କାବ୍ୟକାରକୁ ଅଧିକରୁ ଅଧିକତର ପାରଦର୍ଶୀ, ପ୍ରଶସ୍ତ, ବକ୍ର ଓ ଜଟିଳ ହେବାକୁ ପଡ଼ିବ ଏବଂ ଯଦି ପ୍ରୟୋଜନ ହୁଏ ତେବେ ଭାବର ସମୃଦ୍ଧି ଲାଗି, ଭାଷାକୁ ଭାଂଗି ଅସଂଗତ ମଧ୍ୟ କରିବାକୁ ପଡ଼ିବ ।" ଏଲିୟଟଂକ୍ ଏହି ବିକାଶିତ ଚିଂତାଧାରାର ପ୍ରାରଂଭ ପ୍ରତିରୂପବାଦୀ କବି ଭର୍‌ଲେନ୍, ଭାଲେରୀ ଓ ମାଲାର୍ମେଂକ ଠାରେ ଆମେ ଲକ୍ଷ୍ୟ କରୁ । ଏହି କବିମାନେ ଭାବଧାରାର ଜ୍ଞାପନ ବିଷୟରେ ଚିଂତିତ ନ ଥିଲେ । ତାଂକର ପ୍ରଧାନ ଲକ୍ଷ୍ୟ ଥିଲା କାବ୍ୟ-ପ୍ରତିରୂପରେ ଅନୁଭୂତିର ସାବୟବୀକରଣ (The organising of experience within the symbol) । ଭାବଧାରାର ଜ୍ଞାପନ ପୂର୍ବବର୍ତ୍ତୀ କବିତାର ଧର୍ମ ଥିଲା । ତେଣୁ କାବ୍ୟଗତି (movement) ଏକ ଧାରାବାହିକ ପର୍ଯ୍ୟାୟରେ ଏକ ବିଂଦୁରୁ ଅନ୍ୟ ଏକ ବିଂଦୁକୁ ଥିଲା । ତର୍କଶାସ୍ତ୍ର ଓ ବ୍ୟାକରଣ ସମ୍ମତଗତ ପଦବିନ୍ୟାସ (Syntax) ଦ୍ୱାରା କବିତାର ବିକାଶ ହେଉଥିଲା । ଏପରି କବିତାରେ ସାଧାରଣତଃ ସରଳତା କିଂବା ବାହ୍ୟ ଅସ୍ପଷ୍ଟତା (Eternal Complexity) ପରିଲକ୍ଷିତ ହୁଏ । ଏପରି କବିତାରେ ଦୃଷ୍ଟିକୋଣ କେବଳ ଗୋଟିଏ । କିଂତୁ ଆଧୁନିକ

କାବ୍ୟକାର ପ୍ରତିରୂପବାଦୀଙ୍କ ପରି ବହୁବିଧ ଦୃଷ୍ଟିକୋଣ (manifold perspective)ର ଅନୁବର୍ତ୍ତୀ । ପୂର୍ବବର୍ତ୍ତୀ କବିମାନେ ଏକ ବାହ୍ୟ ସ୍ତରରୁ କାବ୍ୟବିମ୍ବ (Image)ର ସାବୟବୀକରଣରେ ବ୍ୟସ୍ତ ଥିଲାବେଳେ ଆଧୁନିକ କବି ଏହି ଆଭ୍ୟନ୍ତରୀଣ ସ୍ତରରୁ ତାର ପ୍ରତିରୂପ ସମୂହର ସାବୟବୀକରଣର ଚେଷ୍ଟା କରନ୍ତି । ପରିଶେଷରେ, କବିତାରେ ଏକ ଆତ୍ୟନ୍ତିକ ବହୁବିଧତା (Intensive manifold)ର ସଙ୍ଗ୍ରହ ଆଧୁନିକ କବିର ଲକ୍ଷ୍ୟ । ଏଲିୟଟ୍‌ଙ୍କ ପୂର୍ବରୁ 'ଇମେଜିଷ୍ଟ' କବିମାନେ ଏପରି ଏକ କାବ୍ୟ ସୃଷ୍ଟିର ଉଦ୍ୟମ କରିଥିଲେ । କିନ୍ତୁ ସେମାନଙ୍କ ଚେଷ୍ଟା ଏତେ ଅନବଦ୍ୟ ନ ଥିଲା । ଓ୍ୟାର୍ଡ୍‌ସ୍‌ଓ୍ୟାର୍ଥ ଜଟିଳ ଭାବଧାରାକୁ ବ୍ୟାକରଣ ମାନ ଅନୁସାରେ ଜ୍ଞାପନ କରିବାକୁ ଯାଇ ବେଳେ ବେଳେ ଅପ୍ରାସଙ୍ଗିକ ମଧ୍ୟ ହୋଇ ପଡ଼ନ୍ତି । କିନ୍ତୁ ଏଲିୟଟ୍‌ଙ୍କ କାବ୍ୟଶୈଳୀ ବିବିଧ ଅନୁଭୂତିକୁ ଗୋଟିଏ ଅନୁଭୂତିରେ କେନ୍ଦ୍ରୀ କରି କାବ୍ୟ ପ୍ରଭାବକୁ ଅଧିକ ଶକ୍ତିଶାଳୀ କରିପାରିଛି ।

ପ୍ରତିରୂପବାଦୀଙ୍କ ପରବର୍ତ୍ତୀ କାବ୍ୟକାରମାନେ ପ୍ରତିରୂପ ସଂଥାରେ ବାହ୍ୟ-ଜଗତର ଆନୁଷଙ୍ଗିକ ରୂପାୟନ ପ୍ରତି ଆଦୌ ଆକୃଷ୍ଟ ନ ଥିଲେ । ଏହା ନୂତନ କାବ୍ୟଶୈଳୀ ଆବିର୍ଭାବର ଅନ୍ୟ ଏକ କର୍ମକାରକ । ବସ୍ତୁବାଦୀ (materialists) ମାନଙ୍କ ମତରେ ଅନୁଭୂତି ଓ ବସ୍ତୁ ବିପ୍ରୟୋଜ୍ୟ । ଆଧୁନିକ କବି କିନ୍ତୁ ଏହି ପୃଥକୀକରଣ ସ୍ୱୀକାର କରିନାହିଁ । କୌଣସି ବାହ୍ୟ ବସ୍ତୁର ସ୍ୱାଭାବିକ ଅବସ୍ଥା ପ୍ରତି ସେ ମନୋଯୋଗୀ ନୁହେଁ । ସେ ବାହ୍ୟ ଜଗତରୁ ତତ୍ତ୍ୱ ଆହରଣ କରେ ଓ ପ୍ରତିରୂପର ଅଭ୍ୟନ୍ତରରୁ କାବ୍ୟଚିତ୍ର ସମୂହର ସାବୟବୀକରଣ (Organising of the train of Images inside the Symbol) ଦ୍ୱାରା ସୁଭାବଧାରାମାନଙ୍କୁ, ସଂଯୁକ୍ତ କରି ଅନୁଭୂତିଗୁଡ଼ିକୁ ସର୍ବତୋଭାବେ ରୂପ ଦିଏ । ଜର୍ମାନ କବି ରିଲ୍‌କେ ତାଙ୍କ କବିତା ସଂଗ୍ରହର (Duinese Elegies) ମୁଖବନ୍ଧରେ ଲେଖିଛନ୍ତି—

It lies in the nature of these poems, in their condensation and abbreviation ( in the way they state lyric totals, instead of lining up the stages necessary to the result ) that they seem intended to be grasped, rather through inspiration in those similarly directed than with what is called "understanding."

ଆତ୍ମାନ୍ତିଂକ ବହୁବିଧତା, ଏଲିୟଟଂକ କବିତା ତଥା ଅଧିକାଂଶ ଆଧୁନିକ କବିତାର ଲକ୍ଷ୍ୟ ହୋଇଥିବାରୁ, ଏପରି କବିତା ଯେ ତର୍କଶାସ୍ତ୍ର ଦ୍ୱାରା ବ୍ୟାଖ୍ୟା କରାଯାଇ ପାରେନା, ଏହାର ସୂଚନା ରିଚାର୍ଡ଼ସଂକ ଉକ୍ତିରୁ ମିଳେ । I A. Richards ଙ୍କ ମତରେ ଏଲିୟଟଂକ କବିତାରେ ଭାବଧାରାର ଐକ୍ୟ, ପ୍ରଭେଦ ଓ ପରସ୍ପର ପ୍ରତିକ୍ରିୟା କାବ୍ୟର ବିଭିନ୍ନ ବିଷୟବସ୍ତୁକୁ ସଂଯୁକ୍ତ କରିଛି । "The items in the poem are united by the accord, contrast and inter a ction of their emotional effects and not by an intellectual Scheme that analysis must work out" କୃତ୍ରିମ ବିଶ୍ଳେଷଣ ଦ୍ୱାରା ପାଠକର ବୋଧଗମ୍ୟ କୌଣସି ମାନସିକ ଯୋଜନାରେ ଏପରି କବିତା ସମ୍ଭବ ନୁହେଁ । ଦି ଓ୍ୱେଷ୍ଟଲ୍ୟାଣ୍ଡ ଉପରେ ମତ ଦେଇ ସେ ଆହୁରି ମଧ୍ୟ କହିଛନ୍ତି ଯେ, ଉକ୍ତ କବିତା ସଂଗୀତକାରର ସ୍ୱରପରି ଅନୁଭବସାପେକ୍ଷ, ମାତ୍ର ବିବେଚନାର ସାମଗ୍ରୀ ନୁହେଁ "(Like the musicians phrases to be responded to, not to be pondered over or worked out)"

ଏଣୁ ଆମେ ଲକ୍ଷ୍ୟ କରୁ ଯେ, ଆଧୁନିକ କବି ତାହାର କବିତାରେ ବିଜ୍ଞାନର ସ୍ଥାନ—କାଳ ସଂପର୍କୀୟ ଅବିଚ୍ଛିନ୍ନ ଅନୁକ୍ରମକୁ ସ୍ୱତନ୍ତ୍ର ପଦବିନ୍ୟାସ, ଭାଷାଗତ ଓ ମଂଡ଼ଳାକୃତି କାବ୍ୟରୂପ (cyclic form) ଦ୍ୱାରା ପୁନରୁତ୍ପାଦନ କରିବାକୁ ପ୍ରୟାସ କରିଛି । ଏଲିୟଟଂକ Gerontion ଏହାର ଉଦାହରଣ । ଉକ୍ତ କବିତାର ଆରଂଭ ଓ ଶେଷ ପରସ୍ପର ସହିତ ସଂପୃକ୍ତ :—
"Here I am, an old man in a dry month" ଓ "Tenants of the house Thoughts of a dry brain in a dry season."

ଆଧୁନିକ ଓଡ଼ିଆ କବିତା ଏହି ନୂତନ ଧାରା ସ୍ଥାପନର ପ୍ରଭାବରୁ ବଂଚିତ ନୁହେଁ, ଅନ୍ତତଃ ପକ୍ଷରେ ତିନିଜଣ କବିଙ୍କ କବିତାରେ ଏହି ନୂତନ ଧାରାର ପ୍ରଭାବ ବିଦେଶୀୟ ଫଳାଫଳ ସୃଷ୍ଟି କରିପାରିଛି । ସଚ୍ଚି ରାଉତରାୟ ଏ କ୍ଷେତ୍ରରେ ଅଗ୍ରଗାମୀ ରୂପେ ପ୍ରତିଷ୍ଠିତ । ତାଙ୍କର ସୃଷ୍ଟ କବିତାଗୁଡ଼ିକ ଏବେ ମଧ୍ୟ ରକ୍ଷଣଶୀଳ ପାଠକମାନଙ୍କର ଅରୁଚିକର ହୋଇପାରୁଥାଏ । କିନ୍ତୁ ଏହି ନୂତନ ପରଂପରା ଦୃଷ୍ଟିକୋଣରୁ କବିତା ଗୁଡ଼ିକ ଯେ ସମ୍ପୂର୍ଣ୍ଣ,

ସ୍ନେହକ୍ତ, ମୃଦୁ ଓ ଦଗ୍ଧ, ଏଥିରେ ସନ୍ଦେହର ଅବକାଶ ନାହିଁ । ଉଦାହରଣ ସ୍ୱରୂପ ସ୍ୱ କବିତା "ଉତ୍ତର ଫିରଣ"ରେ ରାଜକିଶୋର ଲେଖିଛନ୍ତି :—

"ମୁଁ କ'ଣ ସୁନାର ସିଂହ
ଜାଗିଉଠେ ପାହାଡ଼େ ପାହାଡ଼େ
ବନ୍ୟ ବନାନ୍ତରେ ପୁଣି
ଅନ୍ଧକାରେ ନକ୍ଷତ୍ର ଉହାଡ଼େ ।
(ଟପି ଗୁହ୍ୟା ଜନ୍ମଭୂମି, ସିକ୍ତ ତୃଣ
ବୈଦ୍ୟୁତିକ ସତ୍ତ୍ୱର ଆଷାଢ଼େ । )
ଉତ୍ତର ଫିରଣ ଟପି ଲଙ୍ଘି ଏହି
ପ୍ରାତ୍ୟହିକ ସୀମିତ ଗୋଲକେ
ନୂତନ ନକ୍ଷତ୍ର ଆଣେ ଜଳ ଯୋଡ଼
ତୁମରି ସେ ତବଣ ବୈଶାଖେ ।
ମୁଁ କ'ଣ ସୁନାର ସିଂହ ତୁମର
ସେ ପ୍ରାଣଘନ ସାନ୍ଦ୍ର ତମସାରେ
ବର୍ଷଣ ସୁରଭି କେଶେ ପଥ ଭୁଲି
ପଥ ଖୋଜି ପୁଣି ଭୁଲି ପଥ ବାରେ ବାରେ ।
ଜାଗି ଉଠେ, ଜଳି ଉଠେ
ସ୍ୱପ୍ନ, ସ୍ୱପ୍ନାନ୍ତରେ, ପ୍ରାଙ୍ଗଣୁ ପ୍ରାନ୍ତରେ ।"
(ଉତ୍ତର ଫିରଣ)

ଏଠାରେ ରାଜକିଶୋରଙ୍କ ଅନୁଭୂତିର 'ସୁନାର ସିଂହ', 'ପାହାଡ଼', 'ଅନ୍ଧକାର', 'ନକ୍ଷତ୍ର', 'ଗୁହ୍ୟା', 'ଜନ୍ମଭୂମି', 'ସିକ୍ତ ତୃଣ', 'ଆଷାଢ଼', 'ଘନ ସାନ୍ଦ୍ର ତମସା', 'ବର୍ଷଣ ସୁରଭି କେଶ', 'ପଥ ଅନ୍ୱେଷଣ', 'ପଥ ବିସ୍ମରଣ', 'ଜାଗରଣ,' 'ଜ୍ୱଳନ', ସ୍ୱପ୍ନ, 'ପ୍ରାଙ୍ଗଣ' ଓ 'ପ୍ରାନ୍ତର' ଇତ୍ୟାଦି ଚିତ୍ରକଳ୍ପ ଗୁଡ଼ିକ ରୂପାନ୍ତରକାମୀ କବି ଚେତନାର 'ବୈଦ୍ୟୁତିକ ସତ୍ତ୍ୱ'ରେ ଉପଯୁକ୍ତ ଭାବେ ପରସ୍ପର ସହିତ ସମ୍ପୃକ୍ତ ହୋଇ ଆସକ୍ତି ଓ ଆତ୍ମବିଶ୍ଳେଷଣର ଏକ ସଫଳ ପ୍ରତିରୂପ ସୃଷ୍ଟି କରି ପାରିଛନ୍ତି ।

ଗୁରୁପ୍ରସାଦ ମହାନ୍ତି ମଧ୍ୟ ରାଜକିଶୋରଙ୍କ ପରି ସ୍ଥାନାନ୍ତରିତ ପଦ ବିନ୍ୟାସ ବ୍ୟବହାର କରି ଅଛନ୍ତି ଏବଂ ଉକ୍ତ କବିଙ୍କ ପରି ଶକ୍ତିଶାଳୀ କାବ୍ୟରୂପ

ବୋଧର ସୂଚନା ମଧ୍ୟ ଦେଇଛନ୍ତି । ଗୁରୁପ୍ରସାଦଙ୍କ କବିତା ରାଜେନ୍ଦ୍ରଙ୍କ କବିତା ଅପେକ୍ଷା ଅଧିକ ଭାବପ୍ରବଣ, ତଥାପି ତାଙ୍କର ସୁଶ୍ରାବ୍ୟ ଛନ୍ଦ ଓ ସମୃଦ୍ଧ କାବ୍ୟଗୀତ କବିତା ଗୁଡ଼ିକୁ ଗତିଶୀଳ କରିପାରିଛି—

ଜେଲଖାନା ପାଚେରୀରେ ଆଉଜାଇ ପିଠି ମୋର
ଝୁରି ରଖି ରୁମାଲ ଆଖିରେ
ମୁଁ କାନ୍ଦିଲି ଯେତେବେଳେ
ପିତୃ ମାତୃ ବନ୍ଧୁ ଭ୍ରାତା ଆୟୁକ୍ଷୟ ବଂଶକ୍ଷୟ
ଦେଶବାସୀକ୍ଷୟ ପୁଣି ଧନଜନ
ଲକ୍ଷ୍ମୀକ୍ଷୟ ଧର୍ମ ପୁଣି ଗୋବ୍ରାହ୍ମଣ କ୍ଷୟ
ମୁଁ କାନ୍ଦିଲି ଯେତେବେଳେ ସମସ୍ତର ଶବ୍ଦ ବାରି
ଜରା ମୃତ୍ୟୁ ବ୍ୟାଧି ପୁଣି ବ୍ୟାଧ ଆଉ ଘାତକର ଭୟ ।
ହେ ଅକ୍ରୁର ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର
ତୁହ ତୁହ ଛୁଞ୍ଚା ତୁହ ପିଠିରେ ମୋ ତୁମ ପରି ବୋଝ ।
ଆଜି ଯେବେ ରାଜ୍ୟ ଯାଏ ରାଜା ଯାଏ
ତୁରଖାର ପ୍ରଜା ଓ ପାଠକ
ମୁଁ ତୁମର ଅନୁଗାମୀ
ଆଉ ଅନ୍ୟ କାହିଁ ବା ବାଟର ?
( କାଳ ପୁରୁଷ )

ରମାକାଂତ ରଥଙ୍କ କବିତାର ଭାବଧାରା ରାଜେନ୍ଦ୍ର ଓ ଗୁରୁପ୍ରସାଦଙ୍କ ଭାବଧାରା ପରି ନଗର ଏବଂ ରମାକାଂତ ମଧ୍ୟ ସାଧାରଣ ପାଠକର ଅନୁଭୂତିରେ ନକଟତର ଭାଷାକୁ ସ୍ଵ କାବ୍ୟଗୀତର ଢାଞ୍ଚରେ ଢାଳି ନୂତନ କାବ୍ୟ ରୂପ ସୃଷ୍ଟି କରିବାରେ ସମର୍ଥ ହୋଇଛଂତି । ତାଂକ କବିତାର ବିଶେଷତ୍ଵ ହେଉଛି ଯେ, ସେ ଏକ ସ୍ଵତଂତ୍ର କାବ୍ୟରୂପ ବ୍ୟବହାର ଦ୍ଵାରା ସ୍ଵ ଭାବଧାରାକୁ ଉଭୟ ବ୍ୟକ୍ତିଗତ ଓ ସାମାଜିକ ରୂପ ଦେଇ ପାରିଛଂତି । କିନ୍ତୁ ଏହା ମଧ୍ୟ ସ୍ଵୀକାର୍ଯ୍ୟ ଯେ, ରମାକାନ୍ତ କେତେକ ପ୍ରଚଂଣ୍ଡ କାବ୍ୟବିମ୍ବର ବହୁଳ ବ୍ୟବହାରରେ ସ୍ଵୀୟ କବିତାକୁ ବେଳେବେଳେ କଠିଣ କରି ପକାଇଛଂତି । ଏହି ପ୍ରଚଂଡ଼ତା ରମାକାନ୍ତଙ୍କ କାବ୍ୟଶୈଳୀକୁ ଶକ୍ତିଶାଳୀ ମଧ୍ୟ କରିଛି ।

ମୁଁ ଦେଖିଛି ତାକୁ ଏକ ଜଂଗଲର ନିରୋଳା ଗୁମ୍ଫାରେ
ମୁଁ ଦେଖିଛି ତାକୁ ଏକ ମୃଗ ଯୂଥେ ପଶୁପତି ସମ
ଅମାବାସ୍ୟା ରଜନୀରେ ମଦ୍ୟମସ୍ତୀ ଝିଙ୍କର ପାଳୁଡ଼ା
ତଳେ ମୁଁ ଦେଖିଛି ତାର ସମୁଜ୍ଜ୍ୱଳ ଦୁଇଟି ନୟନ,
ବାଉଁଶ ବୁଦାର ତଳୁ ଛପି ଛପି ଲଂଫ ଦେଲାବେଳେ
ମୁଁ ଦେଖିଛି ମୂର୍ତ୍ତିମାନ ମରଣର ଭୟାନକ ନାଚ,
ମୁଁ ଦେଖୁଛି ତାକୁ ଏକ କାପୁରୁଷ ଦର୍ଶକ ଭିଡ଼ରେ
ଆହ୍ୱାନ ମୋହର ଏଇ ଗ୍ୟାଲେରୀର ତୃଷ୍ଣାୟୁ ପାହାଚ ।

( ବ୍ୟାଘ୍ରାବଲୋକନ )

ଏଠାରେ ବାଘର ବିଭିନ୍ନ ସ୍ୱାଭାବିକ ଅବସ୍ଥାର ଚିତ୍ର ଗୁଡ଼ିକୁ କବି ବାରମ୍ବାର ଅସ୍ୱୀକାର କରି ସେହି ଅସ୍ୱୀକାର ମଧ୍ୟରେ ନିଜର ବ୍ୟକ୍ତିଗତ ଚେତନାକୁ ରୂପ ଦେଇ ପାରିଛନ୍ତି, କେବଳ ସେତିକି ନୁହେଁ ଏହି ବ୍ୟକ୍ତିଗତ ଚେତନାକୁ ସେ ଖାଲି ନିଜର କରି ରଖି ନାହାନ୍ତି, ତାହାଙ୍କ ଚେତନାରେ ସର୍କସର ପୋଷା ବାଘର ଚିତ୍ର, ଗ୍ୟାଲେରୀର ଅନ୍ୟାନ୍ୟ ଦର୍ଶକମାନଙ୍କ ଅନୁଭୂତି, 'କାପୁରୁଷ ଦର୍ଶକ' ହିସାବରେ ନିଜର ବିଶେଷ ସତ୍ତା, ଏସବୁ ଗୁଡ଼ିକ ଅତି ନିବିଡ଼ ଭାବେ ପରସ୍ପର ସହିତ ସଂପୃକ୍ତ ହୋଇପାରିଛି ।

ରମାକାନ୍ତଙ୍କ ପରେ ଯେଉଁମାନେ ଏହି ନୂତନ ପରଂପରାରେ କବିତା ସୃଷ୍ଟି କରିବା ପାଇଁ ସଚେତନ ଚେଷ୍ଟା କରିଛନ୍ତି ଓ କରୁଅଛନ୍ତି, ସେମାନଙ୍କ ମଧ୍ୟରେ ବିବେକାନନ୍ଦ ଜେନା, ବେଣୁଧର ରାଉତ, ସୌଭାଗ୍ୟକୁମାର ମିଶ୍ର, ହରପ୍ରସାଦ ଦାସ, ନୃସିଂହକୁମାର ରଥ, ହରିହର ମିଶ୍ର, ରବି ସିଂ, ସରୋଜରଞ୍ଜନ ମହାନ୍ତି, ସୌରୀନ୍ଦ୍ର ବାରିକ, ବ୍ରହ୍ମୋତ୍ରୀ ମହାନ୍ତି, ନଳିନୀ ଦେବୀ, ଦୁର୍ଗାପ୍ରସାଦ ତ୍ରିପାଠୀ, ବ୍ରଜରାଜ ସତ୍ୟନାରାୟଣ ନନ୍ଦ, ରବୀନ୍ଦ୍ରପ୍ରସାଦ ପଣ୍ଡା, ସନତ ଦାସ ପଟ୍ଟନାୟକ, ବଂଶୀଧର ଷଡ଼ଙ୍ଗୀ, କାହ୍ନୁଚରଣ ସାହୁ, ସୀତାକାନ୍ତ ମହାପାତ୍ର, ମନୋଜ୍ଞ ଭୂଷଣ ହରିଚନ୍ଦନ, କନକ ଦେବୀ, ଦେବଦାସ ଛୋଟରାୟ, ଅଦ୍ୱୈତ ରଞ୍ଜନ ରାୟ, ମୃତ୍ୟୁଞ୍ଜୟ ନାରାୟଣ ବଳ, ଭଗବାନ ଜୟସିଂହ, ରାଜେନ୍ଦ୍ରକିଶୋର ପଣ୍ଡା, ବ୍ରଜନାଥ ରଥ ଓ ପ୍ରସନ୍ନକୁମାର ମିଶ୍ର ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ ।



# ଆଧୁନିକ ଓଡ଼ିଆ କବିତା—ଏକ ଦୃଷ୍ଟିପାତ

ଆଧୁନିକ ଓଡ଼ିଆ କବିତା କହିଲେ ଅନେକ ମନେ କରନ୍ତି, ସେହି କବିତା ଯେଉଁଥିରେ ଛନ୍ଦ ନାହିଁ, ଯେଉଁଥିରେ କେତେକ ଅସୁନ୍ଦର ଓ ସମୟ ସମୟରେ ଅଶ୍ଳୀଳ ବା ଅଶୋଭନୀୟ ବିଷୟବସ୍ତୁ ଥାଏ ଏବଂ ଯେଉଁଥିରେ ଗାମ୍ଭୀର୍ଯ୍ୟର ଛଳନା କରି କେତେକ ଅନାବଶ୍ୟକ କ୍ଳିଷ୍ଟତା ସୃଷ୍ଟି କରାଯାଏ । ଅନ୍ୟ ଭାଷାରେ ଆଧୁନିକତା ବିଶୃଙ୍ଖଳତାର ଅନ୍ୟ ଏକ ନାମ । ଏଇ ଧାରଣା କେତେକାଂଶ ସତ ହୋଇପାରେ । ଆଧୁନିକ କବିତାରେ ଯତିପାତ (Rhyme) ପ୍ରତି ବିଶେଷ ପ୍ରାଧାନ୍ୟ ଦିଆ ଯାଇନାହିଁ କହିଲେ ଭୁଲ୍ ହେବ ନାହିଁ । କେବଳ ସୁନ୍ଦର ଓ ଲାଳିତ୍ୟପୂର୍ଣ୍ଣ ବିଷୟବସ୍ତୁ ନେଇ କବିତା ଲେଖାଯାଇ ପାରେ ବୋଲି କୌଣସି ଆଧୁନିକ କବି ବିଶ୍ୱାସ କରେ ନାହିଁ । ଠିକ୍ ସେହିପରି ଶିଳ୍ପ ଓ ଶୋଭନୀୟତା ବିଷୟରେ ଏକ ଆଧୁନିକ କବିର ଧାରଣା ହୁଏତ ପ୍ରଚଳିତ ବର୍ଷ ତଳର କବିମାନଙ୍କ ଧାରଣା ଠାରୁ ଅନେକ ଅଲଗା । ଆଉ ଆଧୁନିକ କବିତା ପର୍ଯ୍ୟବେକ୍ଷଣରେ କ୍ଳିଷ୍ଟତା ନିଶ୍ଚୟ ଅଛି, କାରଣ ଆଧୁନିକ କବିତାର ସ୍ଥାପତ୍ୟ (architechtonics) ସହିତ ପ୍ରଚଳିତ ବର୍ଷ ତଳର କବିତାର ସ୍ଥାପତ୍ୟର ତୁଳନା କରାଯାଇ ନ ପାରେ ।

ଓଡ଼ିଆ ସାହିତ୍ୟରେ ପ୍ରାୟ ୧୯୪୦ ପର୍ଯ୍ୟନ୍ତ ଆଧୁନିକତା ମୋଟେ ନ ଥିଲା ବୋଲି କୁହାଯାଇପାରେ । ରାଧାନାଥ ରାଏ ଓ ମଧୁସୂଦନ ରାଓ ଇଂରାଜୀ କବିତାର ପ୍ରଭାବରେ ଏ ଭାଷାକୁ ଏକ ନୂତନ ଜୀବନ ଦେଇଥିଲେ । ଉଭୟଙ୍କ କବିତାରେ ଏ ପ୍ରଭାବ Romantic ଓ Victorian କବିମାନଙ୍କଠାରୁ ସିଧା ବା ବଙ୍ଗଳା ଭାଷାରେ ସେ ସମୟରେ ଚାଲିଥିବା ଚର୍ଚ୍ଚା ଦେଇ ଆସିଥିଲା । ଉଭୟେ ଏ ଭାଷାକୁ ବିଂଶ ଶତାବ୍ଦୀର ସଭ୍ୟତା ଓ ରୁଚି ଉପଯୋଗୀ କରାଯାଇଛନ୍ତି । ହୁଏତ ଏ ଦୁଇଜଣ କବିଙ୍କର ଚେଷ୍ଟା ବିନା ଏ ଭାଷାରେ

କବିତା ଆଜି ଲେଖା ହୋଇ ନ ଥାʼନ୍ତା । କେବଳ ଜଣାଣ ଓ ଚଂପୂରେ ଏ ଭାଷାର କବିତା ବଂଚି ରହିଥାʼନ୍ତା ଯାହା କି ମୈଥିଳୀ ଭାଷାରେ ବର୍ତ୍ତମାନ ହୋଇଛି । କିନ୍ତୁ ରାଧାନାଥ ରାଏ ଓ ମଧୁ ରାଓଙ୍କର ବଂଶଗତାବ୍ଦୀ ତଥା ଓଡ଼ିଆ ଭାଷା ପ୍ରତି ଦାନ ଯେତେ ବେଶୀ ହେଉ ନା କାହିଁକି, ସେମାନେ ଆଧୁନିକ କବି ବୋଲି କୁହାଯିବ ନାହିଁ । ଠିକ ସେହିପରି, ଗଂଗାଧର ମେହେର, ନଂଦକିଶୋର ବଳ ବା କୁଂତଳାକୁମାରୀ ସାବତ ନିଜ ନିଜ କ୍ଷେତ୍ରରେ ଯେତେ ପ୍ରତିଭାଶାଳୀ ଥିଲେ ମଧ୍ୟ ଆଧୁନିକ କବି ନୁହଂତି । 'ସତ୍ୟବାଦୀ' କବିମାନଂକର ସେହିପରି ballad, ବିଶେଷତଃ lyrical ballad, ଦେଶାତ୍ମବୋଧ ପ୍ରତି ଯଥେଷ୍ଟ ଦାନ ଥିଲା । ଓଡ଼ିଶା ସାହିତ୍ୟକୁ ସେମାନେ ବହୁଳ ଭାବରେ ଋଦ୍ଧିମଂତ କରି ଯାଇଛଂତି । ମାତ୍ର ସେମାନଙ୍କୁ ସମସାମୟିକ ଚେତନାର ପ୍ରକାଶକ କିଂବା ଆଧୁନିକ କବି କୁହାଯାଇ ପାରିବ ନାହିଁ । ଏମାନଂକ ପରେ ଆସିଲେ "ସବୁଜ" କବିମାନେ— କାଳିଂଦୀ ପାଣିଗ୍ରାହୀ, ବୈକୁଂଠନାଥ, ମାୟାଧର ମାନସିଂହ ପ୍ରଭୃତି । "ସବୁଜ" ଯୁଗକୁ ଅନେକେ ଆଧୁନିକ ଓଡ଼ିଆ କବିତାର ଆରଂଭ ବୋଲି କହିଛଂତି । ଏ କଥା ନିଶ୍ଚୟ ସତ ଯେ, ସେମାନେ ଓଡ଼ିଆ ଭାଷାକୁ ଏକ ନୂତନ କାବ୍ୟଚେତନା ଆଣିଥିଲେ । ସେମାନଂକର ଦାନ ଏଇ ଦୃଷ୍ଟିରୁ ଓଡ଼ିଆ କବିତା ପ୍ରତି ଅନେକ । କିନ୍ତୁ ରାଧାନାଥ ଓ ମଧୁ ରାଓଂକ ପରି ଏମାନଂକର ଆଧୁନିକତା ଥିଲା ୪୦ ବର୍ଷ ପୁରୁଣା । Edwardian କବିତା ବୋଲି ଯାହାକୁ ଇଂରାଜୀରେ କୁହାଯାଏ, "ସବୁଜ" କବିତା ତା'ଠାରୁ ବିଶେଷ ଅଲଗା ନୁହେଁ । ଭାଷାର ମାର୍ଜିତ ବ୍ୟବହାର, lyricismର ପ୍ରାଧାନ୍ୟ ଓ ଏକ ଭଦ୍ର ଅଥଚ ଦୁର୍ବଳ Romanticism 'ସବୁଜ' କବିତାରେ ସର୍ବୋପରି ପରିଲକ୍ଷିତ ହୁଏ । କେବଳ ମାନସିଂହଂକ କବିତାରେ ବିଦ୍ରୋହର ଏକ ସାମାନ୍ୟ ଆଭାସ ଥିଲା । କିନ୍ତୁ ରହସ୍ୟବାଦ (Mysticism) ଓ ଦାର୍ଶନିକ ତଥ୍ୟର ଗୋଲକଧଂଧାରେ ତାଙ୍କର ପ୍ରତିଭା ନଷ୍ଟ ହୋଇଗଲା ବୋଲି ମୁଁ କହିବି । ରାଧାନାଥ ରାଏ ମାଇକେଲ୍ ମଧୁସୂଦନଂକ ଦ୍ଵାରା ପ୍ରଭାବିତ ହେଲାପରି 'ସବୁଜ' କବିମାନେ ରବି ଠାକୁରଂକ ଦ୍ଵାରା ଯଥେଷ୍ଟ ପ୍ରଭାବିତ ହୋଇଥିଲେ । କିନ୍ତୁ ସେଥିପାଇଁ ସେମାନଂକୁ ଦୋଷ ଦେଇହେବ ନାହିଁ, କାରଣ ରବି ଠାକୁର ଭାରତର ପ୍ରତ୍ୟେକ ଭାଷାର କବିତା ଉପରେ ଯେଉଁ ପ୍ରଭାବ ପକାଇଥିଲେ, ତା'ଦ୍ଵାରା ୧୯୧୫ ଠାରୁ ୧୯୪୦ ପର୍ଯ୍ୟଂତ

ୟୁରୋପୀୟ କବିତାର କୌଣସି ନୂତନଧର୍ମୀ କବିତା ଭାରତୀୟ କବିତାକୁ କୌଣସି ରୂପେ ପ୍ରଭାବିତ କରିପାରିନି ନାହିଁ ।

ଏଇ ହେଉଛି ଓଡ଼ିଆ କବିତାରେ ଆଧୁନିକତାର ପୃଷ୍ଠଭୂମି । ସେତେବେଳକୁ ୟୁରୋପୀୟ କବିତାରେ କେତେଜଣ ଯୁଗସ୍ରଷ୍ଟାଙ୍କର ଆବିର୍ଭାବ ହୋଇ ସାରିଛି । ରେଂବୋ (Rimband), ଭେର୍‌ଲେଇନ୍ (Verlaine), ଲଫୋର୍ଗେ-ଙ୍କର (Laforgue) ପ୍ରତୀକବାଦ ୧୯ଶ ଶତକର ଶେଷରେ ଆରଂଭ ହୋଇ ବ୍ଲକ (Blok) ଓ ୱିଲିୟମ୍ ୟେଟ୍‌ସ୍‌ଙ୍କ (Yeats) କବିତାରେ ତା'ର ଶୀର୍ଷତମ ସୋପାନରେ ପହଂଚ ସାଇଛି । ସେତେବେଳକୁ ହ୍ୟୁମ୍‌ଙ୍କର ଚିତ୍ରକଳ୍ପବାଦ (Imagism) କୁ ଇଲିଅଟ୍, ଆପୋଲିନେଆର (Appollinaire) ଓ ଅନେକାଂଶରେ ଯୁବକ ବରିସ୍ ପାସ୍ତର୍‌ନାକ୍ ଏବଂ ମାରିନେତ୍ତିଂକର (Marinetti) ଭବିଷ୍ୟତ୍‌ବାଦ (futurism)କୁ ମାୟାକୋଭ୍‌ସ୍କି ଅତି ନିପୁଣତା ସହିତ ବ୍ୟବହାର କରି ସାରିଛନ୍ତି । ତା'ଛଡ଼ା ଆଲ୍‌ବେର୍ତି, ହିମେନେଜ୍ ଓ ଲୋର୍‌କା (Alberti, Jimenez, Lorca) ସ୍ପେନ୍‌ରେ ଓ କାଭଫି (Cavafy) ଗ୍ରୀସ୍‌ରେ ଆଧୁନିକ ଅଭିବ୍ୟକ୍ତିର ନୂତନ ଦିଗନ୍ତ ଦେଖାଇ ସାରିଛନ୍ତି । ଏ ଅଭିବ୍ୟକ୍ତି, ଯାହାର ସମଷ୍ଟିକୁ ଆଧୁନିକତା କୁହାଯାଏ, ରବି ଠାକୁରଂକର ଚେତାଂକନରେ ପ୍ରଭାବ ପକାଇଥିଲେ ସୁଦ୍ଧା ତାଂକର କବିତାକୁ ପ୍ରଭାବିତ କରି ନ ଥିଲା; ସୁତରାଂ ଭାରତୀୟ କବିତାକୁ ମଧ୍ୟ ପ୍ରଭାବିତ କରି ପାରି ନ ଥିଲା । ଏହି ଆଧୁନିକ ଅଭିବ୍ୟକ୍ତିର ଜଣେ ଦକ୍ଷ ଶିଳ୍ପୀ ଓଡ଼ିଆ ତଥା ଭାରତୀୟ କବିତାରେ ଏକ ଆଲୋଡ଼ନ ସୃଷ୍ଟି କରି "ବାଜିରାଉତ" ବୋଲି ଖଂଡେ କବିତା ଲେଖଂତି ଦ୍ୱିତୀୟ ମହାଯୁଦ୍ଧ ସମୟରେ । ଆଧୁନିକତାର ସେହି କର୍ଣ୍ଣଧାର— ସଚି ରାଉତରାୟ । ତା'ପରେ ବିଭିନ୍ନ ପତ୍ରିକାରେ ପ୍ରକାଶିତ ହେଲା ତାଂକର ଅନେକ ଗୁଡ଼ିଏ କବିତା, ପରେ ଯାହା 'ପାଣ୍ଡୁଲିପି'ରେ ସଂକଳିତ ହୋଇଛି । ରାଉତରାୟଂକ କବିତାର ସମୀକ୍ଷା ଏ ପ୍ରବଂଧରେ କରାଯାଇ ପାରିବ ନାହିଁ, କାରଣ ତାଂକର କବିତାର ନିର୍ମବର୍ଦ୍ଧନ ଏକ ଅଦ୍ଭୁତ ବ୍ୟାପାର ଓ ସେ ନିର୍ମବର୍ଦ୍ଧନର ବିଷୟ ଏ ପର୍ଯ୍ୟନ୍ତ ହୋଇନାହିଁ । ତେବେ ମାୟାକୋଭ୍‌ସ୍କିଂକର ପ୍ରଭାବ ତାଂକର ପ୍ରଥମ କବିତାଗୁଡ଼ିକରେ ଅତି ସହଜରେ ପରିଲକ୍ଷିତ ହୁଏ ବୋଲି ନିର୍ଦ୍ଦେଶରେ କୁହାଯାଇ ପାରେ । ଚିତ୍ରକଳ୍ପ (Image) ଅତି ଶକ୍ତିଶାଳୀ ବ୍ୟବହାର, ଏବଂ ନୂତନ ଛଂଦ, ଯାହା କି ପଦପାତ ଉପରେ ନିର୍ଭର ନ କରି

ଘରେ ସାବଲୀଳ ସମବର୍ଧନ ଉପରେ ନିର୍ଭରଶୀଳ ଓ ଅସୁନ୍ଦର, ଏପରି କି କୁତ୍ସିତକୁ ଭିତ୍ତି କରି ଲେଖାଯାଇଥିବା କବିତା —ଏ ସବୁ ନେଇ ଗଜପତିଙ୍କ ଆଧୁନିକତାର ପ୍ରଥମ ସ୍ପର୍ଶ ଏ ଭାଷାକୁ ଆଣିଥିଲେ । କେବଳ ଏ ଭାଷା କାହିଁକି, ଭାରତୀୟ ସାହିତ୍ୟରେ ସେ ପ୍ରଥମ ପ୍ରକୃତ ଆଧୁନିକ କବି ବୋଲି କୁହାଯିବ ।

ଯଦି ସତ୍ରି ଗଜପତିଙ୍କ ଓଡ଼ିଆ କବିତାର ପ୍ରଥମ ଆଧୁନିକ କବି, ତେବେ ସେ ଆଧୁନିକତା କଣ ଓ ସେ ଆଧୁନିକତାର ଉଦ୍ଦେଶ୍ୟ କ'ଣ, ତାର ବିଚାର କରିବାକୁ ପଡ଼ିବ । ପ୍ରଥମତଃ ଆଧୁନିକତା କୌଣସି ବିଷୟବସ୍ତୁକୁ Poetic ବା କାବ୍ୟିକ ବୋଲି ମାନେ ନାହିଁ । ପାରଂପାରିକ କବିତାରେ ପ୍ରକୃତିର ବର୍ଣ୍ଣନା, ପ୍ରେମ ଓ ଈଶ୍ୱରଭକ୍ତି—ଏଇ ତିନୋଟି ବିଷୟ ନେଇ କବିତା ଲେଖା-ଯାଇଛି । ଏ କଥା ସତ ଯେ, ଏଇ ତିନୋଟି ବିଷୟ ନେଇ ଅଧିକାଂଶ କବିତା, ସବୁ ଭାଷାରେ ଲେଖା ହୁଏ । ସାମାଜିକ ସଂଘର୍ଷ ଓ ଜୀବନଦର୍ଶନ ପ୍ରେମ ଓ ଈଶ୍ୱରଭକ୍ତିର ରୂପାଂତର ହୋଇପାରେ । ସୁତରାଂ ପାରଂ-ପାରିକ କବିତା ଓ ଆଧୁନିକ କବିତାରେ ମୌଳିକ ବିଷୟବସ୍ତୁରେ ପାର୍ଥକ୍ୟ ହୋଇପାରେ ନାହିଁ । ତଥାପି ପାରଂପାରିକ କବିତା ଓ ଆଧୁନିକ କବିତାରେ ବିଷୟବସ୍ତୁର ବ୍ୟବହାରରେ ଏକ ମୌଳିକ ପାର୍ଥକ୍ୟ ଅଛି । ସେ ପାର୍ଥକ୍ୟ ଦୃଷ୍ଟିକୋଣର । ଅସୁନ୍ଦର, କୁତ୍ସିତ ଓ ଅସାମାଜିକ ବିଷୟ ପାରଂପାରିକ କବିତାରେ ବ୍ୟବହାର ହୋଇଥିଲେ ମଧ୍ୟ, ସେ ସବୁର ଏକ ନୈତିକ ବିଚାର ସବୁ କ୍ଷେତ୍ରରେ ହୋଇଛି । ଆଧୁନିକତା କୌଣସି ନୈତିକ ବିଚାରରେ ବିଶ୍ୱାସ କରେ ନାହିଁ । ମାତହୀନ ନୈତିକ ଅବନତି ବା କୁତ୍ସିତ ବିଷୟବସ୍ତୁ ବା ଚରିତ୍ରର ପ୍ରକାଶ କରିବାକୁ ଯାଇ ଆଧୁନିକତା ତା'ର ବିଚାର କରେ ନାହିଁ । କେବଳ ତା'ର ବିଶ୍ଳେଷଣ କରେ । ବିଚାର ପାଠକର କର୍ତ୍ତବ୍ୟ । ତା' ଛଡ଼ା ମନସ୍ତତ୍ତ୍ୱର ବ୍ୟବହାର ଆଧୁନିକତାର ଆଉ ଏକ ଦିଗ । ବିଂଶ ଶତାବ୍ଦୀର କାବ୍ୟଚେତନା ମନସ୍ତତ୍ତ୍ୱରେ ବିଶ୍ୱାସ କରେ । ସୁତରାଂ ଏକ ଚରିତ୍ରର ଅବଚେତନ ବା ଚେତନାର ବିଶ୍ଳେଷଣ ଆଧୁନିକ କବିତାରେ ଥାଏ । ଏହା ମଧ୍ୟ ଦୃଷ୍ଟିକୋଣର ଏକ ମୌଳିକ ପାର୍ଥକ୍ୟ । ଏକ ବ୍ୟବହାର ବର୍ଣ୍ଣନା ଓ ବିଚାର ନ କରି ଆଧୁନିକ କବି ସେ ବ୍ୟବହାରର କାରଣରେ ଜଡ଼ିତ ହୁଏ । ଏହି କାରଣରୁ ଅନେକ ସମୟରେ ଆଧୁନିକ କବିତାକୁ ଦୁରୂହ ବୋଲି କୁହାଯାଏ । କିଂତୁ ଯେଉଁମାନେ ଏ

ସମାଲୋଚନା କରନ୍ତି, ସେମାନେ ଭୁଲିଯାଆନ୍ତି ଯେ, ପ୍ରତ୍ୟେକ ମନୁଷ୍ୟର ସାମାଜିକ ଆଚରଣ ଭିତ୍ତିରେ ଦେଖିଲେ ଯାହା ଦେଖାଯିବ, ତାହା କୁତ୍ସିତ ଓ କୁରୁଚିପୂର୍ଣ୍ଣ ହେଲେ ମଧ୍ୟ ମୌଳିକ । Behaviour ଅପେକ୍ଷା ଆଧୁନିକତା ତା' ପଛରେ ଥିବା impulseକୁ ବେଶୀ ପ୍ରାଧାନ୍ୟ ଦେଉଛି, କାରଣ ଆଧୁନିକ କବିତାର ବିଷୟବସ୍ତୁ ଅଧିକତର ମୌଳିକ ।

ଆଧୁନିକ କବିତାର ଛନ୍ଦ ପାରଂପାରିକ କବିତାର ଛନ୍ଦଠାରୁ ଅନେକ ଗୁଣରେ ପୃଥକ । ତାର ପ୍ରଧାନ କାରଣ ହେଉଛି ଯେ, ପାରଂପାରିକ କବିତା ଲୀରିକଧର୍ମୀ । ଯଦିଓ ଆଧୁନିକ କବିତାରେ ଲୀରିକ କବିତାର କୌଣସି ଅଭାବ ନାହିଁ, ତେବେ ଆଧୁନିକ ଲୀରିକ୍ ପାରଂପାରିକ ଲୀରିକ କବିତା ପରି ଯତିପାତ ଉପରେ ନିର୍ଭର କରେ ନାହିଁ । ନରମ ବ୍ୟଞ୍ଜନ ବର୍ଣ୍ଣର ବ୍ୟବହାରରେ ମଧ୍ୟ କବିତାରେ ଲୀରିକ୍ ସୃଷ୍ଟି କରାଯାଇ ପାରେ । କାରଣ ବ୍ୟବହୃତ ଶବ୍ଦର ତାରଲ୍ୟ ଲୀରିକ୍‌ଧର୍ମୀ କବିତାର ସର୍ବପ୍ରଧାନ ଗୁଣ । ସେଇ ତାରଲ୍ୟ ବା liquidity ଯତିପାତ ନ କରି ମଧ୍ୟ କବିତାକୁ ଅଣାଯାଇ ପାରେ ବୋଲି ଆଧୁନିକ କବିମାନଂକର ବିଶ୍ୱାସ । ଠିକ୍ ସେଇପରି ଅକ୍ଷର ଓ ଧାଡ଼ି ଗଣି ଶବ୍ଦ ବ୍ୟବହାର କରିବା ଦ୍ୱାରା କେବଳ କବିତାକୁ ଛଂଦମୟ କରାଯାଇ ପାରେ ନାହିଁ । ଏଥିଯୋଗୁ ଆଧୁନିକ କବିତାର ସମାଲୋଚକମାନେ ଆଧୁନିକ କବିତାରେ formର ଶୃଂଖଳା ନାହିଁ ବୋଲି କହନ୍ତି । କିଂତୁ ରୂପରେଖର ଶୃଂଖଳା କେବଳ ଧାଡ଼ି ଓ ଶବ୍ଦ ଗଣିବାରେ ନ ଥାଏ । ଆଧୁନିକ କବିତାରେ ଭାବର ଶୃଂଖଳାକୁ ସଜ୍ଜାର ଶୃଂଖଳାଠାରୁ ବେଶି ପ୍ରାଧାନ୍ୟ ଦିଆଯାଏ । ପାରଂପରିକ କବିତାରେ ଅନେକ ସମୟରେ କେବଳ ଅକ୍ଷର ଗଣନା ସମାନ ରଖିବା ପାଇଁ କେତେକ ଶବ୍ଦ ବ୍ୟବହାର କରାଯାଏ, ଯାହାର ସେ ସ୍ଥାନରେ କୌଣସି ଅର୍ଥ ନ ଥାଏ ବା ଯାହାର ବ୍ୟବହାର ଦ୍ୱାରା ଭାବର ଶକ୍ତିଶାଳୀ ଅଭିବ୍ୟକ୍ତି ସମ୍ଭବ ହୁଏ ନାହିଁ । ଏ ଦୁର୍ବଳତା ଉଚ୍ଚ କୋଟିର ଆଧୁନିକ କବିତାରେ ନ ଥାଏ । ତା' ଛଡ଼ା କେତେକ ଅନିପୁଣ ଓ ଅର୍ବାଚୀନ କବିଂକର ବିଶୃଂଖଳ ଓ ଶସ୍ତା ଚମକପ୍ରଦ କବିତା ପଢ଼ିବା ପରେ ଆଧୁନିକ କବିତାକୁ ବିଶୃଂଖଳ କହିବା ଅନୁଚିତ ହେବ ନାହିଁ । ଏ କଥା ଅବଶ୍ୟ ସତ ଯେ, ଆଧୁନିକ କବିତାର ନାମ ଦେଇ ଅନେକ କବି ଏପରି କବିତା ଲେଖୁଛନ୍ତି, ଯାହାକୁ 'ନର୍ଦ୍ଦମା' କବିତା ଛଡ଼ା ଆଉ କିଛି କୁହାଯିବ ନାହିଁ ।

ପ୍ରତୀକବାଦୀ କବିମାନେ ଆରମ୍ଭ କରନ୍ତି । ବର୍ତ୍ତମାନ କୌଣସି କବି ଏ ପ୍ରଭାବର ବହିର୍ଭୂତ ନୁହନ୍ତି । ସଚ୍ଚିରାଉତ୍ଙ୍କ କବିତା ଅନେକାଂଶରେ ପ୍ରତୀକବାଦୀ ବୋଲି କୁହାଯିବ, ଅବଶ୍ୟ ଶୈଳୀ ଦୃଷ୍ଟିରୁ । କିନ୍ତୁ ଆଧୁନିକ ଓଡ଼ିଆ କବିତାରେ ପ୍ରତୀକବାଦୀ ଶୈଳୀର ସର୍ବଶ୍ରେଷ୍ଠ ଉଦାହରଣ ବୋଧହୁଏ ଗୁରୁପ୍ରସାଦ ମହାନ୍ତିଙ୍କର "କାଳପୁରୁଷ" ଓ ରମାକାନ୍ତ ରଥଙ୍କର "ବାଘ ଶିକାର" କବିତା । ଯଦିଓ ଦୁଇଟିଯାକ କବିତାରେ ଯଥେଷ୍ଟ କ୍ଲିଷ୍ଟତା ଓ ବ୍ୟକ୍ତିଗତତା (Esotericism) ରହିଛି, ତଥାପି ମୌଳିକ ପ୍ରତୀକଗୁଡ଼ିକର ବ୍ୟବହାର ନିଖୁଣ ବୋଲି କୁହାଯିବ ।

ଆଧୁନିକ କବିତାର ସ୍ଥାପତ୍ୟ (architechtonics) ମଧ୍ୟ ସମ୍ପୂର୍ଣ୍ଣ ଭିନ୍ନ ଧରଣର । ଏ ବିଷୟରେ କୌଣସି ସମାଲୋଚକ ଦିନେ ବିସ୍ତୃତ ଆଲୋଚନା କରିବେ ବୋଲି ମୋର ଆଶା, କାରଣ କବିତାର ସ୍ଥାପତ୍ୟହିଁ ଅଭିବ୍ୟକ୍ତିର ସର୍ବପ୍ରଧାନ ମାଧ୍ୟମ । ଯାହାକୁ ଆମେ Organic Unity ବୋଲି କହୁଁ, ତା କେବଳ ସ୍ଥାପତ୍ୟର ନିପୁଣତା ଦ୍ୱାରା ସମ୍ଭବ । ଆଧୁନିକ କବିତାର ସ୍ଥାପତ୍ୟ ଏକ ଭାବ, ପରିସ୍ଥିତି ବା ଘଟଣାର ସରଳ ରୈଖିକ ଅବତାରଣା ନୁହେଁ ବା ଏକ ସ୍ଥାନ, କାଳ ବା ପାତ୍ରର ସରଳ ବର୍ଣ୍ଣନା ନୁହେଁ । ଏକ ଚରିତ୍ର ସ୍ୱଭାବ ବା ମନସ୍ତତ୍ତ୍ୱର ବିଶ୍ଳେଷଣ ସରଳରୈଖିକ ବିମବିକାଶର ମାଧ୍ୟମରେ ସମ୍ଭବ ନୁହେଁ । ତେଣୁ ସମୟର ଏକ ବିନ୍ଦୁରୁ ଆଉ ଏକ ବିନ୍ଦୁ ପର୍ଯ୍ୟନ୍ତ ଗତି କଲାବେଳେ କବି ଯେକୌଣସି ଏକ ବିନ୍ଦୁରେ ଆଗକୁ ବା ପଛକୁ ନ ଯାଇ ତଳକୁ ଯିବାର ଦେଖାଯାଏ । କେବେ ଅବା ଗୋଟିଏ ବିନ୍ଦୁରେ ରହି ଏକ ପାତ୍ରର ଚେତନା ଭିତରକୁ ଯିବାର ଦେଖାଯାଏ । ବେଳେବେଳେ ସମୟର ଏକ ବିନ୍ଦୁରୁ ଅତୀତର ଏକ ବିନ୍ଦୁକୁ ଫେରିଯାଇ ବାର ବାର ସେଇ ଦୁଇ ବିନ୍ଦୁ ଭିତରେ ଯାତାୟାତ କରିବାର ମଧ୍ୟ ଦେଖାଯାଏ । ଠିକ୍ ସେହିପରି ଏକ ସ୍ଥାନର ଦୃଷ୍ଟିକୋଣରୁ ଏକ ମୁହୂର୍ତ୍ତକୁ ବା ଏକ ମୁହୂର୍ତ୍ତର ଦୃଷ୍ଟିକୋଣରୁ ଏକ ସ୍ଥାନକୁ ଦେଖିହୁଏ । କେତେବେଳେ ସ୍ଥାନ ଓ ମୁହୂର୍ତ୍ତର ଦୃଷ୍ଟିକୋଣରୁ ଏକ ପାତ୍ରକୁ ବା ଏକ ପାତ୍ରର ଦୃଷ୍ଟିକୋଣରୁ ସ୍ଥାନ ଓ ମୁହୂର୍ତ୍ତକୁ ଆଧୁନିକ କବି ଦେଖିବାକୁ ଚେଷ୍ଟାକରେ । ତା'ଛଡ଼ା ଶବ୍ଦବିନ୍ୟାସ ଓ ଛନ୍ଦର ବ୍ୟବହାର ମଧ୍ୟ କୌଣସି ନିର୍ଦ୍ଦିଷ୍ଟ ଗତି ନେଇ କରାଯାଏ ନାହିଁ । —କେବଳ ଏକ ଭାବର

ଆଧୁନିକ କବିତାରେ ପାରଂପାରିକ ଉପମା ଓ ଉପମେୟର ବ୍ୟବହାର ନାହିଁ । ଭାବ ବ୍ୟକ୍ତ କରିବାର ଉପାୟ ଆଜି ଶବ୍ଦ ଓ ପ୍ରତୀକର ବ୍ୟବହାର ଦେଇ । ଗୋଟିଏ ବାତାବରଣ ସୃଷ୍ଟି କରିବା ପାଇଁ କେତେକ ଶବ୍ଦର ବ୍ୟବହାର ହିଁ କରାଯାଏ । ଉଦାହରଣ ସ୍ୱରୂପ ରାଜେନ୍ଦ୍ରଙ୍କ "ପାଣି ଖରା, ମଂଡ଼ା ଖରା, ପଣସର ଖୋସା ପରି ହଳଦିଆ ଶଙ୍କଣିଆ ଖରା । ନାନା ଗଂଧେ ଭରିଦିଏ ମୋ ମନର ଘୁମଂତ ବଖରା ।" ହଠାତ୍ ଏକ ବାତାବରଣ ସୃଷ୍ଟି ହୁଏ ଯେଉଁଠାରେ ପାଠକ ଖରାର ପ୍ରତ୍ୟେକଟି ସୁବାସ ବାରିପାରେ । ଠିକ୍ ସେହିପରି ସନ୍ଧ୍ୟାର ଅନିଶ୍ଚିତ mood ସୃଷ୍ଟି ହୁଏ ଏଇ କେତୋଟି ଶବ୍ଦରେ—"ଯେତେବେଳେ ସୂର୍ଯ୍ୟାସ୍ତ ପରର ମଳିନ ଆଲୋକରେ ଝଗଂଡୁ ଝଗଂତ ଯାଏ ଅଂଧାରର ଭୟ ଖାଲି ଘୂରେ ।" ଅଥବା "ମୁଁ ଖୋଜୁଛି ପେଟ୍ରୋଲ୍‌ର ଗଂଧ ଆଉ ନବେ ଡିଗ୍ରୀ ବାଂକ ।" ଏଠାରେ ମଧ୍ୟ ଦୁଇଟି ଶବ୍ଦର ବ୍ୟବହାରରେ ଏକ ପଳାୟନପଂଥୀ ଚରିତ୍ରର ଲକ୍ଷଣ ହୋଇପାରିଛି । ଶବ୍ଦ ବ୍ୟବହାର ତେଣୁ କେବଳ ବର୍ଣ୍ଣନାକୁ ଅଧିକ ଅର୍ଥପୂର୍ଣ୍ଣ କରିନାହିଁ, କବିତାର ବାତାବରଣ ଓ mood ମଧ୍ୟ ଅତି ଅଳ୍ପ ଶବ୍ଦର ବ୍ୟବହାରରେ ସୃଷ୍ଟି କରିପାରୁଛି । ଏହି ଶବ୍ଦ ଅତି ବ୍ୟକ୍ତିଗତ ହୋଇଗଲେ ଆଧୁନିକ କବିତାରେ କ୍ଲିଷ୍ଟତା ଦେଖାଦିଏ । ଏ ପ୍ରକାର କ୍ଲିଷ୍ଟତା ରମାକାଂତ ରଥଂକ କବିତାରେ ବେଶୀ ଭାଗ ଦେଖାଯାଏ । କିଂତୁ କେବଳ ବ୍ୟକ୍ତିଗତ ଶବ୍ଦ ବ୍ୟବହାର ଯୋଗୁ ତାଂକ କବିତାରେ ଏହି କ୍ଲିଷ୍ଟତା ଦେଖାଯାଏ ନାହିଁ । ତାଂକର ଶୈଳୀ ଯାହା କି ଅତି ଆଧୁନିକ ମଧ୍ୟ ଏ କ୍ଲିଷ୍ଟତାର ଏକ କାରଣ । ଓଡ଼ିଆ ଭାଷାର ବ୍ୟାକରଣଗତ ରଚନା (Syntax)କୁ ସେ ବଦଳାଇବାର ଏକ ଦୃଢ଼ ଚେଷ୍ଟା ସବୁ ସମୟରେ କରି ଆସିଛଂନ୍ତି ଓ ସଫଳ ମଧ୍ୟ ହୋଇଛଂନ୍ତି । Syntax ବଦଳାଇବାର ଏଇ ଉଦ୍ୟମ ଆଧୁନିକ କବିତାର କ୍ଲିଷ୍ଟତାର ଅନ୍ୟ ଏକ କାରଣ । କିଂତୁ ବ୍ୟବହୃତ କେତେକ ଅଭିବ୍ୟକ୍ତିକୁ ଅଧିକ ଅର୍ଥପୂର୍ଣ୍ଣ କରିବା ପାଇଁ ଏଇ ଉଦ୍ୟମ ଅତ୍ୟନ୍ତ ଆବଶ୍ୟକ ଓ ଶବ୍ଦର ଶକ୍ତି ଅନେକ ସମୟରେ ଏଇ ରଚନା ଉପରେ ନିର୍ଭର କରେ । ନୂତନ ଶବ୍ଦ ବ୍ୟବହାରରେ ଭଙ୍ଗୀ ଗଠ ଓ ବାକ୍ୟରଚନାର ବ୍ୟବହାରରେ ରମାକାଂତ ରଥ ସଫଳ ବୋଲି ମୋରି ମନେ ହୁଏ ।

ପ୍ରତୀକ (Symbol)ର ବ୍ୟବହାର ଆଧୁନିକ କବିତାର ଅନ୍ୟ ଏକ ଗୁଣ । ଗୋଟିଏ ଶବ୍ଦକୁ ଏକ ଭାବର ପ୍ରତୀକ କରି କବିତାରେ ତାର ବ୍ୟବହାର

ପ୍ରତୀକବାଦୀ କବିମାନେ ଆରମ୍ଭ କରନ୍ତି । ବର୍ତ୍ତମାନ କୌଣସି କବି ଏ ପ୍ରଭାବର ବହିର୍ଭୂତ ନୁହନ୍ତି । ଗଜେନ୍ଦ୍ରଙ୍କ କବିତା ଅନେକାଂଶରେ ପ୍ରତୀକବାଦୀ ବୋଲି କୁହାଯିବ, ଅବଶ୍ୟ ଶୈଳୀ ଦୃଷ୍ଟିରୁ । କିନ୍ତୁ ଆଧୁନିକ ଓଡ଼ିଆ କବିତାରେ ପ୍ରତୀକବାଦୀ ଶୈଳୀର ସର୍ବଶ୍ରେଷ୍ଠ ଉଦାହରଣ ବୋଧହୁଏ ଗୁରୁପ୍ରସାଦ ମହାନ୍ତିଙ୍କର "କାଳପୁରୁଷ" ଓ ରମାକାନ୍ତ ରଥଙ୍କର "ବାଘ ଶିକାର" କବିତା । ଯଦିଓ ଦୁଇଟିଯାକ କବିତାରେ ଯଥେଷ୍ଟ କ୍ଲିଷ୍ଟତା ଓ ବ୍ୟକ୍ତିଗତତା (Esotericism) ରହିଛି, ତଥାପି ମୌଳିକ ପ୍ରତୀକଗୁଡ଼ିକର ବ୍ୟବହାର ନିଖୁଣ ବୋଲି କୁହାଯିବ ।

ଆଧୁନିକ କବିତାର ସ୍ଥାପତ୍ୟ (architechtonics) ମଧ୍ୟ ସମ୍ପୂର୍ଣ୍ଣ ଭିନ୍ନ ଧରଣର । ଏ ବିଷୟରେ କୌଣସି ସମାଲୋଚକ ଦିନେ ବିସ୍ତୃତ ଆଲୋଚନା କରିବେ ବୋଲି ମୋର ଆଶା, କାରଣ କବିତାର ସ୍ଥାପତ୍ୟହିଁ ଅଭିବ୍ୟକ୍ତିର ସର୍ବପ୍ରଧାନ ମାଧ୍ୟମ । ଯାହାକୁ ଆମେ Organic Unity ବୋଲି କହୁଁ, ତା କେବଳ ସ୍ଥାପତ୍ୟର ନିପୁଣତା ଦ୍ୱାରା ସମ୍ଭବ । ଆଧୁନିକ କବିତାର ସ୍ଥାପତ୍ୟ ଏକ ଭାବ, ପରିସ୍ଥିତି ବା ଘଟଣାର ସରଳ ରୈଖିକ ଅବତାରଣା ନୁହେଁ ବା ଏକ ସ୍ଥାନ, କାଳ ବା ପାତ୍ରର ସରଳ ବର୍ଣ୍ଣନା ନୁହେଁ । ଏକ ତରଳ ଭାବ ବା ମନସ୍ତତ୍ତ୍ୱର ବିଶ୍ଳେଷଣ ସରଳରୈଖିକ ସମବିକାଶର ମାଧ୍ୟମରେ ସମ୍ଭବ ନୁହେଁ । ତେଣୁ ସମୟର ଏକ ବିନ୍ଦୁରୁ ଆଉ ଏକ ବିନ୍ଦୁ ପର୍ଯ୍ୟନ୍ତ ଗତି କଲାବେଳେ କବି ଯେକୌଣସି ଏକ ବିନ୍ଦୁରେ ଆଗକୁ ବା ପଛକୁ ନ ଯାଇ ତଳକୁ ଯିବାର ଦେଖାଯାଏ । କେବେ ଅବା ଗୋଟିଏ ବିନ୍ଦୁରେ ରହି ଏକ ପାତ୍ରର ଚେତନା ଭିତରକୁ ଯିବାର ଦେଖାଯାଏ । ବେଳେବେଳେ ସମୟର ଏକ ବିନ୍ଦୁରୁ ଅତୀତର ଏକ ବିନ୍ଦୁକୁ ଫେରିଯାଇ ବାର ବାର ସେଇ ଦୁଇ ବିନ୍ଦୁ ଭିତରେ ଯାତାୟାତ କରିବାର ମଧ୍ୟ ଦେଖାଯାଏ । ଠିକ୍ ସେହିପରି ଏକ ସ୍ଥାନର ଦୃଷ୍ଟିକୋଣରୁ ଏକ ମୁହୂର୍ତ୍ତକୁ ବା ଏକ ମୁହୂର୍ତ୍ତର ଦୃଷ୍ଟିକୋଣରୁ ଏକ ସ୍ଥାନକୁ ଦେଖିହୁଏ । କେତେବେଳେ ସ୍ଥାନ ଓ ମୁହୂର୍ତ୍ତର ଦୃଷ୍ଟିକୋଣରୁ ଏକ ପାତ୍ରକୁ ବା ଏକ ପାତ୍ରର ଦୃଷ୍ଟିକୋଣରୁ ସ୍ଥାନ ଓ ମୁହୂର୍ତ୍ତକୁ ଆଧୁନିକ କବି ଦେଖିବାକୁ ଚେଷ୍ଟାକରେ । ତା'ଛଡ଼ା ଶବ୍ଦବିନ୍ୟାସ ଓ ଛନ୍ଦର ବ୍ୟବହାର ମଧ୍ୟ କୌଣସି ନିର୍ଦ୍ଦିଷ୍ଟ ଗତି ନେଇ କରାଯାଏ ନାହିଁ । —କେବଳ ଏକ ଭାବର

ସମୟବକାଶ ଦେଇ କବିତାକୁ ଗତିଶୀଳ କରାଯାଏ । ସୁତରାଂ ସେଇ ସମୟବକାଶରେ ସ୍ଥାନ କାଳ ବା ପାତ୍ରର କୌଣସି ନିର୍ଦ୍ଦିଷ୍ଟ ସ୍ଥାନଟିରେ ଉଲ୍ଲେଖିତ ହେବାର ଆବଶ୍ୟକତା ନ ଥାଏ । ଏଇ ସ୍ଥାପତ୍ୟ ଦୃଷ୍ଟିରୁ ସଚ୍ଚି ରାଉତରାୟଙ୍କର କେହି ସମକକ୍ଷ ନୁହନ୍ତି ବୋଲି ମୋର ମତ । ରମାକାଂତ ରଥ, ଗୁରୁପ୍ରସାଦ ମହାଂତି, ଭାନୁଜୀ ରାଓ ଓ କେବେ କେବେ ଅନ୍ୟ କେତେକ ନୂତନ କବିଂକର କବିତାରେ ଭାବର ସମୟବକାଶଜନିତ ଶୃଂଖଳା ଦେଖିବାକୁ ମିଳେ । ଗୁରୁପ୍ରସାଦ ମହାନ୍ତିଂକ କବିତାରେ ଏ ଶୃଂଖଳା ବେଶୀ ଓ ରମାକାନ୍ତ ରଥଂକ କବିତାରେ ଅପେକ୍ଷାକୃତ କମ୍ ଦେଖାଯାଏ । କିଂତୁ ରାଉତରାୟଂକ କବିତାରେ ରଥଂକର intensity ଓ syntaxର ନିପୁଣ ବ୍ୟବହାର ବା ଗୁରୁପ୍ରସାଦ ମହାନ୍ତିଂକର ଶକ୍ତିଶାଳୀ ପ୍ରତୀକର ବ୍ୟବହାର ଓ ଶୃଂଖଳା ନଥିଲେ ସୁଦ୍ଧା, ତାଂକର କବିତାର ସ୍ଥାପତ୍ୟ ଅଦ୍ୱିତୀୟ । ଏହାର କାରଣ ବୋଧହୁଏ ତାଂକର ଅଭିଜ୍ଞତା । ସେ ଯାହାହେଉ, ଏ ଦୃଷ୍ଟିରୁ ରାଉତ ରାୟଂକ ସ୍ଥାନ ଏପର୍ଯ୍ୟନ୍ତ ଆଧୁନିକ ଓଡ଼ିଆ କବିତାର ଶୀର୍ଷତମ ସୋପାନରେ । *

ଆଧୁନିକ କବିତାର ପ୍ରତିରକ୍ଷା ବା ସହାୟ ପାଇଁ ଏ ପ୍ରବନ୍ଧ ଲେଖାଯାଇ ନାହିଁ । ଆଧୁନିକତା ଓଡ଼ିଆ ସାହିତ୍ୟରେ ତିଷ୍ଠି ରହିବା ପାଇଁ କୌଣସି ସମାଲୋଚକର ସାହାଯ୍ୟ ଉପରେ ନିର୍ଭର କରେ ନାହିଁ । ଆଧୁନିକ କବିତା ଏକ ସମୟ ଓ ସଭ୍ୟତାର ଅଭିବ୍ୟକ୍ତି ଓ ତା'ର ଭିତ୍ତି ଏକ ମାନସିକ ବାତାବରଣରେ ନିହିତ । ସେ ବାତାବରଣ ଯେତେଦିନ ଯାଏ ରହିବ, ସେତେଦିନ ଯାଏ ଏ ପ୍ରକାର କବିତା ଲେଖା ଯାଉଥିବ । ଏ ପର୍ଯ୍ୟନ୍ତ କୌଣସି ତରୁଣ କବିଙ୍କ କବିତାରେ କୌଣସି ମୌଳିକ ପରିବର୍ତ୍ତନ ଦେଖା ଯାଇନାହିଁ । କିଂତୁ ସୌଭାଗ୍ୟ ମିଶ୍ର, ଦେବଦାସ ଛୋଟରାୟ ପ୍ରଭୃତି କେତେ ଜଣ ତରୁଣ କବି ଓ ବ୍ରଜେଶ୍ୱରୀ ମହାଂତି, ପରେଶ ରାଉତ ଓ ଶରତ ପ୍ରଧାନଙ୍କର କେତେକ କବିତାରେ କେବେ କେବେ ନୂତନ ଦିଗର ଆଭାସ

---

* ଏହି ସଂପର୍କରେ ସଚ୍ଚି ରାଉତରାୟଂକର "ସାମୁଦ୍ରିକ" (କବିତା, ୧୯୬୨) "ସ୍ମୃତିଲିଖନ" (କବିତା, ୧୯୬୧) "ବଚ୍ଛବର୍ଣ୍ଣୀ" (ସ୍ୱଗତ), ରମାକାନ୍ତ ରଥଂକର "ଅନ୍ୟଦିନ" (କେତେ ଦିନର) "ଚିହ୍ନପଦରୁ" (କେତେଦିନର) ଗୁରୁପ୍ରସାଦ ମହାଂତିଂକର "ଦୃଷ୍ଟିପାତ" (ନୂତନ କବିତା) "କାଳ ପୁରୁଷ" (ପ୍ରଜ୍ଞା ୧୯୬୦) ଦ୍ରଷ୍ଟବ୍ୟ ।

ମିଳୁଛି । ଗୁଜଡଗପ୍ସୁ, ରଥ ଓ ମହାନ୍ତିଂକର କବିତା ଦ୍ୱାରା ପ୍ରଭାବିତ ହୋଇ ଏଇମାନେ ଯେଉଁ ସବୁ କବିତା ଲେଖୁଛନ୍ତି, ତା'ର ଫଳରେ ୧୫ ବା ୨୦ ବର୍ଷ ପରେ ହୁଏତ ଆଧୁନିକତା ଆଜି ଏକ ରୂପ ନେବ ଓ ଆଜି ଯାହାକୁ ମୁଁ ଆଧୁନିକ କବିତା କହୁଛି, ତାହା ପରମ୍ପରାଭୁକ୍ତ ହେବ । ଯେଉଁ କବିତାକୁ ଆମେ ଆଜି ଅତ୍ୟାଧୁନିକ କହୁଛୁ ସେ ବି ଦିନେ ପାରଂପାରିକ କବିତା ହେବ; କାରଣ ଏକ ଜାତିର ଦୃଷ୍ଟିଗତ ପରଂପରା ଏତେ ବିରାଟ ଯେ, ସେଥିରେ ସବୁ ପ୍ରକାରର ଅଭିବ୍ୟକ୍ତି ଓ ସବୁ ପ୍ରକାରର ମତବାଦ ପାଇଁ ସ୍ଥାନ ଅଛି । ଯେଉଁଦିନ ଗୁଜଡଗପ୍ସୁ, ରଥ ଓ ମହାନ୍ତି ଏ ପରମ୍ପରାର ଅଂଶଭୁକ୍ତ ହେବେ, ସେଦିନ ଆଜି କିଛି ହେଉ ବା ନ ହେଉ, ଆଧୁନିକତା ନାମରେ ଯେଉଁ "ଝିଡ଼ି ଝିଂକା", "ନର୍ଦ୍ଦମା", Pseudo—ଦାର୍ଶନିକ—ଐତିହାସିକ ଧାର୍ମିକ କବିତା ଓ Clinical ଯୌନ କବିତା ଲେଖା ହେଉଛି, ସେ ସବୁ କିଲୋଗ୍ରାମ ଦରରେ ଦେଶର ଶତକଡ଼ା ପଞ୍ଚାନବେ ଲୋକଙ୍କର ବ୍ୟବସାୟର ପ୍ରସାରରେ ଅନେକ ସାହାଯ୍ୟ କରିବ ବୋଲି ମୋର ବିଶ୍ୱାସ । କବିତା ଶତକଡ଼ା ପାଞ୍ଚ ଲୋକଙ୍କ ପାଇଁ ଲେଖାହୁଏ ଓ ସେମାନେ କାହାକୁ ଗ୍ରହଣ କରି ନିଜର ଜାତିର କୃଷ୍ଟିର ପରଂପରାଭୁକ୍ତ କରିବେ ଓ କାହାକୁ ଅଗ୍ରାହ୍ୟ କରିବେ, ସେ ବିଷୟ ଅତି ଭଲ ଭାବେ ଜାଣନ୍ତି ବୋଲି ମଧ୍ୟ ମୋର ବିଶ୍ୱାସ ।



# ଆଧୁନିକ କବିର ଧର୍ମ ଓ ତାର ସମସ୍ୟା

ଆମ ମାଟିରେ ପ୍ରତିଭା ପାଇଁ ଅନୁକୂଳ ପରିପ୍ରେକ୍ଷି ସୃଷ୍ଟି ହୋଇ ନାହିଁ । ଆମ ସମାଜ ତ ଗୋଷ୍ଠୀକଟା ସମାଜ । ଗଣଙ୍କର ସ୍ୱାର୍ଥ ପାଇଁ ଜଣକୁ ଜୀବନ ଉତ୍ସର୍ଗ କରିବାକୁ ପଡ଼େ । ତାହାର ଜ୍ୱଳନ୍ତ ଦୃଷ୍ଟାନ୍ତ ଆମରି ଏଇ ବିଶ୍ୱବିଦିତ କୋଣାର୍କ । ବାରଶହ ବଢ଼େଇଙ୍କ ଜୀବନ ଓ ସ୍ୱାର୍ଥପାଇଁ ଧରମା ଭଳି ପ୍ରତିଭାର ଅନିର୍ବାଣ ଶିଖା ସବୁଦିନ ପାଇଁ ଲିଭିଲା । ଥିଲେ ହୁଏତ ଆଜିର କୋଣାର୍କ-ଠାରୁ ବଳି କଳାମଣ୍ଡିତ ଶିଳ୍ପର କାରଖାନା ଯେ ଗଢ଼ା ହୋଇ ନ ଥାନ୍ତା, ଏ କଥା କିଏ କହିବ ?

ବର୍ତ୍ତମାନର କବିତା ପ୍ରତି ଏଭଳି ଉକ୍ତି ଏକାନ୍ତ ପ୍ରଯୋଜ୍ୟ । କାରଣ ଆଧୁନିକ କବିତାରେ ଯେଉଁଭଳି ପ୍ରଯୁକ୍ତ ପ୍ରତିଭା ଓ ଶାଣିତ ମନୀଷାର ବିକାଶ ଘଟିଛି, ତା' ଆମ ମାଟିର ଶହ ଶହ ଗଣଜୀବନକୁ ଯେ ପ୍ରଭାବିତ କରିପାରି ନାହିଁ, ଏହା ଅବଶ୍ୟ ସ୍ୱୀକାର୍ଯ୍ୟ । ଏଇ ହେତୁରୁ ହେଉ ବା ଅନ୍ୟ କୌଣସି ଈର୍ଷା ପ୍ରଣୋଦିତ ସ୍ୱର୍ଣ୍ଣକାତରତାବଶତଃ ହେଉ, ଆଧୁନିକ କବିତା ଯେ ଅନେକଙ୍କ ଦ୍ୱାରା ଶରବ୍ୟ ହୋଇଛି ଓ ଅନେକଙ୍କର ଶାଳୀନତାବିବର୍ଜିତ ରୁଚିବୋଧ ଓ ଛଳନାର ସୂତ୍ର ଖୋଲିଛି, ତା' ଯେ କୌଣସି ସମ୍ଭ୍ରାନ୍ତ ଚେତନଶୀଳ ଓ ବୁଦ୍ଧିଜୀବୀଙ୍କୁ ଦୁଃଖ ଦେବ, ସନ୍ଦେହ ନାହିଁ । ଆଧୁନିକ କବିତା ଏକ ନୂତନ ଚିନ୍ତାଧାରାର ଦିଗ୍‌ବଳୟ ଆଡ଼େ ଖୋଲିଛି । ପଥ ତାର କଣ୍ଟକାକୀର୍ଣ୍ଣ, ବନ୍ଧୁର ସମତଳ, ଅସମତଳ, ପାର୍ବତ୍ୟ ପ୍ରଦେଶ, ମରୁ ମରୀଚିକା, ସମୁଦ୍ର ଓ ଉଠାଣି ଗଡ଼ାଣି ଅତିକ୍ରମ କରି ସେଇ ଦିଗ୍‌ବଳୟର ବୈଚିତ୍ର୍ୟମୟ ଧାତ୍ରିର ପ୍ରାପ୍ତି ଆଶାରେ ଆଧୁନିକ କବିତାର ଅଭିଯାନ । ଏ ଅଭିଯାନ ପୁଣି ଅକୁଣ୍ଠ ସାଧନା ଓ ଅବିଶ୍ରାନ୍ତ କରୁଣାର ଅଶ୍ରୁରେ, ଉତ୍କ୍ରାନ୍ତ ଅନୁଭୂତି ଓ ଅଭିଜ୍ଞତାର ସଂସାରରେ ଗତିଶୀଳ ।

ଓଡ଼ିଆ ସାହିତ୍ୟରେ ଦେଖାଯାଇଛି—ସାରଳାଦାସ, ଜଗନ୍ନାଥ ଦାସ ଓ ଫକୀରମୋହନଙ୍କ ଭଳି ପ୍ରତିଭାକୁ ବି ସେ ସମୟର ବୋଲାଉଥିବା ପ୍ରତିଷ୍ଠିତ ସମାଜବାଦୀ ଓ ସାହିତ୍ୟିକମାନେ ବାଧା ଦେଇଛନ୍ତି । ଏଇ ତ କାଲି ପରି ଶିଳ୍ପୀ ବି. ବର୍ମା ଓ ପ୍ରାଣକୃଷ୍ଣ ସାମଲଙ୍କ ଜୀବଦ୍ଦଶାରେ, ଏପରି କି ଗୋଦାବରୀଶ ମହାପାତ୍ର ପ୍ରମୁଖ ଦାର୍ଶନିକ ଓ ସଚ୍ଚୋଟ ସ୍ରଷ୍ଟାଙ୍କୁ ଇତିହାସ ଭିତରେ ସମୁଚିତ ସମ୍ମାନ ଓ ଗୌରବ ମିଳିଲା ନାହିଁ । ଆଜି ଆଧୁନିକ କବିତା ! ଏ ସବୁର କାରଣ ଯାହା ହେଉ ନା କାହିଁକି, ଆମ ମାଟିରେ ଈର୍ଷା ଓ ପରଶ୍ରୀକାତରତାର ସେହିଭଳି ଭିତରୁ ଆମକୁ ମୁକ୍ତି ମିଳି ନାହିଁ । ଯୁଆଡ଼ୁଛଡ଼ା ଗୋଷ୍ଠୀତନ୍ତ୍ର ଓ ରାଜତନ୍ତ୍ରର ମଧ୍ୟରେ ଅନେକ ସ୍ଥଳରେ ଆମ ସାହିତ୍ୟିକ ସଂଭ୍ରାନ୍ତ ରୁଚିବୋଧ ବି ଉଠେଇପାରୁ ନାହିଁ । ପୁଣି ବଡ଼ପଣ୍ଡାମାନେ କାଳେ ବାସିଭ ହୋଇଯିବେ କମ୍ବା ସେମାନଙ୍କ ସାର୍ବଭୌମତ୍ୱ ଅସ୍ୱୀକୃତ ହେବ, ଅଥବା ଥୋକାଏ ସୃଷ୍ଟିକାରୀଙ୍କ ଛଳନାଳିପ୍ତ ସ୍ନେହ ଓ ସୃଷ୍ଟିର ଚଉପାଢ଼ୀରୁ ଓହ୍ଲାଇ ଯିବେ, . ଏଇ ଭୟ ଓ ଆଶଙ୍କାରେ ଅନେକହିଁ ଅହଂ ପ୍ରଣୋଦିତ ଭାବଚେତନାରୁ ମୁକ୍ତ ନୁହନ୍ତି । ଯୁଗର ପ୍ରଭାବ ଓ ଯୁଗୋଚିତ ରୁଚିବୋଧ ତଥା ମନନଶୀଳତାର ପ୍ରତିକ୍ରିୟା ସେମାନଙ୍କୁ ସେହିଁଭଳି ସକ୍ରିୟ ଓ ସଚେତ କରୁନା କାହିଁକି, ଏକ ନୂତନ ସଙ୍ଗୀତର ମୂର୍ଚ୍ଛନା ସେମାନଙ୍କୁ ଉତ୍‌ଫୁଲ୍ଲ କରୁ ନାହିଁ । ବରଂ ମୂହ୍ୟମାନ କରୁଛି ଓ ଅରୁଚିକର ବୋଧ ହେଉଛି । ଯୁବ-ପ୍ରତିଭାକୁ ଆଉଥରେ ଅନ୍ତରଙ୍ଗତାସହ ବୁଝି ବୁଝାଇବାର ପ୍ରଚେଷ୍ଟା ଓ ସଂବେଦନଶୀଳ ସହନଭାବର ଅଭାବ ହେତୁ ପରସ୍ପର ପ୍ରତି ସ୍ନେହାନୁରାଗ ଓ କଳାଗତ ରସଚେତନାର ସୃଷ୍ଟି ହୋଇପାରୁ ନାହିଁ । ମୋର ମନେ ହୁଏ, ଏ ମାଟିରେ ପ୍ରତିଭାକୁ ହତ୍ୟା କରିବାର ଯେଉଁଭଳି ଯୋଜନା ଓ ସ୍ୱେଚ୍ଛାକୃତ ପ୍ରସ୍ତୁତି ଚାଲିଛି, ତାର ପଥ ରୁଦ୍ଧ ନ ହେଲେ ବି କୋଣାର୍କ ଭଳି କାଳଜୟୀ କୀର୍ତ୍ତିର ଗୌରବ କେବେ ମ୍ଳାନ ହେବ ନାହିଁ ।

ଆଧୁନିକ କବିତା କ୍ଷେତ୍ରରେ ଅବୋଧତା ବା ଦୁର୍ବୋଧତା ପ୍ରବେଶ କରିଛି ବୋଲି ଅନେକ ମତ ଦିଅନ୍ତି । ଏଥିପାଇଁ ଆମ ମାଟିରେ ପରଂପରାବାଦୀ ଓ ରକ୍ଷଣଶୀଳ ମନୋଭାବ ଅନେକଙ୍କୁ କାଳସୀ ଲାଗିଲା ପରି ଗ୍ରାସ କରିଛି । କବିତାର ରସଚେତନା ଓ ମାର୍ମିକ ଭାବଗ୍ରହଣଶୀଳତା ପାଇଁ ଆମକୁ ଯେ ମୋହଯୁକ୍ତ ଦୃଷ୍ଟିରୁ ମୁକ୍ତ ହେବାକୁ ପଡ଼ିବ, ଏହା ଜାଣି ରଖିବା ଉଚିତ । କାରଣ କବିତା ଜୀବନବୋଧର ଏକ ସୂକ୍ଷ୍ମାତିସୂକ୍ଷ୍ମ ଅଭିବ୍ୟକ୍ତି । ଏଥିରେ

ବୁଝିବା ଅପେକ୍ଷା ଅର୍ଥାତ୍ ଅର୍ଥବୋଧ ଅପେକ୍ଷା ଅନୁଭବର ତୀବ୍ରତା ବେଶି କାର୍ଯ୍ୟ କରେ । ସାହିତ୍ୟର ଅନ୍ୟାନ୍ୟ ବିଭାଗ ଅପେକ୍ଷା କବିତାର ରାଜ୍ୟ ପ୍ରଧାନତଃ ମଣିଷ ମନର ସ୍ୱଭାବତଃ ଆବେଗ ଓ କରୁଣାର୍ଦ୍ର ଚିତ୍ତର ବିଚିତ୍ର ତରଙ୍ଗରେ ଲୀଳାୟିତ । ଏଠି ଯୁକ୍ତି ଅପେକ୍ଷା ସଂବେଦନଶୀଳତାର, କାର୍ଯ୍ୟର କାରଣ ଅପେକ୍ଷା ସମଗ୍ର କାର୍ଯ୍ୟର ଓ ଦୟା କିମ୍ବା ମମତା ଅପେକ୍ଷା କରୁଣାର ପ୍ରତିକ୍ରିୟା ସବୁଠୁଁ ବେଶି । ପୁଣି ଏଥିରେ ନାହିଁ କାମନାର ଗନ୍ଧ କିମ୍ବା ପ୍ରାପ୍ତିର ଝଲକ । କେବଳ ସୃଷ୍ଟି କରିବାର ପ୍ରେରଣା ଓ ପ୍ରସ୍ୱେଦନାଶ୍ରୁ ଏକ ମୋହନ ମନ୍ତ୍ରରେ ସ୍ରଷ୍ଟାକୁ ବଶୀଭୂତ କରେ । ମୋର ମନେ ହୁଏ, ଇନ୍ଦ୍ରିୟ ସଂଯୋଗବେଳେ ଯେମିତି ସୃଜନର ଶୀର୍ଷ ବିନ୍ଦୁରେ ଆମେ ଆତ୍ମଭୋଳ ହେଉଁ, ଠିକ୍ ସେହିପରି କବିତା ସୃଷ୍ଟିରେ କବି ନିଜର ସ୍ଥିତି ବା ସତ୍ତା ଅନୁଭବ କରିପାରେ ନାହିଁ । ଏହି ଯେଉଁ ନିମଜ୍ଜମାନତା ଓ ଆତ୍ମଭୋଳାପଣ ତା' କବିତା ଛଡ଼ା ସାହିତ୍ୟରେ ଅଙ୍ଗୀଭୂତ ଆଉ କେଉଁ ସୃଷ୍ଟିରେ ଘଟେ, ତା' ମୋତେ ଜଣାନାହିଁ । କବିତା ଲେଖିଲାବେଳେ କବିର ବେଦନା ଓ କବିତା ପୁଣି ପାଞ୍ଚ ଭୁଣ୍ଡରେ ପଡ଼ିଯାଇ ଆଲୋଚିତ ଓ ସମାଲୋଚିତ ହେବାରେ ଯେଉଁ ନିର୍ଯ୍ୟାତନା, ତାର ମୂଲ୍ୟାଙ୍କନ କରିବା ପାଇଁ ବି କବି ବ୍ୟାକୁଳ ନୁହେଁ । କାହାକୁ ସୁହାଇଲା ଭଳି ବା କାହାକୁ ପ୍ରୀତ କଲାଭଳି ନିର୍ଦ୍ଦେଶନାମାର ତାଗିଦ୍‌ରେ କବି କବିତା ଲେଖେ ନାହିଁ । ସେ ଲେଖେ, ଯେମିତି ଲେଖିବା ତାହାର ଧର୍ମ । ସୃଷ୍ଟି କରିବାର ଅକୁଣ୍ଠ ପ୍ରେରଣାର ମହୋତ୍ସବରେ ସେ ଯେପରି ଆତ୍ମହରା ! ଏଥିପାଇଁ କବି ସୃଷ୍ଟିଛଡ଼ା ମଣିଷ । ସମାଜରେ ରହି ବି ଅସାମାଜିକ ପୁଣି ଅସାମାଜିକ ହୋଇ ବି ସାମାଜିକ । କି ବୈଚିତ୍ର୍ୟ ସତେ ! ଶିବଙ୍କ ଭଳି ଆକଣ୍ଠ ଗରଳ ପିଇ, ଷଣ୍ଢ ଉପରେ ସବାର ହୋଇ, ସାପର ହାରରେ ଦେହକୁ ସଜାଇ, କୌପୁନି ପିନ୍ଧି ବା ନ ପିନ୍ଧି, ବିଭୂତି ବୋଳି ହୋଇ ଅପନ୍ନ ଜଟାରେ ଜକ୍ଷଣୀମାନଙ୍କ ପାଇଁ ସୁନ୍ଦର ଘର କରି କବି ବି ଶିଳ୍ପୀ ନୁହେଁ, ସାଢ଼େ ତିନିଅଣିଆ କଲମ ଧରି ଓ ହାଣ୍ଡି, ମାଠିଆ ଏବଂ ହାଡ଼ ଶୋଭିତ ଶ୍ମଶାନରେ ଘୂରି ଘୂରି ମଙ୍ଗଳର ସନ୍ଧାନ କରେ । ଏଥିପାଇଁ କବିର ଦୃଷ୍ଟି ମୋହମୁକ୍ତ ଓ ପୂର୍ବପ୍ରବଣତାର ବନ୍ଧନରୁ ସ୍ୱାଧୀନ । ଏହିଭଳି ନିଃସଙ୍ଗତା ଓ ପରଆତ୍ମସ୍ୱଭାବ, ଅଥବା ଏହିଭଳି ଦୁର୍ବାର ଚେତନାର ଓଁକାର କିମ୍ବା ସୃଷ୍ଟିଛଡ଼ା ଯୋଗୀର ଜୀବନ ମନ୍ତ୍ର କବିତାରେ ହିଁ କେବଳ ଉଚ୍ଚାରିତ ହେବାର ଯୋଗ୍ୟତା ଅର୍ଜନ କରିଛି । ତେଣୁ କବିର ଜୀବନ ଆମମାନଙ୍କଠୁଁ

ଏତେ ନିଆରା, ଏତେ ଦୁର୍ବୋଧ୍ୟ ଓ ପୁଣି ଏତେ ବଳିଷ୍ଠ ଓ ପ୍ରାଂଶୁ । ବୋଧହୁଏ ଏଥିପାଇଁ କବିର ସୃଷ୍ଟିକୁ ବୁଝିବାକୁ ହେଲେ ଆମକୁ ଅନେକ ବହୁ ଦ୍ୱନ୍ଦ୍ୱ ଓ ସଂଶୟର ଛକରେ ଠିଆ ହେବାକୁ ହୁଏ । ବହୁ ପ୍ରତିକୂଳତା ଓ ତର୍କର ଜାଲରେ ଆମେ ଛନ୍ଦି ହୋଇଯାଉ !

ବର୍ତ୍ତମାନର କବିତା ଅନେକାଂଶ ପରଧର୍ମୀ । ଅର୍ଥାତ୍ ପାଶ୍ଚାତ୍ୟ ଦେଶର ସାଂସ୍କୃତିକ ଜୀବନର ସଙ୍କଟ ଓ ଜୀବନଯାତ୍ରାର ସମସ୍ତ ମୂଲ୍ୟବୋଧର ପ୍ରତିକ୍ରିୟା ଆମ ମାଟିର କବିମାନଙ୍କୁ ବିଶେଷ ପ୍ରଭାବିତ କରିଛି । ବିଶ୍ୱ ସଂସ୍କୃତିର ଢେଉ ଯେ ସାତ ସମୁଦ୍ରର ଅତଳ ଜଳ ଭିତର ଦେଇ ଏ ମାଟି ଭିତରେ ବ୍ୟାପିଯାଇଛି, ଏକଥା ଅନେକ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । ସେଇ ପୁରୁଣା ପାରଦଛଡ଼ା ଦର୍ପଣରେ ମୁହଁ ଦେଖିବାର ପ୍ରଚେଷ୍ଟା ଏବେ ବି ଆମ ଦେଶର ଅନେକଙ୍କ ମନରେ ବଦ୍ଧମୂଳ ହୋଇ ରହିଛି । ବିଜ୍ଞାନ ଯୁଗରେ ମଣିଷ ତାର ବ୍ୟକ୍ତିସତ୍ତାର ଉଣ୍ଡିମ ପିଟୁଥିବାବେଳେ ଓ ଧର୍ମ କୈନ୍ଦ୍ରିକ ତନ୍ତ୍ରାଧାରର ପଞ୍ଜୁରିରୁ ମୁକ୍ତ ବୋଲି ଘୋଷଣା କରୁଥିବାବେଳେ ଆମେ ଏ ପର୍ଯ୍ୟନ୍ତ ବି ଆମ ପୁରୁଷକାରର ସ୍ୱରୂପକୁ ଚିହ୍ନିବା ପାଇଁ ପ୍ରସ୍ତୁତ ନୋହୁଁ । ଈଶ୍ୱର ଓ ପ୍ରକୃତିକୁ ଚିହ୍ନି ଓ ତାର ମନଭୁଲାଣିଆ ବାହାରିଆ ତେଜ ଓ କାନ୍ତି ସହ ପରିଚିତ ହୋଇ ଏବେ ମଣିଷ ନିଜକୁ ଚିହ୍ନିବା ପାଇଁ, ଜାଣିବା ପାଇଁ, ବୁଝି ଅନୁଭବ କରିବା ପାଇଁ ଅଣ୍ଟା ଭିଡ଼ିଛି । ଯା' ଭିତରେ ଯେ ମଣିଷର ସୀକାତ୍ମକ ନିଷ୍ଠା ଓ ଜୀବନବୋଧ ନାହିଁ ଏମିତି ନୁହେଁ, ପୁଣି ଏ ନିଷ୍ଠା ଓ ଆତ୍ମ-ସ୍ଥିତି-ଜ୍ଞାନ ଭିତରେ ବି ରହିଚି ଯୁଗଯୁଗାନ୍ତରର ସଂଗ୍ରାମ ଓ ଜ୍ୱାଳା । ନିଜ ଭିତରର ଐନ୍ଦ୍ରଜାଲିକ କୁହୁକର ଗୁହିକାଠି ନ ପାଇବା ପର୍ଯ୍ୟନ୍ତ ମଣିଷ ଆପଣାକୁ ବି ବିଶ୍ୱାସ କରି ପାରୁନାହିଁ । ଅଥଚ ତା' ନିଜଠାରୁ ଆଉ ଅଧିକ ବିଶ୍ୱାସୀ ବନ୍ଧୁ ଏ ପୃଥିବୀରେ କେହି ନାହିଁ । କେହି କେହି ହୁଏ ତ କହିପାରନ୍ତି—ଏଇ ଐନ୍ଦ୍ରଜାଲିକ କୁହୁକହିଁ ଏକ ନିର୍ବିକଳ୍ପ ଚେତନାର ଯାଦୁ । କିନ୍ତୁ ସେ ଯାଦୁର ସ୍ୱରୂପ କ'ଣ ? ସେ ଯାଦୁ ପୁଣି କରୁଛି କିଏ ? ଆଜିର କବି ଏ ସବୁ ପ୍ରଶ୍ନର ଉତ୍ତର ଖୋଜେ—କାହାରି ଅନ୍ଧ ବିଶ୍ୱାସଜନିତ ଆଦିପ୍ରେରଣାରୁ ନୁହେଁ, ଆତ୍ମବୋଧ ଓ ଆତ୍ମବିଶ୍ଳେଷଣଜନିତ ଅନୁରକ୍ତିରୁ । ତେଣୁ ଏଠାରେ ଅସହିଷ୍ଣୁତା ଓ ଉଗ୍ରତାର ପ୍ରଶ୍ନ ନାହିଁ, କିମ୍ବା କଳ୍ପନାବିଳାସ ଓ ବାସ୍ତବତାର ଉପାସନା କରିବାର ଅବକାଶ ନାହିଁ । ଏଠି ପୂର୍ବପୁରୁଷ ଗର୍ଭର ସମୁଦ୍ର ଭିତରେ ବୁଡ଼ି ରତ୍ନ ଆହରଣ କରିବାର ପ୍ରଚେଷ୍ଟା

ଓ ସମ୍ବନ୍ଧି ରହିଛି । ସୁର୍‌ରିଆଲିଷ୍ଟମାନେ ଏକଥା ଆମକୁ ବେଶ୍ ଚେତାଇ ଦେଇଛନ୍ତି । ପୁଣି ଅଷ୍ଟାଦଶ ଶତାବ୍ଦୀର ବହୁ ବର୍ଣ୍ଣବହୁଳ କରୁଣ-ମଧୁର ସଂଘଟିତ ଘଟଣା ଗୁଡ଼ିକର ରକ୍ତାକ୍ତ ଅନୁଭୂତିକୁ ପିଠିରେ ବୋହି ଏ ଶତାବ୍ଦୀର ସପ୍ତଦଶକର ଆଜି ଏକ ମନ୍ତ୍ର ହେଲା—ମାନବିକ ଚେତନାର ସ୍ୱାତନ୍ତ୍ର୍ୟବୋଧ ଓ ଆତ୍ମସମୀକ୍ଷାଜନିତ ସମର୍ଥନରୁ ବହିର୍ଜଗତ ସହ ସମ୍ପର୍କ ସ୍ଥାପନ । ବ୍ୟକ୍ତି ଜୀବନର ଏ ପ୍ରକାର ସ୍ଥିତିବୋଧ ଓ ବିଜ୍ଞାନସମ୍ମତ ରୁଚିବୋଧର ଜନ୍ମ ସେହି ପାଶ୍ଚାତ୍ୟ ଦେଶରେ । ବର୍ତ୍ତମାନ ଆମର ସଂସ୍କୃତି, ତାଙ୍କର ସଂସ୍କୃତି ବା ତୁମର ସଂସ୍କୃତି ବୋଲି ଯେଉଁମାନେ ମାର୍କା ମାରି ସ୍ଲୋଗାନ ଛାଡ଼ନ୍ତି, ସେମାନେ ଅନ୍ତତଃ ପକ୍ଷେ ଜାଣି ରଖିବା ଉଚିତ ଯେ, ଆଜିର ଏମିତି ଏକକ ସଂସ୍କୃତିର ଏକଚ୍ଛତ୍ରବାଦର ରାଜତ୍ୱ ନାହିଁ । କାରଣ ଖାଦ୍ୟ, ବସ୍ତ୍ର, ବାଣିଜ୍ୟ, ଅର୍ଥନୀତି, ସମାଜନୀତି ଓ ରାଜନୀତିର ମାର୍କାମରା ନିଆରା ଶାସନର ଯୁଗ ଇଏ ନୁହେଁ । ମଣିଷ ଜାତି ନିକଟରେ ସବୁ ପ୍ରକାର ଏକକ ସ୍ୱାଧୀନ ଚିନ୍ତା ଓ ସ୍ୱାତନ୍ତ୍ର୍ୟ ଯେପରି ଅମୂଳକ, ସେମିତି ବିଶ୍ୱ ସଂସ୍କୃତିର ଶାଢ଼ାଣ ଉନ୍ମୁକ୍ତ ଓ ସଚରାଚର ସମସ୍ତଙ୍କ ପାଇଁ ଏ ସଂସ୍କୃତିର ଦ୍ୱାର ଦେଶରେ 'ସ୍ୱାଗତମ୍'ର ଅଭିନନ୍ଦନ ଲିପିବଦ୍ଧ । ଏଣୁ ଆଜିର ଓଡ଼ିଆ କବିତାର ଦାଣ୍ଡି ମାରି ହୋଇଗଲା ବା ଆମର କିଛି ନିଜ ବ୍ୟକ୍ତିତ୍ୱ ବା ସଂସ୍କୃତି ଅଛି, କିମ୍ବା ଆମେ ବିଦେଶୀଙ୍କ ଭଳି ଏତେ ଫମ୍ପା ନୋହୁ, କିମ୍ବା ଆମର ସବୁ ଥାଇ ବି ଆମେ କାଙ୍ଗାଳ ଅଥବା ଆମେ ଆମର ନିଜସ୍ୱତାକୁ ଯଚେଇ କରି ଜାଣିନାହୁଁ କିମ୍ବା ଆମେ ପରଧର୍ମୀ ଓ ପରକୀୟାର ଶ୍ରେଷ୍ଠତା ପ୍ରତିପାଦନ କରିବାରେ ନିମଗ୍ନ—ଏମିତି ଉକ୍ତି ଧରିବା ଯେତିକି ମାରାତ୍ମକ, ସେତିକି ବିଦ୍ୱେଷସୂଚକ । ଆମେ ଭଲଭାବେ ଜାଣୁ ଯେ, ପରଧର୍ମ ନିଜ ଧର୍ମଠାରୁ ଭୟାବହ । ତେବେ ଆପଣା ଧର୍ମ ସଙ୍ଗେ ପର ଧର୍ମର ମୌଳିକ ଚିନ୍ତାଧାରାକୁ ସାମିଲ କରିବାରେ କିଛି ଦୋଷ ନାହିଁ ବୋଲି ମୁଁ କହିବି । ଯେତେବେଳେ ମରିବା ନିଶ୍ଚିତ, ସେତେବେଳେ ଆପଣା ପରର ସଜ୍ଞା ଭୁଲି ସବୁଠାରୁ ମୁହାଁମୁହିଁ ହେବା ଶ୍ରେୟସ୍କର । ସେଠି ଆଲୋକ ଓ ଅନ୍ଧାର, ଦିନ ଓ ରାତି, କିମ୍ବା ପ୍ରାଚ୍ୟ ଓ ପାଶ୍ଚାତ୍ୟ ବିଭୁର ରହିବା ଉଚିତ ନୁହେଁ । କାରଣ ଆଲୋକର ସ୍ୱଚ୍ଛତା ଓ ଉଜ୍ଜ୍ୱଲ୍ୟ ଯେତିକି ସୁଖପ୍ରଦ, ଅନ୍ଧକାରର ଅବର୍ତ୍ତମାନରେ ବି ସେତିକି ଆନନ୍ଦ ଓ ସୁଖ ରହିଚି । ଠିକ୍ ସେହିପରି ଅନ୍ଧକାରର ସ୍ଥିତି ଓ ଭୟାବହତା ଯେତିକି ଖ୍ୟାତିସଂଗ୍ରହକ୍ଷମ, ଆଲୋକର ଅବର୍ତ୍ତମାନତା ବି ସେତିକି ଅନୁଭବ୍ୟ । ପ୍ରାଚ୍ୟ ଓ ପାଶ୍ଚାତ୍ୟର

ଦ୍ୱନ୍ଦ୍ୱ ଓ ସଂଘର୍ଷ, ତାର ସ୍ଥିତି ଓ ସଂସ୍କୃତି କମ୍ବା ତାର ଋପଗତଧର୍ମୀ ମମତ୍ୱବୋଧ ଠିକ୍ ସେଇଭଳି ପରସ୍ପର ପରିପୂରକ । ମୋର ମନେ ହୁଏ, ଜୀବନର ସାମଗ୍ରିକ ରସ ଚେତନାର ଆସ୍ୱାଦ ନିମିତ୍ତ ଉଭୟ ସଂସ୍କୃତି ଅନ୍ୟ ରୂପରେ ଆମ ଆଗରେ ଠିଆ ହୋଇଛି—ତା' ହେଉଛି ବିଶ୍ୱସଂସ୍କୃତି । ଯେଉଁ ଗୋପବନ୍ଧୁଙ୍କୁ ଆମେ ବଡ଼ କବି ବୋଲି କହି ନାମ କୀର୍ତ୍ତନ କରୁ, ସେଇ ତ୍ୟାଗୀ ଗୋପବନ୍ଧୁ ବି ଦିନେ ଏଇ ବିଶ୍ୱ ସଂସ୍କୃତି ଓ ବିଶ୍ୱସମାଜ କଥା ଚିନ୍ତା କରିଥିଲେ । ଆଜି ଆମେ ? ଏଭଳି ପରଧର୍ମର ଦୋହାଇ ଦେଇ ଆଜିର କବିତାକୁ ଯୋକାଏ ଯେଉଁଭଳି ବାଛ ଓଗାଳୁଚନ୍ତି; ସେମାନଙ୍କୁ ବିନୀତ ଅନୁରୋଧ—ଏ ପ୍ରକାର ଅସାମାଜିକ ବିସ୍ଫୋରଧାରାର ବିଳାସରୁ ସେମାନେ ମୁକ୍ତ ରହନ୍ତୁ । କାରଣ କଳା, ସାହିତ୍ୟ ଓ ଶିଳ୍ପ ରାଜ୍ୟରେ ପର ଆପଣା ଜ୍ଞାନ ଥାଏ ନାହିଁ । ଏଠି ଦିଆ ନିଆର ଜୀବନ ଓ ଏଇ ଦେଣନେଣ କାରବାରରୁ ସବୁ ପ୍ରକାର ସ୍ୱାର୍ଥର ବନ୍ଧନ ଶତଧା ବିଦୀର୍ଣ୍ଣ ।

ବର୍ତ୍ତମାନ ବ୍ୟକ୍ତିତନ୍ତ୍ରର ଯୁଗ । ସମାଜ ଜୀବନର ବୈଚିତ୍ର୍ୟବୋଧ ଆଜିର କବିକୁ ବେଶି ଘାରେ ନାହିଁ । କାରଣ ଆଜିର ସମାଜରେ, ବିଶେଷ କରି ନଗରକେନ୍ଦ୍ରିକ ସଭ୍ୟତାର ପୃଷ୍ଠଭୂମିରେ ଆମେ କେହି କାହାରି ନୋହୁଁ । କେବେ କେମିତି ହୁଏତ ନିଜର ସ୍ୱାର୍ଥ ଓ କର୍ମର ସାଧନ ନିମିତ୍ତ ଅନ୍ୟର ଦ୍ୱାରସ୍ଥ ହୋଇଥାଉଁ । ନଚେତ୍ ଆମେ ଏପରି ବ୍ୟସ୍ତ ଓ ଚଞ୍ଚଳ, ଏପରି ବ୍ୟକ୍ତି ଜୀବନର କଲ୍ୟାଣ ନିମିତ୍ତ ପାଗଳ ଯେ, ମୁହୂର୍ତ୍ତେ ହେଲେ ସମୟ ନାହିଁ ଅନ୍ୟ ପାଇଁ ଚିନ୍ତା କରିବାକୁ । ଏଇ ଯେଉଁ ବ୍ୟକ୍ତିକେନ୍ଦ୍ରିକ ମନୋଭାବ, ତାହା ହୁଏତ ସମାଜ ଜୀବନର ସମୂହ କଲ୍ୟାଣରେ ସାହାଯ୍ୟ କରିଥାଏ । କିନ୍ତୁ ଆପାତତଃ ଆଜିର ମଣିଷ ମୁଖ୍ୟତଃ ବ୍ୟକ୍ତିତନ୍ତ୍ରର ଉପାସକ । ତେବେ ସମାଜ ଜୀବନର ଉତ୍ଥାନ ପତନ ଓ ଆର୍ଥନୀତିକ ସଂସ୍ଥିତିର ପ୍ରଭାବ ଯେ ଆଜିର ବ୍ୟକ୍ତିକୁ ପ୍ରଭାବିତ କରେ ନାହିଁ, ଏମିତି ନୁହେ । ସେ ସବୁ ଦେଖେ, ଶୁଣେ । ସବୁ ଅଭାବ ଅନଟନ, ଦୈନ୍ୟ ଓ ପ୍ରାଚୁର୍ଯ୍ୟର କରିମାନଙ୍କୁ ଶୁଭେଚ୍ଛା ଜଣାଏ, ପୁଣି ଏ ସବୁର ପ୍ରତିକ୍ରିୟା ଓ ଆନ୍ଦୋଳନ ଭିତରେ ବି ସେ ନିର୍ବିକାର ରହେ । ପୁଣି ଏଇ ନିର୍ବିକାର ଚିତ୍ତର ସମ୍ଭାବ୍ୟ ଆବେଗ ଓ ଶାଳୀନତାର କେନ୍ଦ୍ର ବିନ୍ଦୁରେ ନିଜେ ବସି ଆପଣାକୁ ଡିସେକ୍ଟିଂ କରିବାର ପ୍ରୟାସ କରେ । ଯେମିତି ଚୌରଙ୍ଗୀ, ମ୍ୟାରେନ୍‌ଡ୍ରାଇଭ୍ ବା ଷ୍ଟ୍ରେଧ୍ୟାସ୍ଟ ବଜାର ଛକରେ ଠିଆ ହୋଇଥିବା ନିର୍ବୋଧ ଶିଶୁଟିଏ ସେ ! ନୈକାରଣ୍ୟ ସମଗ୍ର ପୃଥିବୀଟାର

ଲୋକଗୁଡ଼ାକୁ ସୃଷ୍ଟି ଏ ବିରାଟ ଆକାଶଟା ତା ମଥା ଉପରେ ଭାଙ୍ଗିପଡ଼ୁଛି । ସମସ୍ତେ ଅଜଣା, ଅଜ୍ଞାତ ଓ ଅପରିଚିତ । ଏ ବିରାଟ ଦୁନିଆରେ ସେ ନିର୍ବୋଧ ନୁହେଁ ତ ଆଉ କିଏ ? ଏ ପ୍ରକାଣ୍ଡ ଜନସମୁଦ୍ରର ପଚିଶିଆର ଭିତରେ ତାର ସ୍ଥିତି ପୁଣି କେଉଁଠି ? ଅଣବ୍ରିଶଟି ବର୍ଣ୍ଣମାଳାର ସୌଧ ଭିତରେ 'କ' ନାମକ ବ୍ୟକ୍ତିର ଏ ପ୍ରକାର ଅସହାୟତା କ'ଣ ଅନୁଭବ୍ୟ ନୁହେଁ ? ମୋର ମନେ ହୁଏ ତାର ସବୁ ଥାଇ ବି କିଛି ନାହିଁ । ଆଉ, ସବୁ ନ ଥିବା ଭିତରେ ବି ତାର ସବୁ ଅଛି; କାରଣ ଏ ସମଗ୍ର ମଣିଷ ସମାଜ ଭିତରେ ବି ତା ସତ୍ତା ସ୍ୱୀକୃତ । ତେଣୁ ସେ ଯେତେ ଦମ୍ଭହୀନ ଓ ଦୃଶ୍ୟ ହେଲେ ବି ତା' ଜୀବନର ମହତ୍ତ୍ୱ ତା' ନିକଟରେ ଅବହେଳିତ ନୁହେଁ । ସେ ସମସ୍ତଙ୍କ ଭଳି ଜଣେ ସମ୍ରାଟ, ବଞ୍ଚିବା ଓ ମଣିଷ ଜୀବନର ଅସରନ୍ତି ପ୍ରବାହକୁ ବଞ୍ଚାଇ ରଖିବା ଦିଗରେ ମଧ୍ୟ ତା'ର କମ୍ ଦାନ ନାହିଁ ।

ସାହିତ୍ୟରେ ଏ ପ୍ରକାର ବ୍ୟକ୍ତିକୈନ୍ଦ୍ରିକ ଚିନ୍ତାର ପ୍ରକାଶ ଘଟିଛି । ବିଶେଷକରି କବିତାରେ ଏ ପ୍ରକାର ବ୍ୟକ୍ତିତନ୍ତ୍ରର ପ୍ରାଧାନ୍ୟ ସବୁଠୁଁ ବଡ଼ ହୋଇ ଠିଆ ହୋଇଛି, କାରଣ ମୁଁ ଆଗରୁ କହିଛି, କବିତା ଏକ ସୂକ୍ଷ୍ମ ମାଧ୍ୟମ ଯାହାଦ୍ୱାରା ବ୍ୟକ୍ତି ଜୀବନର ମାର୍ମିକ ଅନୁଭୂତି ଖୁବ୍ ସତର୍କତା ଓ ଶୃଙ୍ଖଳାର ସହ ପ୍ରକାଶ ଲାଭ କରେ, ଏଥିରେ ବ୍ୟକ୍ତି ଜୀବନର କରୁଣା ଓ ଦମ୍ଭହୀନତା ଯେମିତି ରୂପ ଗ୍ରହଣ କରେ, ଅନ୍ୟ କେଉଁଥିରେ ସେପରି ପ୍ରଚେଷ୍ଟା ପ୍ରାୟ ଦୁର୍ଲଭ । ସବୁପ୍ରକାର ଶୃଙ୍ଖଳା ଓ ବନ୍ଧନ ଭିତରେ ଥାଇ ବି କବିର ଜୀବନ ବିଶୃଙ୍ଖଳ ଓ ଅସାମାଜିକ । ଜୀବନର ପ୍ରଭୂତ ପ୍ରାଚୁର୍ଯ୍ୟ ଭିତରେ ବୁଡ଼ ରହି ବି ସେ ଦାରିଦ୍ର୍ୟର ଉପାସକ । ପୁଣି କାଙ୍ଗାଳ ହୋଇ ବି ସେ ବିରାଟ ଧନୀ । କାରଣ ଏହି ଚିହ୍ନା ପୃଥିବୀ ସବୁଠୁଁ ଅଧିକ ଅଚିହ୍ନା ଓ ଆପଣାଠାରୁ ଆଉ ଅଧିକ ଆପଣାର ବନ୍ଧୁ ଏ ଦୁନିଆରେ ତାହାର କେହି ନାହିଁ । ସେ ଯେମିତି ଜାଣେ, ଚିହ୍ନେ ଓ ଆପଣାକୁ ଦୁଃଖ ଏବଂ ଶୋକରେ ସାନ୍ତ୍ୱନା ଦିଏ, ଆଉ ସେମିତି ଏ ଦୁନିଆରେ କିଏ ଅଛି ? ତେଣୁ କବି ଆତ୍ମଜ୍ଞାନରେ ଧନୀ । ପରନ୍ତୁ ଆପଣାର କରିବା କଳାକୁଶଳତାରେ ଧନୀ ସୌଦାଗର । କବିର ବ୍ୟକ୍ତିକୈନ୍ଦ୍ରିକ ଭାବ ହୁଏତ ଅନେକଙ୍କୁ ସୁହାଇ ନ ପାରେ । ହୁଏତ ଅନେକଙ୍କ ଯୁକ୍ତିକୁ ସମର୍ଥନ କରି ନ ପାରେ । ତଥାପି ଆଜିର କବି ଆତ୍ମନେପଦୀର ଦ୍ରଷ୍ଟା । ଯୁଗଯୁଗର ବିଚ୍ଛିନ୍ନ ଚିନ୍ତା-ବିଶୃଙ୍ଖଳା ଭିତରେ ଏକ ଅଚ୍ଛେଦ୍ୟ ସମ୍ପର୍କର ସେତୁ ସ୍ଥାପନ କରିବା ତା'ର ଲକ୍ଷ୍ୟ । ବ୍ୟକ୍ତିଜୀବନର ଅପରିହାର୍ଯ୍ୟ ବ୍ୟର୍ଥତା ଓ ଜ୍ୱଳନର ଉତ୍ତାପରେ ବିଦଗ୍ଧ ଏବଂ ପୁଣି ଦହମାନ ସମାଜ ଜୀବନର ଉଦାସୀ ଚେତନାକୁ ଉଦ୍ଦୀପ୍ତ କରିବାରେ

ସଚେଷ୍ଟ । ସେଇ ହେତୁରୁ ତା'ର ପ୍ରଚେଷ୍ଟାର ମାଧ୍ୟମ କାବ୍ୟ-ଆବେଗର ଆନ୍ତରିକତାରେ ପରିପୂର୍ଣ୍ଣ ଓ ସେ ଆନ୍ତରିକତାର ସ୍ୱର ଅନେକତ୍ର ତିର୍ଯ୍ୟକ । ମୋର ବିଶ୍ୱାସ, ଏଥିପାଇଁ ଆଜିର କବି ଏତେ ଆତ୍ମପ୍ରେମୀ । ସେ ଛଳନାମୁକ୍ତ ଓ ତାର ସୃଷ୍ଟି ବହୁ ଅସଙ୍ଗତିର ସଙ୍ଗତି, ବହୁ ବିଡ଼ମ୍ବନା ଓ ବ୍ୟତିକ୍ରମର ସମନ୍ୱୟରେ ଏକ ସ୍ୱୟଂସମ୍ପୂର୍ଣ୍ଣ ଅର୍ଥର କାବ୍ୟବିସ୍ତାର !

ନାନା ଅବିଶ୍ୱାସ, ଆତଙ୍କ ଓ ବ୍ୟର୍ଥତାର ଅଗ୍ନିକୁଣ୍ଡରେ ଆମ ସମାଜଜୀବନ ଛଟପଟ ହେଉଛି । ବହୁ ବିଡ଼ମ୍ବିତ ଘଟଣା ଓ ପ୍ରତିକୂଳତାର ସୂଅରେ ଜୀବନର ପ୍ରାଣ-ପ୍ରାଚୁର୍ଯ୍ୟ ଯେମିତି କ୍ରମେ କ୍ରମେ ନିଃଶେଷ ହୋଇ ଆସୁଛି । ଶ୍ରଦ୍ଧା ଓ ମମତାବିବର୍ଜିତ ଜୀବନର ମୂଲ୍ୟ-ମାନତା ଅପେକ୍ଷା ଇଚ୍ଛାକୃତ ଅହଂଗତ ବିବେଚନା ଆମ ଭିତରର ନିର୍ଯ୍ୟାସକୁ ଅଧିକ ଶୋଷୁଛି । ସବୁ କିଛି ଅନର୍ଥକ, ଅବାଞ୍ଛିତ, ଅବିଶ୍ୱାସ୍ୟ ମନେ ହେଉଛି । ପ୍ରତାରଣା ଓ ପ୍ରବଞ୍ଚନାର ଧୂଆଁ ଭିତରେ ଆମେ ଅଣବିଶ୍ୱାସୀ ହୋଇ ପଡ଼ୁଚୁ । ଅନେକ ସ୍ଥଳରେ ସାମାଜିକ ଜୀବନର ବହୁ ସମସ୍ୟା ଓ ଯୋଜନାର ଆଶାପ୍ରଦ ସମାଧାନ ନିମିତ୍ତ ଆମେ ଯୁକ୍ତିପ୍ରବଣତା ଓ ଭାବପ୍ରବଣତାର ଶିକାର ହୋଇ ସମସ୍ତ ପ୍ରକାର ଆଇନ ଓ ଶୃଙ୍ଖଳା ଲଙ୍ଘନ କରି ବି ଆଶ୍ୱସ୍ତି ଲାଭକରି ପାରୁ ନାହୁଁ । ଏପରି କି ସବୁ ଅନୀତି ବା ଦୁର୍ନୀତିର ବେଦୀ ଉପରେ ବସି ଆପଣାକୁ ସାଧୁ ସଚ୍ଚୋଟ ବୋଲିବାରେ ଆମେ କୁଣ୍ଠାବୋଧ କରୁ ନାହୁଁ । ଜୀବନ ପ୍ରତି କର୍ତ୍ତବ୍ୟବୋଧ କ୍ରମେ କ୍ରମେ ତୁଟି ଯାଉଛି, ଆପଣାକୁ ଓ ଆପଣାର ପରିପ୍ରେକ୍ଷୀକୁ ସୁହାଇଲାଭଳି ଅନେକ କିଛି କରିବାକୁ ପଡ଼ୁଥିବା ସତ୍ତ୍ୱେ ଆମ ଭିତର ଡାକରାର ତାଗିଦ୍ ଏଥିରେ ନାହିଁ ବୋଲି ମନେ ହେଉଛି । ଧର୍ମ, ଈଶ୍ୱର ଓ ନୀତିଗତ ଜୀବନଧାରାର ପ୍ରାଧାନ୍ୟକୁ ସ୍ୱୀକାର କରିବାକୁ ଆମେ ମଧ୍ୟ ପ୍ରସ୍ତୁତ ନୋହୁଁ । ଯେଉଁ କେତେଜଣ ଟିକା ଚଇତନ କାଟି ମାଳ ଗଡ଼ାନ୍ତି, ମୋର ମନେହୁଏ ସେମାନଙ୍କ ଭିତରଟା ବାହାରକୁ ବେଶ୍ ଚିକ୍କଣ ଓ ସ୍ୱଚ୍ଛ । ଅନ୍ତତଃ ପକ୍ଷେ ଏତିକି ବୁଝାଯାଇପାରେ ଯେ, ସେମାନେ ଧର୍ମଭୀରୁ । ମୃତ୍ୟୁକୁ ନିଜ ଅକ୍ତିଆରରେ ରଖିବା ପାଇଁ ଏମାନେ ସତତ ବ୍ୟାକୁଳ । କିନ୍ତୁ ଜୀବନ ଯେ ଏତେ ଆପଣାର ଓ ନିଜ ଗୋଡ଼ ଉପରେ ଠିଆ ହୋଇ ମୃତ୍ୟୁକୁ ଧକ୍କା ଦେଇ ଚାଲିଛି, ଏକଥା ପ୍ରାୟ ଏମାନେ ଭୁଲିଯାଇ ଥାଆନ୍ତି । ତେଣୁ ଏମାନେ ମୁଖ୍ୟତଃ ଜୀବନଭୀରୁ । ସୁଖବାଧା ଓ ସହଜବିଳାସରେ ନିମଗ୍ନ । ଏହା ସତ୍ତ୍ୱେ ଜୀବନ ପ୍ରତି ପ୍ରାଣାନ୍ତକ ଭୟ ଓ ଆଶଙ୍କା ଘାରିଛି । ହାତେ

ମାଟି ବୃଖଣ୍ଡେ ଗଢ଼ିବାର କଳାନୈପୁଣ୍ୟ ଏ ଧର୍ମଧ୍ୱଜୀମାନଙ୍କୁ ବେଶି ଜଣା । ତଥାପି ଏ ସଙ୍କଟରୁ ମୁକ୍ତି ମିଳି ନାହିଁ । ନାନା ଆତ୍ମକୃତ ଦୁର୍ଘଟଣାର ଦୁର୍ଭୋଗରେ ପଡ଼ି ପେଷି ହେବା ବି ଅତି ସହଜ ଓ ସ୍ୱାଭାବିକ । ଆଜି ସବୁଠୁଁ ବେଶୀ ବାଧୁଛି ଆମ ଚେତନାର ଦୈନ୍ୟ । ପୁଣି ଏ ହୀନତା ସମ୍ପର୍କରେ ଆଜିର କଳାକାର ଅଧିକ ସଚେତନ । ସବୁ ଅନ୍ତର୍ଦ୍ୱନ୍ଦ୍ୱ ସବୁ ବିରୋଧ ଓ ଆତ୍ମପ୍ରତ୍ୟୟହୀନ ପରିସ୍ଥିତିରେ ବି ଆପଣାକୁ ଓ ଆପଣାର ଭଲପାଇବା ସ୍ୱଭାବ-ପୁରୁଷକୁ ଅବହେଳା କରିହୁଏ ନାହିଁ । ଏତେ ଝଡ଼, ଏତେ ବିକ୍ଷୋଭ, ଏତେ ନିର୍ମମତା ଓ ଅସାମଞ୍ଜସ୍ୟ ସତ୍ତ୍ୱେ, ଏତେ ବେଦନା, କ୍ରନ୍ଦନ ଓ ମିଥ୍ୟାମାଣତା ସତ୍ତ୍ୱେ ମଣିଷ ଆଲୋକ ଖୋଜି ବୁଲୁଛି । ପୁଣି ଏ ଅନ୍ୱେଷଣର କୂଳକିନାରା ବି ନାହିଁ । ଅନ୍ଧକାରର ସ୍ତୂପ ଚିରି ବିଦ୍ୟୁତ୍‌ର ସ୍ପନ୍ଦନ ପରି ତା ଆଶା ଓ ବିଶ୍ୱାସ ଝଳୁଛି ।

ଆଜିର କବି ନିକଟରେ ଜୀବନ ଯେତିକି ସତ୍ୟ, ମୃତ୍ୟୁ ସେମିତି ଅତି ଆପଣାର । ଜୀବନର ସାମଗ୍ରିକ ମହତ୍ତ୍ୱକୁ ଧରି ରଖିବାର ପ୍ରଚେଷ୍ଟା ଓ ମୃତ୍ୟୁର ବୀଭତ୍ସତା ବି ଆଜିର କବିକୁ ସତତ ସତର୍କ ଓ ସଚେତ କରୁଛି । କାରଣ ତା ନିକଟରେ କେଉଁଟା ପରିତ୍ୟାଜ୍ୟ ବା ଘୃଣ୍ୟ ନୁହେଁ । ପଦ୍ମର ସୁରଭି ଓ ତାର ସୌନ୍ଦର୍ଯ୍ୟ ଯେପରି ପ୍ରୀତିସମ୍ପାଦନକାରୀ, ତାର ଜନ୍ମର ତଳଭୂଇଁ ପାଣି, ପଙ୍କ ବି ସେ ପ୍ରୀତି ଓ ମାଧୁର୍ଯ୍ୟର ପରିପୂରକ । ତେଣୁ କଣା, ଖୋଟା, କୁଜାର ଜୀବନ ମଧ୍ୟ ତା କାବ୍ୟର ଅଙ୍ଗୀଭୂତ ଓ ବେଶ୍ୟା, ମଦ କିମ୍ବା ଯାଯାବର ଜୀବନର ବିଶୃଙ୍ଖଳା ଭିତରେ ବି ରହିଛି ଜୀବନର ଶ୍ରେଷ୍ଠତା ଓ ମହିମାମୟତା । ଜଳନ୍ତା ନିଆଁର ଜ୍ୱାଳା ଯେତିକି ସତ୍ୟ, ପାଉଁଶ, ଅଙ୍ଗାର ଓ ଶ୍ମଶାନର ଆବର୍ଜନା ଭିତରର ଦୂଷିତ ସତ୍ତା ବି ସେତିକି ସତ୍ୟ ଓ ଶୁଭଙ୍କର । ତେଣୁ ଆଜିର କବି ଜଗତର ସବୁ ବ୍ୟର୍ଥତା, ଭଗ୍ନତା ଓ ଅନ୍ତର୍ଦ୍ୱନ୍ଦ୍ୱ ସତ୍ତ୍ୱେ, କିମ୍ବା ଅବିଶ୍ୱାସ, ଅନାସ୍ଥାଭାବ ଓ ମୂଲ୍ୟମାନଙ୍କ ଭିତରେ ଭୁଷୁଡ଼ି ପଡ଼ିବାର ପ୍ରଶ୍ନ ଉଠୁନାହିଁ । ପୁରୁଷ ପୁରୁଷର ସଭ୍ୟତା ଓ ସଂସ୍କୃତି ଜଳି ପୋଡ଼ି ପାଉଁଶ ହୋଇଗଲେ ବି ମଣିଷ ଜୀବନର ମହତ୍ତ୍ୱ ପୁରାପୁରି ଲୁପ୍ତ ହେବାର ସାମର୍ଥ୍ୟ ହରାଇ ପାରିବନି । ସବୁ ଅଶାନ୍ତି, ଅନାସ୍ଥାଭାବ ଓ ନେତିବାଦ ଭିତରେ କବି ପ୍ରାଣର ବ୍ୟାକୁଳତା କେବଳ ଏଇ ଭଙ୍ଗୁରତା, ଅର୍ଥହୀନତା ଓ ଦୁର୍ବଳତା ପ୍ରତି ଆମକୁ ଅଧିକ ସଚେତ କରାଇବ । ସବୁ ମୂଲ୍ୟବୋଧର ଦ୍ୱନ୍ଦ୍ୱମୟତା ଭିତରେ କିମ୍ବା ହତାଶା ଓ ବୈରାଗ୍ୟର ଅନିଶ୍ଚୟତା ମଧ୍ୟରେ କିମ୍ବା ଆସୁରିକ ଶକ୍ତିର ପ୍ରଭାବର

ପ୍ରାବଲ୍ୟ ଭିତରେ ବି କବି "ସିଦ୍ଧାର୍ଥ" ପରି ସତ୍ୟର ପରିଚିତି ଖୋଜନ୍ତି । ପୁଣି ସମରସେଟ୍ ମମଙ୍କ ବିଶ୍ୱବିଦିତ ଉପନ୍ୟାସ "ଦି ରେଜରସ ଏଜ୍"ର ନାୟକ ଲାରି ପରି ଆଜିର କବି ବିଶ୍ୱାସ ଓ ଅବିଶ୍ୱାସର ଘୂର୍ଣ୍ଣି ଭିତରେ ଘୂରି ଘୂରି ବିଶ୍ୱାସକୁହିଁ ଅନ୍ତ ଆପଣାର ବନ୍ଧୁ କରି ରଖିଛି । ଯେତେ ଅରମା, ଖାଲ, ଡିପ, ନିଘଞ୍ଚ ଜଙ୍ଗଲ ଓ ହିଂସ୍ରଜନ୍ତୁବହୁଳ ରାସ୍ତା ହେଲେ ବି କବି ସବୁ ପ୍ରକାର ପ୍ରତିବନ୍ଧକ ଅତିକ୍ରମ କରି ତା ଲକ୍ଷ୍ୟରେ ପହଞ୍ଚିବା ପାଇଁ ଦୃଢ଼ପ୍ରତିଜ୍ଞ । ହୁଏତ ଏ ପ୍ରକାର ପ୍ରତିବନ୍ଧକ ତାର ଗତିପଥରେ ସାମୟିକ ଘନକୃଷ୍ଣ ମେଘର ପ୍ରଳୟ ସୃଷ୍ଟି କରିପାରେ, ହୁଏତ ତାର ଅନ୍ତରାତ୍ମାକୁ ଭାଙ୍ଗି ଚୁରି ଚୁରମାର କରିବାର ଚେଷ୍ଟା କରିପାରେ, କିନ୍ତୁ କବି ମନ ଓ ତା ହୃଦୟର ଦୃଢ଼ତା, ପୁଣି ତାର କାରୁଣ୍ୟ ଓ ଆନ୍ତରିକତା ଯେପରି ଉଦାସୀନ, ପୁଣି ସେପରି ଦୃଢ ଓ ଭୟଙ୍କର । ତେଣୁ ଆଜିର କବି ପାଖରେ ଏସବୁ ତୁଚ୍ଛ ଓ ସାଧାରଣ । କବିର ସାଧନା ଏହି ତୁଚ୍ଛତା ଓ ସାଧାରଣ ଜୀବନଯାତ୍ରାର ବହୁ ଊର୍ଦ୍ଧ୍ୱରେ । ଅଥଚ ଏଇ ତୁଚ୍ଛତା ଓ ଯାନ୍ତ୍ରିକ ନଗରରେ ସେ ଘାଣ୍ଟିଚକଟି ହେବାକୁ ଭଲପାଏ ।

କବି ମରିଗଲେ ବି ଅମର । ସେ ମରଣକୁ ନିତ୍ୟ ସହଚର କରିଥାଏ ତା' ଜୀବଦ୍ଦଶାରେ । ଭଗ୍ନୀ, ପ୍ରିୟା ଓ ଭାର୍ଯ୍ୟା ଭଳି ମୃତ୍ୟୁଦେବ ଖେଳି ଖେଳି ତାକୁ ଏମିତି ଆପଣାର କରିଥାଏ ଯେ, ମରିଗଲା ପରେ ବି ତା' କୋଳରେ ଶୋଇ ଜୀବନକୁ ଗେହ୍ଲା କରେ । ଏଥିପାଇଁ ବୋଦଲେୟାର, ର୍ୟାମ୍ବୋଙ୍କ ଜୀବନ ଏତେ ବିଚିତ୍ର, ଡାଇଲନ ଟମାସଙ୍କ ଜୀବନ ଏତେ ଭୟଙ୍କର ଓ ଲରେନସ୍ ହକ୍‌ସଲି କିମ୍ବା କାମ୍ୟୁଙ୍କ ଜୀବନର ଯାତ୍ରାପଥ ଏତେ ବଙ୍କାଟଙ୍କା । ଏଇ ତ କାଲି ପୁଣି ରୁଷର ଯୁବକବି ସାର୍ଗେଇ ଏସାନିନ୍ ଫାଶୀ ଦେଇ ମଲେ । ନିଜ ରକ୍ତର କାଳିରେ ଲେଖା କବିତାଟିଏ ଉପହାର ଦେଇଗଲେ ଏ ସୁନ୍ଦର ଜୀବନକୁ । କବି ହେବା ପାଇଁ ଯେଉଁ ଗଭୀର ବେଦନା ଓ ଅବକ୍ଷୟ ପ୍ରେରଣା ଲୋଡ଼ା, ତା ପାଇବାର ସୌଭାଗ୍ୟ କେଇ ଜଣଙ୍କ ଜୀବନରେ ଆସେ ? ଏ ସବୁ ବୈଚିତ୍ର୍ୟ ଭିତରେ ଯେଉଁ ମନୋଜ୍ଞ ଛନ୍ଦ ଓ ଏ ସବୁ ତିକ୍ତତା ଭିତରେ ଯେଉଁ ମୂର୍ତ୍ତିମନ୍ତ ମାଧୁର୍ଯ୍ୟ, ତା' ତ କବିର ଭାଗ୍ୟ-ବିଧାନ । ଅଜସ୍ର ଯନ୍ତ୍ରଣା ଓ ମନସ୍ତାପ ଭିତରେ ବି ତାର ଗଭୀର ଆତ୍ମବିଶ୍ୱାସ ଓ ଭଲ ପାଇବାର ଅନିର୍ବାଣ ଶିଖା ପ୍ରଜ୍ୱଳିତ ।

ଚରମ ବିତୃଷ୍ଣା, ପ୍ରତ୍ୟାଖ୍ୟାନ, ବିରୋଧ ଓ ସନ୍ଦେହ ଭିତରେ କବି ଆଶା ଓ ବିଶ୍ୱାସ ହରାଏ ନାହିଁ । ଅବଶ୍ୟ ଏ ଆଶା ଓ ବିଶ୍ୱାସ ଭିନ୍ନ ଭିନ୍ନ ସ୍ରଷ୍ଟାଙ୍କ ସୃଷ୍ଟିରେ ଭିନ୍ନ ଭିନ୍ନ ସ୍ୱରରେ ଧ୍ୱନିତ ହୋଇଥାଏ । କିନ୍ତୁ ଏହା ନିଶ୍ଚିତ ସତ୍ୟ ଯେ, କବି ନିହାତି ନିର୍ଲଜ୍ଜ ଓ ପୁଣି ଏକାନ୍ତ ସଂଭ୍ରାନ୍ତ । ଏଇ ନିର୍ଲଜ୍ଜତା ଓ ସଂଭ୍ରାନ୍ତ ଚିନ୍ତାଧାରା ଭିତରେ ସେ କେବଳ ସତ୍ୟକୁ ଖୋଜେ, କେଉଁଠି ବା ପାଏ, କେଉଁଠି ବା ଉଦ୍ଭ୍ରାନ୍ତ ହୁଏ; ବା କେଉଁଠି ନ ପାଇବାର ଜ୍ୱାଳା ଭିତରେ ତାର ଅନ୍ତରକୁ କୁହୁଳାଇ କୁହୁଳାଇ ବିଦ୍ରୋହର ଫରନେସ ତିଆରି କରେ । କିନ୍ତୁ କବି ଆଶା ଓ ବିଶ୍ୱାସର କଣ୍ଟକମୟ ରାସ୍ତାରୁ ସହଜରେ ଓହ୍ଲାଇ ପାରେ ନାହିଁ ।



# ଆଜିର କବିତା

ହିନ ଥିଲା, ସେତେବେଳେ ପାଠକ ଆଉ କବି ଭିତରେ ଏକ ନିର୍ଦ୍ଦିଷ୍ଟ ଯୋଗସୂତ୍ର ରହିଥିବ । ସେ ଦୁହିଁଙ୍କ ଭିତରେ ଏକ ପ୍ରକାର ଲକ୍ଷ୍ୟ ଦୃଷ୍ଟିଗୋଚର ହେଉଥିଲା । ସେତେବେଳେ ସାହିତ୍ୟରେ 'ସ୍ୱୀକୃତ ମୂଲ୍ୟବୋଧ' ରହିଥିଲା । ଏହାର କାରଣ ହେଉଛି—'ଲିବରାଲ ଏଡୁକେଶନ' । ଯେ ପର୍ଯ୍ୟନ୍ତ ଏହି ଶିକ୍ଷା ପଦ୍ଧତି ଚାଲିଆସିଲା, ସେ ପର୍ଯ୍ୟନ୍ତ ଆମେ ଦେଖୁ, ଏକ ସୁସ୍ଥ-ସୁନ୍ଦର ପରଂପରାରେ ଆମ ସମାଜ ପରିଚାଳିତ ହୋଇ ଆସିଲା । କବି ଓ ପାଠକ ଭିତରେ ଏକ ସମନ୍ୱିତ ଲକ୍ଷ୍ୟ ଦୃଷ୍ଟିଗୋଚର ହେଲା । ଯୋଗସୂତ୍ର ସୁଦୃଢ଼ ହୋଇ ରହିଲା ।

ସେତେବେଳର ସାହିତ୍ୟ ଆଲୋଚନାରୁ ଜଣାଯାଏ, ସ୍ରଷ୍ଟାଗଣ ସେମାନଙ୍କର ସୃଷ୍ଟି ସମ୍ପର୍କରେ 'ସ୍ୱୀକୃତ ମୂଲ୍ୟବୋଧ' ଉପରେ ଖୁବ୍ ଗୁରୁତ୍ୱ ଆରୋପ କରି ସଚେତନ ରହିଥିଲେ । ସେଥିପାଇଁ ଅଧିକାଂଶ କାବ୍ୟ-କବିତା ପ୍ରାୟ ପୁରାଣ ତଥା କିମ୍ବଦନ୍ତୀର ଭିତ୍ତିଭୂମି ଉପରେ ଲିଖିତ ତଥା ପ୍ରତିଷ୍ଠିତ । ତେଣୁ କାବ୍ୟ-କବିତା ପାଠକର ପ୍ରାଣକୁ ସ୍ପର୍ଶ କରୁଥିଲା । ପାଠକର ପ୍ରାଣରେ ଭାବାବେଗ, ଆଲୋଡ଼ନ ସୃଷ୍ଟି କରିବାକୁ ସକ୍ଷମ ହେଉଥିଲା । ଏଇଠି କୁହାଯାଇ ପାରେ ଯେ, କବି ସାମାଜିକ ଏବଂ ପାଠକ ବି ସାମାଜିକ । ସମାଜ ସହ ଦୁହିଁଙ୍କର ଘନିଷ୍ଠ ସଂପର୍କ । ଏ କ୍ଷେତ୍ରରେ କବି ଏହି ସମାଜରେ ରହି ଯାହା ସୃଷ୍ଟି କରିବ ବା କବିତା ସୃଷ୍ଟି ପାଇଁ ଉପାଦାନ ସଂଗ୍ରହ କରିବ, ତାହା ଯଦି ବାହାର ସମାଜରୁ ଆସିଥାଏ, ସେତେବେଳେ ପାଠକ ପାଇଁ ସେହି କବିତା ବିରକ୍ତ ବୋଧ ହେବା ସ୍ୱାଭାବିକ । ପାଠକ ଯାହା ସହିତ ପରିଚିତ—ଯାହାକୁ ସେ ଆପଣାର, ଆତ୍ମୀୟ ବୋଲି ଭାବେ ଏବଂ ନିତିଦିନିଆ ଚଳପ୍ରଚଳ .

ଅନୁଭୂତିବଦ୍ଧ ଅଭିଜ୍ଞତା ବୋଲି ମନେକରେ, କବି ଠିକ୍ ସେହିପରି ଉପାଦାନର ଭିତ୍ତିଭୂମିରେ କବିତା-ସୌଧ ନିର୍ମାଣ କଲେ, ସେହି ନିର୍ମିତ ସୌଧଟି ପାଠକର ବେଶ୍ ଦୃଷ୍ଟି ଆକର୍ଷଣ କରିପାରେ ।

ତେଣେ ଏପରି ବ୍ୟବସ୍ଥା ଥିଲା, ସେଥିପାଇଁ ପାଠକକୁ କବି ଆନନ୍ଦ ଦେଇ ପାରୁଥିଲେ । କବିତାକୁ ପାଠକ ଦରଦୀ ହୃଦୟ ନେଇ ବୁଝିବାକୁ ଚେଷ୍ଟା କରୁଥିଲା । ଅବଶ୍ୟ ଆଜି ବି ପାଠକ କବିତାକୁ ହୃଦୟ ଦେଇ ଆପଣାର କରିବାକୁ ଚେଷ୍ଟା କରୁଛି । ମାତ୍ର ଆଜି ଆଉ ସେଦିନ ନାହିଁ । ସେହି ଶିକ୍ଷା-ପଦ୍ଧତିର ପରିବର୍ତ୍ତନ ଘଟିଛି । ଫଳରେ ପରିବର୍ତ୍ତିତ ଶିକ୍ଷାପଦ୍ଧତି ଜୀବନର କଠୋର ବାସ୍ତବତାଠାରୁ ମଣିଷକୁ ଦୂରେଇ ଦେଇଛି । ଆଜିର ମଣିଷ ଜୀବନରେ ସେଥିପାଇଁ କୃତ୍ରିମତାର ଅଭିନୟ ଦେଖାଯାଉଛି । ସେ ସମୟର 'ଲିବରାଲ ଏଡୁକେଶନ' ବଦଳରେ ଆଜି 'ସ୍ପେଶିଆଲାଇଜଡ୍ ଏଡୁକେଶନ'ର ବ୍ୟବସ୍ଥା ହୋଇଛି । ଶିକ୍ଷାପଦ୍ଧତି ସ୍ପେଶିଆଲାଇଜେସନ ଦ୍ୱାରା ପ୍ରଭାବିତ ହୋଇ ତାହାରି ମାଧ୍ୟମରେ ମଣିଷକୁ ଶିକ୍ଷିତ କରୁଛି ।

ଆଜି କବି ଆଉ ପାଠକ ଭିତରେ ଅଭିନ୍ନ ପ୍ରେରଣା ଭୂମି ନାହିଁ । ଆଜିର କବିତା ସର୍ବସାଧାରଣର ପ୍ରେରଣା ଭୂମି ହୋଇ ରହିନାହିଁ । କବିତାରେ ଜନ-ଜୀବନର ସ୍ପଷ୍ଟ ଚିତ୍ର ପାଠକ ପାଇଁ ଦେଖାଯାଉନି । ତେଣୁ କବିତା ଜନ-ଜୀବନର ସ୍ୱପ୍ନ, ହତାଶା, ଅଶ୍ରୁ, ହସ ଓ ସଫଳତା ଠାରୁ ଦୂରେଇ ଯାଇଛି ବୋଲି ଅନେକେ ମନେ କରନ୍ତି । ଅବଶ୍ୟ ଏହି ମତାମତର ପ୍ରତିବାଦରେ ଦଳେ ସାଂପ୍ରତିକ କବି ଯୁକ୍ତି ବାଢ଼ୁଛନ୍ତି । ସବୁ ସତ୍ତ୍ୱେ ଆମକୁ ସ୍ୱୀକାର କରିବାକୁ ହେବ ଯେ, ପାଠକ ଆଉ କବି ଭିତରେ ଯେଉଁ ସେତୁଟି ଥିଲା, ତାହା ସ୍ପେସିଆଲାଇଜଡ଼ ଏଡ଼ୁକେଶନ ଦ୍ୱାରା ବିଚ୍ଛିନ୍ନ ହୋଇ ଯାଇଛି । ଏହି ସେତୁଟି ଭାଙ୍ଗିଗଲା ପରେ ଦୁଇକୂଳକୁ ବାନ୍ଧି ରଖିବାର ଉପାଦାନ କଅଣ ହେବ ? ଏପର୍ଯ୍ୟନ୍ତ ଏ ଉପାଦାନଟିର ସନ୍ଧାନ ମିଳିଥିଲା ପରି ମନେ ହୁଏନା । କବି ଓ ପାଠକ ଭିତରେ ଠିକ୍ ଏଇ ଅବସ୍ଥା ଆଜି ଆସି ପହଞ୍ଚିଛି ।

'ଭୀମ' ଶବ୍ଦଟି ସହ ଆମ ଦେଶର ଲୋକେ ପରିଚିତ । ଏହି ଶବ୍ଦଟି ଯଦି କୌଣସି କାବ୍ୟ-କବିତାରେ ପ୍ରୟୋଗ କରାଯାଏ; ତାହାହେଲେ କୌଣସି ବଳଶାଳୀ ବ୍ୟକ୍ତି ବା ବସ୍ତୁ ସମ୍ପର୍କରେ ସୂଚନା ଦିଆଯାଇଛି ବୋଲି ଏହା

ସହଜରେ ବୁଝାଯାଇ ପାରେ । କାରଣ, ଏହାର 'ସ୍ୱୀକୃତ ମୂଲ୍ୟବୋଧ' ରହିଛି ଏବଂ ଏହି ଶବ୍ଦ ସହିତ ସମସ୍ତେ ପରିଚିତ । ଏହି ଉପମାଟି ବୁଝିବା ପାଇଁ ଯେପରି ସୁବୋଧ, ଏହା ତୁଳନାରେ 'ଆଟୋମିକ୍ ଏନାର୍ଜି'ର ଉପମାକୁ ବୁଝିବା ସେତେ ସହଜ ନୁହେଁ । ଅବଶ୍ୟ ଷାଣ୍ଡ ବଳଶାଳୀ ଏବଂ 'ଆଟୋମିକ୍ ଏନାର୍ଜି' ବଳଶାଳୀ ବୋଲି ଧରି ନିଆ ଯାଇପାରେ । ମାତ୍ର ପର ଉପମାଟି ବୁଝିବା ପାଇଁ ସେତେ ସହଜ ହେଉନାହିଁ । କାରଣ, ଏହା ସହିତ ପାଠକ ପରିଚିତ ନୁହେଁ—ସମ୍ପର୍କ ମଧ୍ୟ ଖୁବ୍ କମ୍ । ଆଜିର କବିମାନେ ସୁବୋଧ 'ଷାଣ୍ଡ' ଶବ୍ଦ ପରି ଅନେକ ପରିଚିତ ଶବ୍ଦ ସବୁକୁ ଛାଡ଼ି ଦୁର୍ବୋଧ 'ଆଟୋମିକ ଏନାର୍ଜୀ' ପରି ବସ୍ତୁ ଶବ୍ଦକୁ କବିତାରେ ବ୍ୟବହାର କରିବା ପାଇଁ ଭଲ ମନେ କରୁଛନ୍ତି । ଫଳତଃ ସେହି ଦୁର୍ବୋଧ ଶବ୍ଦ ବା ଉପମା ସହିତ ଯେଉଁ ପାଠକ-ମାନେ ପରିଚିତ ନୁହଁନ୍ତି, ସେମାନଙ୍କ ପାଇଁ ଆଜିର କବିତା ଦୁର୍ବୋଧ ବୋଧ ହେବା ସ୍ୱାଭାବିକ !

ପୁରାତନ ଓ ନୂତନ ମୂଲ୍ୟବୋଧର ସଂଘର୍ଷ ଦ୍ୱାରା ଆଜିର କବିତା ଭାରାକ୍ରାନ୍ତ । "We stand between two worlds, the one dead—and the other yet to be born." ପୁରାତନ ଦୁନିଆ ଆଜି ମୃତ, ନୂତନ ଦୁନିଆ ଏବେ ବି ଅନାଗତ । ଆମେ ପୁରାତନ ଦୁନିଆର ସ୍ୱପ୍ନ-ସୌନ୍ଦର୍ଯ୍ୟ, ଆଶା-ଆକାଂକ୍ଷା ଆଦି ସବୁ ଭୁଲି ସାରିଛୁ ସିନା, ହେଲେ ନୂତନ ଦୁନିଆ-ସ୍ୱପ୍ନର ବାସ୍ତବତା କାହିଁ ? ତା'ର ସୌନ୍ଦର୍ଯ୍ୟ ଉପଭୋଗର ଉପାଦାନ କେଉଁଠି ? ଅବା ଆଶାଆକାଂକ୍ଷା ଚରିତାର୍ଥ କରିବାର ସୁଯୋଗ ମଧ୍ୟ କାହିଁ ? ନୂତନ ସ୍ୱପ୍ନକୁ ଆମରି ଅନିଶ୍ଚିତ ଯାତ୍ରା ପଥରେ ପାଥେୟ କରି କେବଳ ମାତ୍ର ପୁରାତନର କବର ଉପରେ ଆମେ ଛିଡ଼ା ହୋଇଛେ । ପୁରାତନ ମୂଲ୍ୟବୋଧକୁ ବିସର୍ଜନ ଦେଇଛୁ, କିନ୍ତୁ ନୂତନ ମୂଲ୍ୟବୋଧକୁ ପୂର୍ଣ୍ଣ ମାତ୍ରାରେ ସ୍ୱାଗତ କରିପାରିନାହୁଁ । ଫଳତଃ, ଏହି ଶୂନ୍ୟତାରୁହିଁ ଜନ୍ମ ନେଉଛି ଏକ ନୂତନ ଜୀବନ । ଏହି ନୂତନ ଜୀବନରୁ ହୁଏତ ଆଜିର କବିତା ସୃଷ୍ଟି ପାଇଁ ଉପାଦାନ ମିଳୁଛି ବୋଲି କୁହାଯାଇପାରେ । ଜୀବନ-ଯାତ୍ରାର ପଥ ଯେତେବେଳେ ଅନିଶ୍ଚିତ, ସେତେବେଳେ ସାହିତ୍ୟର ଯାତ୍ରା-ପଥ ସ୍ଥିର ନିଶ୍ଚିତ ହେବା ସମ୍ଭବ ନୁହେଁ ! ପୁଣି ସାହିତ୍ୟ ମୂଲ୍ୟବୋଧ ଦ୍ୱାରା ନିୟନ୍ତ୍ରିତ ହେଉଥିବାରୁ ଆଜିର ସମାଜରେ ସାହିତ୍ୟର ସ୍ଥିତି ନିର୍ଦ୍ଧାରଣ କରିବା ସେତେ ସହଜ ନୁହେଁ । ଆମ ସମାଜର

ବିଭିନ୍ନ ଲୋକଙ୍କ ପାଖରେ ସ୍ୱତନ୍ତ୍ର ମୂଲ୍ୟବୋଧ ଦେଖାଯାଏ । ଆମର ନିଜ ସ୍ୱତନ୍ତ୍ର ମୂଲ୍ୟବୋଧ ରହିଛି । ପ୍ରତ୍ୟେକଙ୍କର ନିଜ ଦର୍ଶନ ରହିଛି । ସଇତାନର ବି ନିଜସ୍ୱ ଦର୍ଶନ ରହିଛି । ସେ ତା'ର ନିଜସ୍ୱ ଦର୍ଶନ ତଥା ସ୍ୱତନ୍ତ୍ର ମୂଲ୍ୟବୋଧ ଉପରେ ନିଜକୁ ପ୍ରତିଷ୍ଠିତ କରି ଗର୍ବ ଅନୁଭବ କରେ । ପ୍ରତ୍ୟେକ ବ୍ୟକ୍ତି ତା'ର ସ୍ୱତନ୍ତ୍ର ମୂଲ୍ୟବୋଧର ମୂଲ୍ୟାଙ୍କନ କରେ । ନିଜର ଦର୍ଶନକୁ କେହି ଭୁଲି ପାରେନା । ପ୍ରତ୍ୟେକ ନିଜର ଦର୍ଶନକୁ ଭିତ୍ତିଭୂମି କରି ଆପଣା ପାଇଁ ପରିବେଶ ପ୍ରତିଷ୍ଠା କରନ୍ତି । ଏକ ସ୍ଥାୟୀ-ସୁଦୃଢ଼ ପରିବେଶ ସୃଷ୍ଟି କରିବା ପାଇଁ ଚେଷ୍ଟା କରାଯାଏ । ଏହି ଉଦ୍ୟମ ଯେପରି ଆଜିର ମଣିଷକୁ ପାଗଳ କରିଛି, ସେହିପରି ମଧ୍ୟ ଉଦ୍ୟମୀ ମଣିଷକୁ ନୂତନ ଦୁନିଆରେ ସଂଗ୍ରାମୀ କରି ଠିଆ କରିବାରେ ସାହାଯ୍ୟ କରିଛି । ମାତ୍ର ଏପର୍ଯ୍ୟନ୍ତ ସୁସ୍ଥ-ନୂତନ ମୂଲ୍ୟବୋଧ ଉପସ୍ଥିତ ହୋଇନାହିଁ, ଯାହା ଫଳରେ ଆମେ ଅନ୍ଧାରରେ ଅଣ୍ଡାଳ ହେବା ସାର ହୋଇଛି । ଅନ୍ଧାରରେ ବାଡ଼ି ବୁଲାଇବାହିଁ ଆମ ଜୀବନର ପ୍ରଧାନ କାର୍ଯ୍ୟ ମନେ ହେଉଛି । ପୁଣି ଏହି ବାଡ଼ିକୁ କିଏ କେତେ ପ୍ରକାରରେ ବୁଲାଉଛି, ସେସବୁର କିଛି ନିର୍ଦ୍ଦିଷ୍ଟତା ନାହିଁ ! ଏଇଥିପାଇଁ କବିତା କ୍ଷେତ୍ରରେ ଏତେ ପ୍ରକାରର ପରୀକ୍ଷା ନିରୀକ୍ଷା ଦେଖା ଯାଉଛି ବୋଲି କୁହାଯାଇ ପାରେ ।

ଆଜି କବି ଆଗରେ ଏକ ନିର୍ଦ୍ଦିଷ୍ଟ ପଥ ନାହିଁ । ଭାବନା ତାର ସ୍ଥିର ନିଶ୍ଚିତ ଏବଂ ନିର୍ଦ୍ଦିଷ୍ଟ ନୁହେଁ । ତେଣୁ ଅସ୍ଥିରତା, ଅନିଶ୍ଚିତତା ତଥା ଅନିର୍ଦ୍ଦିଷ୍ଟତାର ବଶବର୍ତ୍ତୀ ହୋଇ କବିତା ଲେଖିବାହିଁ କବିର ଶେଷ ପନ୍ଥା ହୋଇଛି । ଏହା ହେବା ବି ସ୍ୱାଭାବିକ । ତା' ଆଗରେ କେଉଁ ଦିଗ ରହିଛି, ସେ ବୋଧହୁଏ ଜାଣେନା । ପୁରାତନକୁ ଆଜିର କବି ବିସର୍ଜନ ଦେଇଛି—ନୂତନକୁ ସ୍ୱାଗତ କରିପାରି ନାହିଁ । ଏହି ଅନିଶ୍ଚିତତା ତଥା ଅସ୍ଥିରତା ଏଇଥି ପାଇଁ ଆସୁଛି । ସାହିତ୍ୟ କେଉଁ ଆଶ୍ରାରେ ପରିପୁଷ୍ଟ ହେବ, ଆଜି ତାର ନିର୍ଦ୍ଦିଷ୍ଟ ପଥ ନାହିଁ । ପଥ ତା'ର ରୁଦ୍ଧ ହୋଇଯାଇଛି । ଏ କ୍ଷେତ୍ରରେ କବି ଯେଉଁ କବିତା ସୃଷ୍ଟି କରୁଛି, ତା' ଗଣର ନ ହୋଇ ଜଣର ହେବା କିଛି ବିଚିତ୍ର ନୁହେଁ ।

ବର୍ତ୍ତମାନ ଯୁଗର ମୁଖ୍ୟ ସମସ୍ୟା ହେଉଛି, ମଣିଷ ମନରେ ପରସ୍ପରବିରୋଧୀ କାମନାର ଉଦ୍ରେକ । ଆଜି ମଣିଷ ମନ ଭିତରେ ନିର୍ଦ୍ଦିଷ୍ଟ କାମନା ଜାଗି ଉଠୁ ନାହିଁ, ଯାହା ଫଳରେ ତା' ଚିନ୍ତାରେ ସ୍ଥିରତା ଆସୁନାହିଁ—ଭାବନାର

ସାମଞ୍ଜସ୍ୟ ରହୁ ନାହିଁ । ଉଦାହରଣ ସ୍ୱରୂପ—ଜଣେ ସ୍ୱାମୀ ଆଜି ତା' ସ୍ତ୍ରୀକୁ ଚାହେଁ ଶର୍ମିଳା ଠାଗୁର ବା ବୈଜୟନ୍ତୀମାଳା ରୂପରେ ଦେଖିବା ପାଇଁ ଏବଂ ଏକ ସମୟରେ ମଧ୍ୟ ସେ ଚାହେଁ ତା' ସ୍ତ୍ରୀକୁ ସୀତା, ସାବିତ୍ରୀ ରୂପରେ ଦେଖିବା ପାଇଁ । ଦ୍ୱିତୀୟତଃ, ଆଜି ସହରର କୋଳାହଳ ଠାରୁ ମୁକ୍ତ ରହି ଘର ନିର୍ମାଣ କରି ରହିବା କାମନା ବେଶ୍ ମଣିଷ ମନକୁ ଛୁଇଁଛି ଏବଂ ସେହି ମୁହୂର୍ତ୍ତରେ ସେ ଘରକୁ ଏୟାର କଣ୍ଡିସନଡ଼ କରିବାର ଲୋଭ ସମ୍ବରଣ ମଧ୍ୟ ସେ କରି ପାରୁନି । ଏହିପରି ବିଭିନ୍ନ ଉଦାହରଣ ଏହି ପ୍ରସଙ୍ଗରେ ଦିଆଯାଇ ପାରେ । ମଣିଷକୁ ବାସ୍ତବରେ ପ୍ରତିଷ୍ଠିତ ହେବାକୁ ହେଲେ ଏକ ନିର୍ଦ୍ଦିଷ୍ଟ କାମନାକୁ ଚରିତାର୍ଥ କରିବା ପାଇଁ ହୋଇଥାଏ । ମାତ୍ର ଏକଥା ଆଜିର ମଣିଷ ଭୁଲି ଯାଇଛି । ଗୋଟିଏ କାମନାକୁ ଛାଡ଼ି ସେ ଆଉ ଗୋଟିଏ କାମନାକୁ ଧରି ପାରୁନାହିଁ । ଫଳରେ କୌଣସି କାମନା ତା'ର ଫଳପ୍ରସୂ ହୋଇ ପାରୁନି । ମୋଟ ଉପରେ କୁହାଯାଇ ପାରେ ଯେ, ମଣିଷ ଆଜି ପରସ୍ପରବିରୋଧୀ ବସ୍ତୁକୁ ଚାହୁଁଛି । ଜୀବନ ତା'ର ହୋଇ ପଡ଼ୁଛି ଦୁର୍ବହ ଏବଂ ଦ୍ୱନ୍ଦ୍ୱମୟ । ବ୍ୟକ୍ତିଗତ ଜୀବନରେ ଯେଉଁ ହତାଶା, ପରାଜୟ ଓ ନୈରାଶ୍ୟ ମୁଣ୍ଡ ଟେକି ଉଠୁଛି, ସେ ସବୁକୁ ସାମୂହିକ ଦୃଷ୍ଟି କୋଣରୁ ନ ଦେଖି ବ୍ୟକ୍ତିକୈନ୍ଦ୍ରିକ କରିବା ହେତୁ କବି ପାଠକକୁ ଅସୁବିଧାର ସମ୍ମୁଖୀନ ହେବାର ଉପାଦାନ ଯୋଗାଇ ଦେଉଛି । ଯେତେବେଳେ କବି ତା' ଜୀବନରେ ପରସ୍ପରବିରୋଧୀ କଥା ଭାବେ ଏବଂ ତାକୁ କବିତାରେ ରୂପ ଦିଏ, ସେତେବେଳେ ମଧ୍ୟ ତା' କବିତା ନିରାଶା, ହତାଶା ଓ ବ୍ୟର୍ଥତା ଆଦି ସ୍ୱରରେ ପରିପୂର୍ଣ୍ଣ ହୋଇଥିବାର ଦେଖାଯାଏ । ଏହି ପରସ୍ପରବିରୋଧୀ କାମନା ଆସିବାର କାରଣ ହେଉଛି, ଆଜିର ମଣିଷ ସଂଘର୍ଷ ଶିଖିଛି । ସେ ବିପ୍ଳବରେ ଧୁରନ୍ଧର, ମାତ୍ର ସେ ଆପଣାକୁ ଆତ୍ମସ୍ୱାଧୀନ କରିବା ବିରୁଦ୍ଧରେ ବିପ୍ଳବ କରିବାକୁ ଅକ୍ଷମ । ଯେ ପର୍ଯ୍ୟନ୍ତ ସେ ନିଜକୁ ଆତ୍ମସ୍ୱାଧୀନ ନ କରିଛି, ସେପର୍ଯ୍ୟନ୍ତ ଏହିପରି ବିରୋଧୀ କାମନା ଦେଖାଯାଉଥିବ ଏବଂ ବ୍ୟର୍ଥତା ଆସୁଥିବ । ଆଜିର ଓଡ଼ିଆ କବିତାରେ ବେଶି ମାତ୍ରାରେ ଏହି ବ୍ୟର୍ଥତାର ସ୍ୱର ଦେଖାଯିବାର ଏହି ହେଉଛି ପ୍ରଧାନ କାରଣ ।

ମନୋବିଜ୍ଞାନ ଆଡ଼କୁ ଦୃଷ୍ଟି ଫେରାଇ ବିଚାରକଲେ ଦେଖାଯାଏ ଯେ, ଆଧୁନିକ ସାହିତ୍ୟ ଉପରେ ବିଶେଷ ପ୍ରଭାବ ବିସ୍ତାର କରିଛି ଆଧୁନିକ ମନୋବିଜ୍ଞାନ । ବ୍ୟକ୍ତି ସ୍ୱାଧୀନତା ଆମର ଅଛି—ଏହା ପୁଣି ସ୍ୱତନ୍ତ୍ର ସତ୍ତା ମଧ୍ୟରେ ଆବଦ୍ଧ । ଆତ୍ମାକୁ ଆମେ କେଉଁ କାଳରୁ ପବିତ୍ର ବୋଲି ଭାବି ଆସୁଛୁଁ । ଧୂଳିରେ

ଆମର ଆତ୍ମା । ମର ଆଉ ସସୀମ ଶରୀର ଭିତରେ ଅସୀମ ପରମାତ୍ମାର ସତ୍ତା ବିଦ୍ୟମାନ । ଯୁଗେ ଯୁଗେ ମଣିଷ ଭିତରେ ଦେବତ୍ୱର ପ୍ରକାଶ ବା ସନ୍ଧାନ ସାହିତ୍ୟ ଦେଇଆସିଛି । ଏହିଠାରେ ସାହିତ୍ୟର ଚିରନ୍ତନ ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦିଆଯାଏ । ମନୋବିଜ୍ଞାନ ଦୃଷ୍ଟିରେ ମଣିଷ ଦେବତୁଲ୍ୟ ନୁହେଁ । ମଣିଷ ଭିତରେ ଦେବତ୍ୱର ସନ୍ଧାନ ମିଳେନା । ମଣିଷ ବର୍ବର, ଅଭଦ୍ର ଏବଂ ଅସଭ୍ୟ । ମାତ୍ର ତା'ର ସେହି ଅସଭ୍ୟ ନଗ୍ନ ରୂପକୁ ଢାଙ୍କିବା ପାଇଁ ସେ ସଭ୍ୟତାର ପୋଷାକ ବ୍ୟବହାର କରେ । ମଣିଷ ଭିତରେ ସର୍ବଦା ସୁପ୍ତ ପଶୁ ଲୁଚି ରହିଛି । ସୁବିଧା ଦେଖି ସେହି ସୁପ୍ତ ପଶୁ ଜାଗ୍ରତ ହୋଇ ଉଠୁଛି ଏବଂ ତାର ସ୍ୱରୂପରେ ସେ ମଧ୍ୟ ଅଭିନୟ କରି ଯାଉଛି । ଆଜି ମଣିଷର ଏହି ଛଳନା—ଅଭିନୟରୁ ଯେଉଁ ଜୀବନର ସୂଚନା ମିଳୁଛି, କବିତାହିଁ ତା'ର ପ୍ରତିନିଧିତ୍ୱ କରୁଛି ।

ଆଜି ମାନବର ବ୍ୟକ୍ତିତ୍ୱ ହୋଇପଡ଼ୁଛି ଖଣ୍ଡିତ । ଗୋଟିଏ କାର୍ଯ୍ୟ କରିବାକୁ ଯିବା ପୂର୍ବରୁ ଆମକୁ ଅନେକ ଭାବିବାକୁ ପଡ଼େ । ଆଜି ଆମର ଜୀବନ ମଧ୍ୟ ପୂର୍ଣ୍ଣାଙ୍ଗ ନୁହେଁ । ତାହା ଖଣ୍ଡିତ । ତେଣୁ ସେହି ଖଣ୍ଡିତ ଜୀବନକୁ ନେଇ କବି ଯେତେବେଳେ କବିତା ଲେଖେ, ସେତେବେଳେ "Modern poetry does not make any complete sense" ଯୁକ୍ତି ଧରିବାକୁ ହୁଏ । ସମ୍ପୂର୍ଣ୍ଣ ଅର୍ଥ ପ୍ରକାଶପାଇ ପାରେନା । ଅର୍ଥ ତାହାର ଖଣ୍ଡିତ । କାରଣ ଆଜିର ଜୀବନରେ ମୂଲ୍ୟବୋଧ ନାହିଁ । ଜୀବନ ହେଉଛି ମୂଲ୍ୟହୀନ । ଜୀବନ ଆଜି ଅର୍ଥଶୂନ୍ୟ । ସେ ପରିସ୍ଥିତିରେ କବି ତା'ର କବିତାରେ ପୂର୍ଣ୍ଣାଙ୍ଗ ଅର୍ଥ ରଖି ଲେଖିବ ବା କପରି ? ଏହା ହେବା ବି ସ୍ୱାଭାବିକ !

ଫ୍ରୟେଡ଼ଙ୍କ ଭାଷାରେ, "An artist is a social misfit" । ସମାଜରେ ସେ ମିଶି ପାରେ ନାହିଁ । ସମାଜ ଠାରୁ ଦୂରେଇ ରହିବା ତା'ର ଧର୍ମ । ତାହାକୁ ସମାଜର ଗୃହାଚଳନ, ଶିଷ୍ଟାଚାର ତଥା ପର୍ବପର୍ବାଣୀ ଆଦି ଭଲ ଲଗେ ନାହିଁ । ଯିଏ ତା'ର ଜୀବନସତ୍ତା ସମାଜ ମଧ୍ୟରୁ ଉପଲବ୍ଧି କରିବାକୁ ଅକ୍ଷମ—ସମାଜ ଭିତରେ ନିଜକୁ ଖାପଖୁଆଇ ପାରେନା, ସେ ବ୍ୟକ୍ତି ସମାଜରେ ନ ରହି ସମାଜ ଠାରୁ ଦୂରେଇ ଯାଇ ଯଦି ସାହିତ୍ୟ ସୃଷ୍ଟି କରେ, ସେ କି ସାହିତ୍ୟ ସୃଷ୍ଟି କରିବ ? ଯିଏ ସାହିତ୍ୟକୁ ନେଇ ବଞ୍ଚି ନ ପାରେ, ସାହିତ୍ୟକୁ ଆପଣାର ବୋଲି ଭାବିବାକୁ କୁଣ୍ଠାବୋଧ କରେ, ଏବଂ ଯେଉଁ

ଶିଳ୍ପୀ ସମାଜଠାରୁ ଦୂରରେ, ତା'ର ଜୀବନ ପ୍ରତି ସ୍ନେହ, ଶ୍ରଦ୍ଧା ରହେ କି ? ଜୀବନ ପ୍ରତି ସ୍ନେହ ଶ୍ରଦ୍ଧା ରହିବାକୁ ହେଲେ ସମାଜ ଓ ସାହିତ୍ୟକୁ ନେଇ ସ୍ରଷ୍ଟାକୁ ବଞ୍ଚିବା ପାଇଁ ପଡ଼ିବ । ଏହା କାହାର ମନଗଢ଼ା କଥା ନୁହେଁ । ଏହା ନିର୍ଘଣ୍ଟ ବାସ୍ତବ ସତ୍ୟ । ଏହି ଶ୍ରେଣୀସ୍ଥ କବି ଯେଉଁ କବିତା ରଚନା କରିବ, ତାହା ହେବ ସରଳ, ପ୍ରାଞ୍ଜଳ ଏବଂ ହୃଦୟସ୍ପର୍ଶୀ ସୃଷ୍ଟି ।

ପୂର୍ବ ଜୀବନର ଲକ୍ଷ୍ୟ ଓ ଆଜି ଜୀବନର ଲକ୍ଷ୍ୟ ଭିତରେ ତଫାତ୍ ଦୃଷ୍ଟି ଗୋଚର ହୁଏ । ଜୀବନର ଲକ୍ଷ୍ୟ ପୂର୍ବରୁ ଥିଲା ସୁନିର୍ଦ୍ଦିଷ୍ଟ । ତେଣୁ ଜୀବନର ସେହି ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ମଣିଷ ଅଗ୍ରସର ହେଉଥିଲା ଏବଂ ସେହି ଲକ୍ଷ୍ୟ ପୂରଣ ପାଇଁ ସେ ଜୀବନକୁ ପ୍ରତିଷ୍ଠିତ କରୁଥିଲା । ମାତ୍ର ବର୍ତ୍ତମାନ ଆମେ ହୋଇଛନ୍ତି ଲକ୍ଷ୍ୟହୀନ—ଆମେ ହରାଇଛନ୍ତି ଜୀବନର ସଂହତି । ଆମର ବଞ୍ଚିବାର କାରଣ କଣ ? ଆମେ କାହିଁକି ବଞ୍ଚିବା ? ଏପର୍ଯ୍ୟନ୍ତ ଏହାର ଉତ୍ତର ଜାଣି ନାହାନ୍ତି ଏବଂ ଜାଣିବାର ପରିବେଶ ମଧ୍ୟ ସନ୍ଧାନ କରିନ ଥିଲା ପରି ମନେ ହୁଏ । ତେଣୁ ଆମେ ଆଜି କେଉଁଠି ? ଏ ପ୍ରଶ୍ନ ସ୍ୱତଃ ମନ ଭିତରେ ଆସିବା କଥା । ଆମ ଜୀବନର ମାନଦଣ୍ଡ କଣ ? ଜୀବନର ସ୍ଥିତି କେଉଁଠି ? ଏ ସଂପର୍କରେ କବି ଯେତେବେଳେ ସଚେତନ ନୁହେଁ, ସେ କାହାକୁ ନେଇ କବିତା ଲେଖିବ ? କଣ ହେବ ତା'ର କବିତାର ଉପାଦାନ ?

ଉତ୍କଳଙ୍କ ସାହିତ୍ୟ ଜୀବନ ପ୍ରତି ଗଭୀର ଶ୍ରଦ୍ଧା ଏବଂ ପ୍ରେମରୁ ସୃଷ୍ଟ । ଯେମିତି ଉତ୍କଳଙ୍କ ସାହିତ୍ୟ ରଚିତ ହେଉଛି ସବୁର ମୂଳରେ ରହିଛି ଜୀବନ ପ୍ରତି ଗଭୀର ଶ୍ରଦ୍ଧା ଓ ପ୍ରେମ । ମାତ୍ର ଆଜି ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ଆମର ସଂପୂର୍ଣ୍ଣ ବଦଳି ଯାଇଛି । ଜୀବନକୁ ଶ୍ରଦ୍ଧା କରିବା ପରିବର୍ତ୍ତେ ଆମେ ଅଶ୍ରଦ୍ଧା କରୁଛୁ । ଆଜି ସ୍ନେହ-ପ୍ରେମ ଜୀବନ ପାଇଁ ହଜିଯାଇଛି । ଫଳରେ ମଣିଷ ଜୀବନ ପ୍ରତି ଦେଖା ଦେଇଛି ବିଦ୍ୱେଷ, ଅଶ୍ରଦ୍ଧା ଏବଂ ଘୃଣା । ଏ କ୍ଷେତ୍ରରେ କବି କେଉଁ ଉପାଦାନ ନେଇ କବିତା ସୃଷ୍ଟି କରିବ ? ଜୀବନ ପ୍ରତି ଦୃଷ୍ଟିକୋଣ ଆମର ଯାହା, ଜୀବନକୁ ପରିଚାଳିତ କରିବାର ଲକ୍ଷ୍ୟ ଯେପରି, କବିତାରେ ତାହାହିଁ ରୂପ ପାଉଛି । ସାମୂହିକ ଭାବରେ ଆମେ ବ୍ୟକ୍ତିକୁ ଅବିଶ୍ୱାସ ଓ ଅଶ୍ରଦ୍ଧା କରୁଛୁ । ଆଜି ମଣିଷ ମଣିଷ ଭିତରେ ନାହିଁ ବିଶ୍ୱାସ, ନାହିଁ ଶ୍ରଦ୍ଧା । ମଣିଷ ମଣିଷକୁ ଅବିଶ୍ୱାସ କରି ଛକାପଂଝା ଭିତରେ ଯାତ୍ରା କରୁଛି । ଏ କ୍ଷେତ୍ରରେ କବି ଆଉ କୁଆଡ଼େ ଯିବ ? ସମାଜକୁ ନେଇ ସେ ଯେତେବେଳେ ବଞ୍ଚିବ ଓ ପାରିପାର୍ଶ୍ୱିକ

ପରିବେଶକୁ ନେଇ କବିତା ରଚନା କରିବ, ସେତେବେଳେ କବିତା ଦୁର୍ବୋଧ ହେବନିଁ ହେବ । ଏପାଇଁ କବିଙ୍କୁ ମଧ୍ୟ ଦୋଷ ଦିଆଯାଇ ନପାରେ । ଆଜି କବିତାର ଦୁର୍ବୋଧତା ପାଇଁ ଆମ ସମାଜର ଦୃଷ୍ଟିକୋଣ, ଲକ୍ଷ୍ୟ, ନୀତିନିଁ ସଂପୂର୍ଣ୍ଣ ମାତ୍ରାରେ ଦାୟୀ ।

ଦୁଇଟି ପୃଥିବୀ ଯୁଦ୍ଧ କେବଳ ସାମାଜିକ ଦୃଷ୍ଟିକୋଣରେ ପରିବର୍ତ୍ତନ ଆଣିଲା ବା ଆର୍ଥନୀତିକ, ରାଜନୀତିକ କ୍ଷେତ୍ରରେ ଅଦଳ ବଦଳ କଲା ତାହା ନୁହେଁ, ଏହାର ପ୍ରଭାବ ମଧ୍ୟ ସାହିତ୍ୟ କ୍ଷେତ୍ରରେ ପଡ଼ିଲା । ସ୍ୱଭାବତଃ, କବିତାର ଗତି-ପଥ ବଦଳାଇଦେଲା । ଏହି ପୃଥିବୀ ଯୁଦ୍ଧ ପୂର୍ବରୁ କବିତା ଯେପରି ଭାବରେ ଲେଖା ହେଉଥିଲା ବା କବି ଯେପରି ରୂପରେ କବିତାକୁ ଦେଖୁଥିଲେ, ତାହା ସେପରି ହୋଇ ଆଉ ରହିଲା ନାହିଁ । ତାହାର ଶୈଳୀ, ଆଙ୍ଗିକ ଏବଂ ଗତିରେ ପରିବର୍ତ୍ତନ ଆସିଲା । ମହାସମର ପୂର୍ବରୁ ସାଧାରଣତଃ ରୋମାଣ୍ଟିକ ଚିନ୍ତାଧାରା ଥିଲା । ମାତ୍ର ମହାସମର ପରେ ପାର୍ଥିବ ଦୁଃଖ ଦେଖାଦେଲା-ସାହିତ୍ୟରେ ସଙ୍କଟ ସୃଷ୍ଟି କଲା । ଆଶା ଆକାଙ୍କ୍ଷା ଧ୍ୱଂସ ହେଲା । ପରସ୍ପର ପ୍ରତି ବିଦ୍ୱେଷ ଦେଖାଦେଲା । ସ୍ନେହ-ଶ୍ରଦ୍ଧା ନଷ୍ଟ ହେଲା । ପୁରାତନ ବିଶ୍ୱାସକୁ ମଣିଷ ଯେତେବେଳେ ତ୍ୟାଗକରି ବସିଲା, ସେତେବେଳେ ସେ ତା'ର ଆଶା ଆକାଙ୍କ୍ଷା ସବୁ କିଛି ତ୍ୟାଗ କରିବାକୁ ବାଧ୍ୟ ହେଲା । ପରିତ୍ୟାଗ ସିନା କରିଦେଲା, ମାତ୍ର ତାହା ପରିବର୍ତ୍ତେ ସେ କାହାକୁ ଗ୍ରହଣ କରିବ ? ସବୁ-କ୍ଷେତ୍ରରେ ମଧ୍ୟ ପରିତ୍ୟାଗ ସହଜ; ମାତ୍ର ଗ୍ରହଣ ସେହି ପରିମାଣରେ କଷ୍ଟସାଧ୍ୟ । ଧ୍ୱଂସର ଉପାୟ ସୃଷ୍ଟି ମୁହୂର୍ତ୍ତରେ, ମାତ୍ର ସୃଷ୍ଟିର ଉପାୟ ଆବିଷ୍କାର କେତେ ଅଜସ୍ର ବର୍ଷରେ ସମ୍ଭବ ହୁଏ, ତାକୁ କଳନା କରିବ କିଏ ? ପ୍ରଚଳିତ ପ୍ରକାଶ-ଭଙ୍ଗୀ କବିମାନେ କବିତାରେ ପରିତ୍ୟାଗ କରିଦେଲେ । ମାତ୍ର ଆଉ ଗୋଟିଏ ଅନ୍ୟ ପ୍ରକାଶଭଙ୍ଗୀ ଆଧୁନିକ ଜଟିଳ କବିମାନସକୁ ପରିପ୍ରକାଶ ପାଇଁ ମିଳିଲା ନାହିଁ । ଏକ ସୁସ୍ଥ ପ୍ରକାଶଭଙ୍ଗୀ କବିତା କ୍ଷେତ୍ରରେ ନିହାତି ଆବଶ୍ୟକ । ଏ ପ୍ରକାର ପ୍ରକାଶଭଙ୍ଗୀ କବିଙ୍କୁ ମିଳିଲା ନାହିଁ । ଖୋଜି ପାଇବା ମଧ୍ୟ ତା'ପକ୍ଷରେ ସହଜ ହେଲା ନାହିଁ । ଫଳରେ କବି ତା'ର ଜଟିଳ ମାନସକୁ ପ୍ରକାଶ କରିବା ପାଇଁ ଯେଉଁ ଉପାୟ ଅବଲମ୍ବନ କରିବସିଲା, ତାହା ପାଠକର ବୁଝିବା ଲାଗି ସରଳ ହେଲା ନାହିଁ । ଏହି ପ୍ରକାଶଭଙ୍ଗୀର ଜଟିଳତା ପାଇଁ ଆଜିର କବିତା ଦୁର୍ବୋଧ୍ୟ କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ ।

 

ଏସବୁ ସତ୍ତ୍ୱେ, ସବୁ ସାଂପ୍ରତିକ କବିତା ଯେ ଦୁର୍ବୋଧ୍ୟ, ଏହା ବି କୁହା ଯାଇ ପାରିବ ନାହିଁ । ବହୁ ସାଂପ୍ରତିକ କବି ଅଛନ୍ତି, ଯେଉଁମାନେ ଯୁଗସଚେତନ ରହି ସେମାନଙ୍କ ସୃଷ୍ଟି ବିନ୍ଦୁରେ ଆପଣାକୁ ପ୍ରତିଷ୍ଠିତ କରି ପାରିଛନ୍ତି । ସେମାନଙ୍କ ଠାରେ ଚିନ୍ତା ଓ ଚେତନାର ସମନ୍ୱୟ ଦେଖାଯାଇଛି । ଫଳରେ ବହୁ ଅସ୍ୱାଭାବିକ ପରିବେଶ ଭିତରୁ ସେମାନେ ସ୍ୱାଭାବିକତାକୁ ଖୋଜି ପାଇଛନ୍ତି । ସେ ଶ୍ରେଣୀର କବିଙ୍କ ଚିନ୍ତାଧାରା ବ୍ୟକ୍ତିକେନ୍ଦ୍ରିକ ନ ହୋଇ ଜନଚେତନା ସହ ସଂପର୍କ ସ୍ଥାପନ କରିପାରିଛି । ସାଂପ୍ରତିକ କବିତାରେ ବ୍ୟକ୍ତିକେନ୍ଦ୍ରିକତା ଆସି ଯାଇଛି । ଏ ସଂପର୍କରେ ଅନେକ ବିରୁଦ୍ଧ ମତ ମଧ୍ୟ ପୋଷଣ କରୁଛନ୍ତି । ମାତ୍ର କବିର ଏହି ବ୍ୟକ୍ତିଗତ ସ୍ୱର ଭିତରେ ଯଦି ସାର୍ବଜନୀନତାର ସ୍ପର୍ଶ ଆସି ପାରିଲା, ତେବେ କବିତାର ବ୍ୟକ୍ତିକେନ୍ଦ୍ରିକତା ପାଇଁ ଚିନ୍ତିତ ହେବା ଉଚିତ ନୁହେଁ । କବି ଯଦି ବ୍ୟକ୍ତିଗତ ଚିନ୍ତା ଭିତରେ ସମୂହକୁ ଛୁଇଁ ନ ପାରିଲା, ସାମଗ୍ରିକ ଭାବରେ ସକଳ ଚିତ୍ର ତା' କବିତାରେ ଫୁଟି ପାରିଲା, ତେବେ ସେଠି ଆଉ କବି ବ୍ୟକ୍ତିକେନ୍ଦ୍ରିକ ହୋଇ ରହେ ନାହିଁ, ଯେତେ ବ୍ୟକ୍ତିଗତ କଥା କହିଥିଲେ ମଧ୍ୟ । ସେତେବେଳେ କବି ଆପଣାକୁ ନେଇ ବିଶ୍ୱକୁ ପ୍ରକାଶ କରେ—ବିଶ୍ୱ ଭିତରେ ସେ ଆପଣାର ସତ୍ତାକୁ ଖୋଜିପାଏ । ଏହା କେବଳ ମାତ୍ର ଅସାଧାରଣ ପ୍ରତିଭାବାନ୍ କବିଙ୍କ ପକ୍ଷେ ସମ୍ଭବ ହୁଏ । ଏ କ୍ଷେତ୍ରରେ ସେମାନଙ୍କର ଏକନିଷ୍ଠ ସାଧନା, ଜୀବନ ପ୍ରତି ସୂକ୍ଷ୍ମ ଦୃଷ୍ଟିକୋଣ ଓ ବାସ୍ତବ ଅନୁଭୂତି ସେମାନଙ୍କୁ ବିଶ୍ୱର ପ୍ରତିନିଧିତ୍ୱ କରିବା ପାଇଁ ଯଥେଷ୍ଟ ସାହାଯ୍ୟ କରେ । ପୁଣି କୁହାଯାଇ ପାରେ ଯେ, କବି ଆପଣା ସ୍ୱରକୁ ଅନ୍ୟର ସ୍ୱର ପାଇଁ ପ୍ରତିନିଧିତ୍ୱ କରି ଠିଆ ହେବା ସ୍ୱାଭାବିକ । ଫଳରେ କବିର ହସ, ଅଶ୍ରୁ, ବିଫଳତା ଓ ସଫଳତା ସହ ନିଜକୁ ପାଠକ ମିଶାଇ ଦେଇ ପଡ଼ିପାରେ । ଏଇଠି ଫୁଟିଉଠେ, କବିତାର ବାସ୍ତବ ଜୀବନାଲେଖ୍ୟ । କବିତା ଏଠି ସଜୀବ ହୋଇଉଠେ ।

ଆଜିର କବି ଯୁକ୍ତି ବାଢ଼େ, ସେ ଇଙ୍ଗିତଧର୍ମୀ । ଇଙ୍ଗିତ ମାଧ୍ୟମରେ ସେ ତା'ର ସକଳ ଅନୁଭୂତିକୁ କବିତାରେ ପ୍ରକାଶ କରିବା ପାଇଁ ବେଶ୍ ଭଲ ମନେ କରେ । ଆଜି ଯୁଗରେ କବିତା ଯେ ଏପରି ରୂପ ନେଲା, ତାହା ନୁହେଁ । ସବୁଯୁଗରେ କବିତାର ରୂପରେଖ ଏପରି ଥିଲା । ଅବଶ୍ୟ କୁହାଯାଇ ପାରେ, ଆଜିର କବିତା ବେଶି ମାତ୍ରାରେ ଇଙ୍ଗିତଧର୍ମୀ । ଆଜିର କବି ବିନ୍ଦୁ ଭିତରେ ସିନ୍ଧୁର ସନ୍ଧାନ ପାଇଁ ବ୍ୟଗ୍ର ହୋଇଉଠିଛି । ଏହି ବ୍ୟଗ୍ରତା ହିଁ

କବିକୁ ଦେଇଛନ୍ତି ଅନେକ ଉପାଦାନ, ଯାହାର ସହାୟତାରେ ସେ ତା'ର ପଥ ନିର୍ଣ୍ଣୟ କରିପାରନ୍ତି । ସବୁ ଯୁଗରେ କବି ପ୍ରତୀକର ଆଶ୍ରା ନେଇଛନ୍ତି । ଏହି ପ୍ରତୀକ ହେଉଛି କବିର ଭାଷାକୁ ପ୍ରକାଶ କରିବା ପାଇଁ ଏକ ମାଧ୍ୟମ । ଆମକୁ ସ୍ୱୀକାର କରିବାକୁ ପଡ଼ିବ ଯେ, ପ୍ରତୀକ ପ୍ରୟୋଗ କରିପାଏ, କବି ଆଉ ପାଠକ ଭିତରେ ଏକ ସଂଯୋଗ ସ୍ଥାପନ କରିବା ପାଇଁ । କବିର ଏକ ନିର୍ଦ୍ଦିଷ୍ଟ ଭିତ୍ତି ଭୂମିକୁ ପଥ ନିର୍ଦ୍ଦେଶ କରିବା ଦିଗରେ ପାଠକକୁ ଏହି ପ୍ରତୀକ ପ୍ରୟୋଗ ଯଥେଷ୍ଟ ସହାୟତା କରିଥାଏ । ଶିଳ୍ପୀ ପକ୍ଷେ ଶିଳ୍ପ ସୃଷ୍ଟି କରିବା ଯେତିକି କଷ୍ଟସାଧ୍ୟ ନୁହେଁ, ତାହାକୁ ଶିଳ୍ପ ନୈପୁଣ୍ୟ ବା କଳାମଣ୍ଡିତ କରି ବର୍ଣ୍ଣାଢ଼୍ୟ ରୂପ ସମ୍ଭାରରେ ଉପସ୍ଥାପନ କରିବା ତାହାଠାରୁ ଅଧିକ ଆୟାସସାଧ୍ୟ । ଏହା ଦୁରୂହ ବ୍ୟାପାର ହେଲେ ମଧ୍ୟ ଏହାପ୍ରତି ନିଷ୍ଠାପର ଶିଳ୍ପୀ ବେଶ୍ ଅନୁରକ୍ତ । ଆଜିର କବି କଳାକୁ ଉନ୍ନତ ରୁଚିଶୀଳ କରି ଗଢ଼ି ତୋଳିବା ପାଇଁ ବୌଦ୍ଧିକତାକୁ ସହୃଦ ସମ୍ଭାଷଣ ଜଣାଇଛନ୍ତି । ସେପାଇଁ ଆଜିର କବିତା ବୌଦ୍ଧିକତାରୁ ମୁକ୍ତ ନୁହେଁ ଏବଂ ହେବା ମଧ୍ୟ ସମ୍ଭବ ନୁହେଁ ବୋଲି କେତେକ ସାଂପ୍ରତିକ କବି ମତ ଦିଅନ୍ତି । ପ୍ରତୀକକୁ ବାଦ ଦେଇ କବିତାର କଳ୍ପନା କରିବା ସହଜ ନୁହେଁ । ଏହି ପ୍ରତୀକ କବିତା ସହ ଘନିଷ୍ଠଭାବେ ସଂପୃକ୍ତ । ସେପାଇଁ ପ୍ରତୀକ କବିର ଏତେ ପ୍ରିୟଭାଜନ ହୋଇଥାଏ । ତେଣୁ ଯେଉଁଠି କବିର ଭାଷା, ପରିବେଶକୁ ପ୍ରକାଶ କରିବା ପାଇଁ ଅସମର୍ଥ ହୁଏ, କବି ସେତେବେଳେ ସେହି କଳ୍ପନାଶ୍ରିତ ଜଗତର ନେଣ ପାଇଁ ପ୍ରତୀକର ଆଶ୍ରା ନେଇଥାଏ । କବିତାରେ ବ୍ୟବହୃତ ଏହି ବିଭିନ୍ନ ଅର୍ଥବୋଧକ ପ୍ରତୀକକୁ ସହଜରେ ବୁଝି ଯାଇପାରେନା । କାରଣ ପ୍ରତୀକକୁ ବିଶ୍ଲେଷଣ କରିବା ସେତେ ସହଜ ନୁହେଁ ଏବଂ ଏହାକୁ ବୁଝାଇବା ମଧ୍ୟ କୌଣସି କଳାକାର ପକ୍ଷେ ଅସମ୍ଭବ । ତେଣୁ ପ୍ରତୀକ ପ୍ରତି ବୀତସ୍ପୃହ କଳାପ୍ରେମୀଙ୍କ ପକ୍ଷେ ପ୍ରତୀକାତ୍ମକ ରଚନା ଦୁର୍ବୋଧ ବୋଧ ହେବା ସ୍ୱାଭାବିକ ।

କବିମାନେ ସବୁ ଯୁଗରେ ସେହି ସମୟଚେତନାରେ ଉଦ୍‌ବୁଦ୍ଧ ହୋଇ ସେମାନଙ୍କ କାବ୍ୟ କୃତିରେ ପ୍ରତୀକ ପ୍ରୟୋଗର କାରିଗରୀ ଦେଖାଇ ଥାଆନ୍ତି । ଫଳରେ ସେହି ଯୁଗର ସାହିତ୍ୟ ସୃଷ୍ଟି ସମସାମୟିକତାର ସ୍ପନ୍ଦନରେ ସ୍ପନ୍ଦିତ ହେବା ସ୍ୱାଭାବିକ । ଯେଉଁ କବି ପ୍ରତୀକ ପ୍ରୟୋଗରେ ସଫଳ ଶିଳ୍ପୀ, ତାଙ୍କ କବିତା ସେହିପରି ଭାବରେ-ଆର୍ପିକତାର ସ୍ୱାକ୍ଷରରେ ଉଜ୍ଜୀବିତ । ତେଣୁ ପ୍ରତୀକ

ପ୍ରୟୋଗ ପାଇଁ ଯେଉଁ କଠୋର ସାଧନା ଓ ଅଧ୍ୟବସାୟ ଆବଶ୍ୟକ, ସେ ପ୍ରତି ପ୍ରତ୍ୟେକ ଶିଳ୍ପୀ ସତର୍କଦୃଷ୍ଟି ଦେବା ଉଚିତ । ଶିଳ୍ପୀ ପ୍ରତୀକକୁ ଛାଡ଼ି ଶିଳ୍ପ ସୃଷ୍ଟି କରିବା ସମ୍ଭବ ନୁହେଁ ।

ଏଠାରେ ଦାର୍ଶନିକ ଆର୍ନେଷ୍ଟ କାସିରଙ୍କ ଉକ୍ତି ମନେ ପଡ଼େ—"Man lives in a symbolic universe. Language, myth, art and religion are parts of this universe. They are the varied threads which weave the symbolic net." ପ୍ରତୀକ ପ୍ରୟୋଗରେ କବିର ସ୍ୱାତନ୍ତ୍ର୍ୟ ଅଛି । ସେ ତା'ର ମାଧ୍ୟମରେ ନିଜକୁ ପ୍ରକାଶ କରିଏ । ନିଜର ବହୁ ଅବ୍ୟକ୍ତ ଭାଷାକୁ ବ୍ୟକ୍ତ କରେ । ମାତ୍ର ରୂପକଳ୍ପ ବାସ୍ତବତା ବା ପ୍ରତୀକ ପ୍ରୟୋଗ ସ୍ୱାଭାବିକତା ହରାଇ ବସିଲେ କବିତା ବିକୃତ ହେବାର ଯଥେଷ୍ଟ ସମ୍ଭାବନା ଥାଏ । ପୁଣି କବି ପ୍ରତୀକକୁ ଦ୍ୱନ୍ଦ୍ୱମୁଖର କରି କାବ୍ୟ ସୃଷ୍ଟିର ପରିବେଶକୁ ଅଯଥା ଦ୍ୱନ୍ଦ୍ୱରେ ଭାରାକ୍ରାନ୍ତ କଲେ, କବିତାର ବାସ୍ତବତା ଅନେକାଂଶରେ ନଷ୍ଟ ହୋଇଥାଏ । ବଡ଼ ସୁଖର କଥା, ଆମ ସାହିତ୍ୟରେ ଅନେକ ସାଂପ୍ରତିକ କବି ସେମାନଙ୍କ କବିତା ସୃଷ୍ଟି ସମୟରେ ଏ ସବୁ ପ୍ରତି ସଚେତନ ରହି ପାରିଛନ୍ତି । ଫଳରେ ସେମାନଙ୍କ ପ୍ରାଣର ଭାଷା ପାଠକ ପାଖରେ ସ୍ପଷ୍ଟ ହୋଇ ପାରୁଛି । କାବ୍ୟର ଆବେଦନ ଯଦି ସ୍ପଷ୍ଟ, ତେବେ କବି ଆତ୍ମାର ସ୍ୱର ସ୍ପଷ୍ଟ ହୋଇପାରିବ ବୋଲିବା ଅସମୀଚୀନ ନୁହେଁ । ପୁଣି କୁହାଯାଇ ପାରେ ଯେ, ସାଂପ୍ରତିକ କବିତା ପାଇଁ ଚେତନଶୀଳ ପାଠକର ଆବଶ୍ୟକତା ରହିଛି । କାରଣ କବିର ଆତ୍ମସତ୍ତାକୁ ସ୍ପର୍ଶ କରିବା ହିଁ ପାଠକର ମୁଖ୍ୟ କାର୍ଯ୍ୟ । ଏ ପାଇଁ ପାଠକ ବଳିଷ୍ଠ ଭୂମିକା ଗ୍ରହଣ କରିଥାଏ । କବି ଯେଉଁ ସ୍ତରରେ ତା'ର ଆସନ ସ୍ଥାପନ କରିଛି, ସେହି ସ୍ଥାନକୁ ଯିବା ପାଇଁ ପାଠକକୁ ପଥ ସନ୍ଧାନ କରିବାକୁ ପଡ଼େ । ଏହି ଏହି ସନ୍ଧାନରୁ କବିର ସ୍ଥାପିତ ଆସନ ପାଖରେ ସେ ନିଜକୁ ପ୍ରତିଷ୍ଠିତ କରି ନ ପାରିଲେ, କବିତାର ନିର୍ଯ୍ୟାସ ବୁଝିବା ସେତେ ସହଜ ହୁଏ ନାହିଁ । ମନେ ହୁଏ, ଏପାଇଁ ଯେଉଁ ଧୈର୍ଯ୍ୟ ଓ ନିଷ୍ଠା ଆବଶ୍ୟକ, ତାହାର ଅଭାବ ଦେଖା ଯାଉଛି । ସେ ପାଇଁ ସାଂପ୍ରତିକ କବିତା ବିରୁଦ୍ଧରେ ଏତେ ମତବାଦ—ଏତେ ଯୁକ୍ତିତର୍କ ! ମନେ ରଖିବାକୁ ହେବ ଯେ, କବି ଯେପରି କାବ୍ୟସାଧକ, ପାଠକ ସେପରି ପଠନ-ସାଧକ ହେବା ଉଚିତ ।



ସାହିତ୍ୟର ବିଭିନ୍ନ ବିଭାଗ ତୁଳନାରେ କବିତା ହେଉଛି ସୂକ୍ଷ୍ମ କଳା । ଏହି କଳାର ନିକଟତର ହେବା ପାଇଁ ରସଗ୍ରାହୀଙ୍କୁ ସୂକ୍ଷ୍ମାତିସୂକ୍ଷ୍ମ ପଥ ସନ୍ଧାନ କରିବାକୁ ହୁଏ । ଏହି ପଥ ସନ୍ଧାନ କ୍ଷେତ୍ରରେ କେତେ ବି ଅସ୍ୱାଭାବିକ ପରିବେଶ ସୃଷ୍ଟି ହୋଇଥାଏ । ମାତ୍ର ଏସବୁକୁ ଲଂଘନ କରି ଊର୍ଦ୍ଧ୍ୱକୁ ଯିବାର ପ୍ରବଳ ଆଗ୍ରହ ରସଗ୍ରାହୀଙ୍କ ପାଖରେ ଥିବା ଉଚିତ । ଏହି ଊର୍ଦ୍ଧ୍ୱାୟିତ ଜୀବନ ହିଁ କବିମାନସର ରହସ୍ୟାଳୟ ! ଏହି ରହସ୍ୟାଚ୍ଛନ୍ନ ଜଗତ ଯେତିକି ଆପଣାର ସେତିକି ମଧ୍ୟ ଅଭେଦ୍ୟ । ତେଣୁ ଏହି ଜଗତାନନ୍ଦର ସ୍ୱପ୍ନରେ ନିଜକୁ ମିଶାଇ ଦେଇ ପାରିଲେ, ତେବେ ଯାଇ ବାସ୍ତବତାର ଇଙ୍ଗିତ ପାଠକ ପାଇପାରେ । ନଚେତ୍ ଯେତେ ରସପ୍ରେମୀ ହୋଇଥିଲେ ମଧ୍ୟ, କବିତାଗ୍ରାହୀ ହେବା ସମ୍ଭବ ନୁହେଁ । ଏଥିପାଇଁ ଯେଉଁ ଦୁଃସାଧ୍ୟ ସାଧନା ଆବଶ୍ୟକ, ସେହି ସାଧନା-ଯଜ୍ଞରେ ଆପଣାକୁ ନିକ୍ଷେପି ପାରିଲେ, ସେହି ଯଜ୍ଞ କୁଣ୍ଡରୁ ଯେଉଁ ଜୀବନ ସତ୍ତ୍ୱ ମିଳିବ, ତାହା ହିଁ ହେଉଛି କବିତା ବୁଝିବା ପାଇଁ ଉପାଦାନ ! ଏସବୁ ନ କରି କବିତା ପାଇଁ ଯେତେ ମଥା ପିଟିଲେ, କବିତା ବୁଝା ଯାଇ ପାରିବ ନାହିଁ । ତାହା ଦୁର୍ବୋଧ୍ୟ ରହିଯିବ । କେବଳ ଯେ ଆଜି ପାଇଁ ଦୁର୍ବୋଧ୍ୟ ରହିଯିବ ତାହା ନୁହେଁ, ଯେପର୍ଯ୍ୟନ୍ତ ଏହି ମନୋବୃତ୍ତିର ଭିତ୍ତିଭୂମିରୁ ଆପଣା ସ୍ଥିତିକୁ ଦୂରେଇ ନେଇ ଅନ୍ୟ ଏକ ପରିବର୍ତ୍ତିତ ଜିଜ୍ଞାସାବୋଧ ଭୂମିକାରେ ପ୍ରତିଷ୍ଠିତ ନ କରାଯିବ, ସେ ପର୍ଯ୍ୟନ୍ତ ବି କବିତା ଦୁର୍ବୋଧ୍ୟ ରହିବ । ଆଧୁନିକ କବିତା ଏହି ସବୁ ଯୁକ୍ତିର ଅନୁକୂଳରେ ଯେ ତିଷ୍ଠି ରହିଛି, ଏହା ବୋଲିବା ଧୃଷ୍ଟତା ନୁହେଁ ।

ଦିନ ଥିଲା, ସାହିତ୍ୟ ସେତେବେଳେ ଭାଷାପ୍ରଧାନ ଥିଲା । ସେଠି ବୌଦ୍ଧିକତା ଉପରେ ବିଶେଷ ଗୁରୁତ୍ୱ ଦିଆଯାଉ ନ ଥିଲା । ମାତ୍ର ନାନାଦି କାରଣ, ପାରିପାର୍ଶ୍ୱିକ ଅବସ୍ଥା, ସାମାଜିକ ପରିବର୍ତ୍ତନ ଓ ମନୋରାଜ୍ୟରେ ନାନାପ୍ରକାର ଚିନ୍ତାଧାରର ପ୍ରଭାବ ଫଳରେ ସାହିତ୍ୟ ଏବେ ଚିନ୍ତା ପ୍ରଧାନ ହୋଇଛି । ତେଣୁ ଆଜିର ସାହିତ୍ୟକୁ, ବିଶେଷତଃ ଆଜିର କବିତାକୁ ସେହିପରି ନୂତନ ଚିନ୍ତାଧାରରୁ ବିଚାରିବା ଉଚିତ । ବିଶ୍ଳେଷଣାତ୍ମକ ମନୋବୃତ୍ତି ନେଇ କବିତାର ମୂଲ୍ୟାଙ୍କନ ହେବା ଆବଶ୍ୟକ । ଭିନ୍ନ ଦୃଷ୍ଟିକୋଣରୁ ନିଜର ମନୀଷା ବଳରେ କବିତାକୁ ତଉଲି ଗଲେ, କବିତାର ଆତ୍ମସତ୍ତା ବୁଝି ହେବା ସହଜ ହୁଏ । ଟିକିଏ ମନେରଖିବାକୁ ହେବ, କବିତା ଅନୁଭୂତିର

ସଂଳାପ ! (ଟ୍ରେଣ୍ଡ ଏ କଳାକୁ ବ୍ୟବଚ୍ଛେଦ (ଡିସେକ୍ଟିଙ୍ଗ୍) କରିଯାଇ ପାରେନା ବା କେହି ଯଦି ଏପ୍ରକାର କରିବସେ, ତେବେ କବିତାର ସ୍ୱରୂପ, ତା' ଆପଣାର ଆତ୍ମସତ୍ତା ବିକଳାଙ୍ଗ ରୂପ ଧାରଣ କରିବା ସ୍ୱାଭାବିକ !

ସାଂପ୍ରତିକ କବିତାର ଯଦି କିଛି ନିଜସ୍ୱ ବୈଶିଷ୍ଟ୍ୟ ଥାଏ, ତେବେ ତାହା ଯୁଗ ବକ୍ଷରେ ନିଶ୍ଚୟ ସ୍ୱତନ୍ତ୍ର ସ୍ୱାକ୍ଷର ବହନ କରି ବଞ୍ଚି ରହିବ । ଏ ପାଇଁ କେହି ଅଯଥା ବିରୋଧୀ ମତ ପୋଷଣ କରି ତା' ଯାତ୍ରାପଥରେ ବାଧା ସୃଷ୍ଟି କରିବା ଅନୁଚିତ । ବରଂ ତା' ଯାତ୍ରାପଥ ଯେପରି ସୁଗମ ହୁଏ, ସେଥିପାଇଁ ପ୍ରତ୍ୟେକ ଆଧୁନିକ ଚେତନଶୀଳ ସାହିତ୍ୟପ୍ରେମୀ ଧ.ନ ଦେବା ଆବଶ୍ୟକ । ଏକ୍ଷେତ୍ରରେ ପାଠକ ଓ ସାହିତ୍ୟ ରସିକଙ୍କର ଯେପରି ଯଥେଷ୍ଟ କର୍ତ୍ତବ୍ୟ ରହିଛି, ସେହିପରି ମଧ୍ୟ ଯଥେଷ୍ଟ ଉଦାର, ସହାନୁଭୂତିଶୀଳ, ନିରପେକ୍ଷ ଓ ଅନ୍ତର୍ଦୃଷ୍ଟି ସମ୍ପନ୍ନ ହେବା ପାଇଁ ସାଂପ୍ରତିକ କବିତାର ଆଲୋଚକ ସଚେତନ ରହିବା ଉଚିତ ।

